# ଜ୍ଞାନଯୁଗ
# ରୂଢ଼ିକୋଷ

## DICTIONARY OF IDIOMS
## (Oriya – English)

ନାରାୟଣ ସାହୁ

# ଜ୍ଞାନଯୁଗ

# ରୂଢ଼ିକୋଷ

# DICTIONARY OF IDIOMS

## (Oriya-English)

ନାରାୟଣ ସାହୁ



ଜ୍ଞାନଯୁଗ ପବ୍ଲିକେଶନ୍ସ
ଭୁବନେଶ୍ୱର

# ଜ୍ଞାନଯୁଗ
# ସୂକ୍ତିକୋଷ
ନାରାୟଣ ସାହୁ

ISBN 81 87781 42 4

ପ୍ରକାଶନ ଉପଦେଷ୍ଟା :
ବିନୋଦ ବିହାରି ବିଶୋଇ

ପ୍ରକାଶକ:
ଜ୍ଞାନଯୁଗ ପବ୍ଲିକେଶନ୍ସ
ଏନ୍-୬/୪୨୮, ଆଇ.ଆର୍.ସି.ଭିଲେଜ
ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ ନଂ. ୫୫୨୦୯୧

ମୁଦ୍ରଣ:
କ୍ରିଏଟିଭ୍ ଅଫସେଟ୍
ଭୁବନେଶ୍ୱର-୧୫
ଫୋନ୍ ନଂ- ୫୫୬୧୦୭

ପ୍ରଥମ ପ୍ରକାଶ:
୨୦୦୨

ମୂଲ୍ୟ: ଟ ୭୦.୦୦ ଙ୍କା

ଜ୍ଞାନଯୁଗ ପବ୍ଲିକେଶନ୍ସ ତରଫରୁ ସୁଷମା ବିଶୋଇ, ପ୍ଲଟ ନଂ. ଏନ୍-୬/୪୨୮, ଆଇ.ଆର୍.ସି.ଭିଲେଜ୍, ନୂଆପଲ୍ଲୀ, ଭୁବନେଶ୍ୱରଙ୍କ ଦ୍ୱାରା ମୁଦ୍ରିତ ଓ ପ୍ରକାଶିତ ।

# ଗ୍ରନ୍ଥବନ୍ଧ

ପ୍ରତ୍ୟେକ ଭାଷାର ନିଜସ୍ୱ ପ୍ରକାଶ ଭଙ୍ଗି ରହିଛି । ଏହି ବିଶିଷ୍ଟ ପ୍ରକାଶ ଭଙ୍ଗି କେବଳ ବାକ୍ୟ ରଚନାରେ ଦେଖାଯାଏ ନାହିଁ, ତାହା ମଧ୍ୟ ବାଗ୍‌ଭଙ୍ଗିରେ ଦେଖିବାକୁ ମିଳେ । ବାଗ୍ ଧାରାର ଏଇ ଧରଣର ବିଶେଷ ବାଗ୍‌ଭଙ୍ଗିକୁ ଆମେ ରୂଢ଼ି ବା ଇଂରାଜୀରେ Idiom କହିଥାଉ । ରୂଢ଼ି ହେଉଛି ଏକ ବିଶେଷ ବଚନ ଭଙ୍ଗି । ବେଳେ ବେଳେ କଥାବାର୍ତ୍ତା ସମୟରେ କଥାଟିକୁ ସିଧାସଳଖ ନକହି ଆମେ ବୁଲେଇବଙ୍କେଇ କହିଥାଉ । କଥାଟିରେ ଥିବା ମୂଳ ବାକ୍ୟାଂଶ ବା ପଦଗୁଡ଼ିକର ଅର୍ଥ ପୂର୍ଣ୍ଣମାତ୍ରାରେ ବୁଝାପଡେ ନାହିଁ । ପରୋକ୍ଷ ବ୍ୟବହାର ଦ୍ୱାରା ଏହାର ଅର୍ଥ ଜଣାପଡ଼େ । ଏହି ବାକ୍‌ଭଙ୍ଗି ଅର୍ଥ-ସୂଚକ ବା ଗୁଢ଼ାର୍ଥବୋଧକ ହୋଇଥାଏ । ଏ ପ୍ରକାର ଅର୍ଥଦ୍ୟୋତକ ସାଙ୍କେତିକ ପଦ-ସଂହତି ବା ଖଣ୍ଡବାକ୍ୟର ପ୍ରୟୋଗଧାରାକୁ ରୂଢ଼ି କୁହାଯାଏ । ସାଧାରଣତଃ ବାକ୍ୟାଂଶ, ପଦସଂହତି ପ୍ରତ୍ୟକ୍ଷ ଅର୍ଥ ପ୍ରକାଶ କରୁଥିବା ବେଳେ ରୂଢ଼ି ଦ୍ୱାରା ଏହାର ସୂଚନାତ୍ମକ ଅର୍ଥ ପ୍ରକାଶ ପାଇଥାଏ ।

ରୂଢ଼ିର ବ୍ୟୁତ୍‌ପତ୍ତିଗତ ଅର୍ଥ ହେଉଛି ଯାହା ରୂଢ଼ି ବା ପ୍ରସିଦ୍ଧିସଂପନ୍ନ । ଅର୍ଥାତ୍ କଥିତ ଲୋକଭଙ୍ଗିର ରୀତିସିଦ୍ଧ ଶବ୍ଦଚାତୁରୀ ବା ବାଗ୍ ଧାରାର ଏକ ଅଂଶବିଶେଷ । ଇଂରାଜୀ Idiom ଶବ୍ଦଟି ମୂଳ ଗ୍ରୀକ୍ ଶବ୍ଦ Idioma ବା Idiomeରୁ ଆସିଛି ଯାହାର ଅର୍ଥ ହେଉଛି ମୂଳ ଅର୍ଥ ଛଡ଼ା ଏକ ଭିନ୍ନ ଅର୍ଥ ପ୍ରକାଶ କରୁଥିବା ବିଶିଷ୍ଟ ବଚନଭଙ୍ଗି । ବ୍ରିଟାନିକାରେ Idiomର ପରିଭାଷା ସଂପର୍କରେ କୁହାଯାଇଛି – "Something peculiar, in the sense it permits few generalizations; often the words used in idiomatic expressions lose their literal meaning or indicate something remotely suggested by a word in the expression; sometimes a literal meaning."

ଦେଖାଯାଏ, ବାଗ୍ ଧାରା ଏକାଧିକ ଶବ୍ଦକୁ ନେଇ ଗଠିତ । ଏହାର ବିଭିନ୍ନ ରୂପ ମଧ୍ୟ ଦେଖିବାକୁ ମିଳେ । ( ୧ ) ଦୁଇଟି ବିଶେଷ୍ୟ ଶବ୍ଦ ସମାସବଦ୍ଧ ହୋଇ ବିଶେଷ୍ୟ ବା ବିଶେଷଣ ହିସାବରେ ବ୍ୟବହୃତ ହୋଇପାରେ – ଗୋବର ଗଣେଶ, କୁରୁକ୍ଷେତ୍ର କାଣ୍ଡ ( ୨ ) ଗୋଟିଏ ବିଶେଷ୍ୟ ଏବଂ ଗୋଟିଏ ବିଶେଷଣ ଶବ୍ଦ ସମାସବଦ୍ଧ ହୋଇପାରେ– ବକଧାର୍ମିକ (୩) ଏକ ବା ଏକାଧିକ ବିଶେଷ୍ୟ ବାଚକ ବା ବିଶେଷଣ ବାଚକ ଶବ୍ଦ ସହିତ କ୍ରିୟାବାଚକ ଶବ୍ଦ ଯୁକ୍ତ ହୋଇ ସଂପୂର୍ଣ୍ଣ ବାଗ୍‌ଧାରାଟି କ୍ରିୟାପଦ ହିସାବରେ ଗଣ୍ୟ

ହୋଇପାରେ – ଗୋଟିଏ ଢେ଼ଲାରେ ଦୁଇଟି ପକ୍ଷୀ ମାରିବା, କଟା ଘା'ରେ ଲୁଣ ଦେବା, ଲାଲବତୀ ଜଳେଇବା (୪) ଗୋଟିଏ ଧାତୁକୁ ଦୁଇଟି କରି ପ୍ରଥମ ଅଂଶରେ 'ଆ' ଏବଂ ଦ୍ୱିତୀୟ ଅଂଶରେ 'ଇ' ଯୋଗ କରି ବିଶିଷ୍ଟ ଅର୍ଥ ସୂଚକ ଶବ୍ଦ ଗଢ଼ାଯାଇପାରେ । ପୁରାଶବ୍ଦଟି ବିଶେଷ୍ୟ ହିସାବରେ ବ୍ୟବହୃତ ହୋଇପାରେ – ଧରାଧରି, ନଚାନଚି (୫) ଧାତୁର ସଙ୍ଗେ 'ଇବା' ପ୍ରତ୍ୟୟ ଯୋଗକରି ବିଶେଷ୍ୟ ବା ବିଶେଷଣ ବା କ୍ରିୟାପଦ ଗଠନ କରାଯାଇପାରେ – ତେଲେଇବା, ଗୁଂଜିବା, ଠାରିବା, ଉଠିବା (୬) ଅନେକ ଅନୁକାର ମୂଳକ ଶବ୍ଦ ବାଗ୍‌ଧାରା ବା ବିଶିଷ୍ଟାର୍ଥକ ଶବ୍ଦର ପର୍ଯ୍ୟାୟରେ ପଡ଼ିଥାଏ । ଗୋଟିଏ ଶବ୍ଦ ସହିତ ଅନୁଗାମୀ ଶବ୍ଦ ଯୋଡ଼ିହୋଇ ବିଶିଷ୍ଟାର୍ଥକ ଶବ୍ଦ ତିଆରି ହୋଇଥାଏ –ବନ୍ଧାଛନ୍ଦା, ଛୋଟମୋଟ (୭) ଶବ୍ଦର ଦ୍ୱିତ୍ୱକରି ବିଶିଷ୍ଟାର୍ଥକ ଶବ୍ଦ ମଧ୍ୟ ଗଠନ କରାଯାଇଥାଏ । ଶବ୍ଦ ବା ଶବ୍ଦଗୁଛଟି ବିଶେଷଣ ବା କ୍ରିୟାବିଶେଷଣ ହିସାବରେ ବ୍ୟବହୃତ ହୋଇପାରେ – ଗୋଟି ଗୋଟି, ଦିନେ ଦିନେ, କେବେ କେବେ ।

ରୂଢ଼ିର ବିଭିନ୍ନ ପ୍ରକାରର ରୂପ ଦେଖିବାକୁ ମିଳେ । ଏହାର ଗଠନ ପଦ୍ଧତିରେ ବିଶେଷ୍ୟ, ବିଶେଷଣ, କ୍ରିୟା ପଦର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥାଏ । ଏହି ଦୃଷ୍ଟିରୁ ରୂଢ଼ିକୁ ବିଚାର କରାଯାଇପାରେ ଯଥା:– (କ) କ୍ରିୟାଯୁକ୍ତ ରୂଢ଼ି (ଖ) କ୍ରିୟାହୀନ ରୂଢ଼ି (ଗ) ଉପମାବାଚକ ବା ତୁଳନାତ୍ମକ ରୂଢ଼ି ।

- **କ୍ରିୟାଯୁକ୍ତ ରୂଢ଼ି**

କୁହୁଡ଼ି ପହଁରିବା, ମଥା ଖେଳାଇବା, ଚିତା କାଟିବା, ଆଖି ବୁଜିବା

–ଏଠାରେ ପହଁରିବା, ଖେଳାଇବା, କାଟିବା, ବୁଜିବା ଆଦି ପଦଗୁଡ଼ିକ ହେଉଛି କ୍ରିୟାପଦ । ଏଗୁଡ଼ିକ କୁହୁଡ଼ି, ମଥା, ଚିତା, ଆଖି ଆଦି ବିଶେଷ୍ୟ ପଦ ସହିତ ଯୁକ୍ତ ହୋଇ ରୂଢ଼ି ଗଠନ କରୁଛି । ଏଣୁ ଏହାକୁ କ୍ରିୟାଯୁକ୍ତ ରୂଢ଼ି କୁହାଯାଏ ।

- **କ୍ରିୟାହୀନ ରୂଢ଼ି**

ବିଶିଷ୍ଟ ଅର୍ଥ ପ୍ରକାଶ କରୁଥିବା ଯେଉଁ ବାକ୍ୟାଂଶରେ କ୍ରିୟାପଦ ନଥାଏ ତାହାକୁ କ୍ରିୟାହୀନ ରୂଢ଼ି କୁହାଯାଏ ।

–ଅନ୍ଧର ଲଉଡ଼ି, ଅକଲ ସଲାମି, ଅରଣ୍ୟରୋଦନ, ଓଳିଆରୁ ଗଜା, ଅଳସୁଆର ବାରବାଟି ଚାଷ, ଅତି ଭକ୍ତି ଚୋରର ଲକ୍ଷଣ, ଆପେ ବଂଚିଲେ ବାପର ନାଆଁ, ଯେ ପକ୍ଷୀ ଉଡ଼େ ଯେଡ଼େ ଦୂର, ରାଣ୍ଡୀପୁଅ ଅନନ୍ତା, ବ୍ରହ୍ମା ବିଲି ବିଲେଇଲେ ବେଦ ।

• ଉପମାବାଚକ ବା ତୁଳନାତ୍ମକ ରୂଢ଼ି

ଯେଉଁ ବିଶିଷ୍ଟ ବାକ୍ୟାଂଶରେ ଅନ୍ୟ ବାକ୍ୟାଂଶ ସହିତ ତୁଳନା କରାଯାଇ ବିଶେଷ ଅର୍ଥ ପ୍ରକାଶ କରାଯାଏ, ତାହାକୁ ତୁଳନାତ୍ମକ ରୂଢ଼ି କୁହାଯାଏ । ଏ ପ୍ରକାର ରୂଢ଼ିରେ ଏକ ଉପମାବାଚକ ଶବ୍ଦ ବା ପଦ ଯୁକ୍ତ ହୋଇଥାଏ ।

– ସୁଅ ମୁହଁର ପତର, ଜୋକପରି ଲାଗିବା, ସୁନା ପରି ଝଟକିବା, ଗଧପରି ଖଟିବା, ଶୁଣ୍ଢୀ ସାକ୍ଷୀ ମାତାଲ, ଛୁଞ୍ଚି ମୁହଁା, ଶୁଆ ପରି ପୋଷିବା ।

ଓଡ଼ିଆରେ ବିଧିବଦ୍ଧ ଭାବେ ରୂଢ଼ିକୋଷ ନାହିଁ, ଯାହା ବଂଗଳା, ଅସମିୟା ତଥା ଅନ୍ୟାନ୍ୟ ଭାଷାରେ ରହିଛି । ପୂର୍ବାଞ୍ଚଳ ଭାଷା କେନ୍ଦ୍ର ଦ୍ୱାରା ରୂଢ଼ି ଏବଂ ପ୍ରବଚନ ଉପରେ କେତୋଟି ସଂପାନ ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହୋଇଥିଲା । ଏ ସବୁରୁ ମିଳିଥିବା ଜ୍ଞାନକୁ ମୁଁ ଏଠାରେ ଉପଯୋଗ କରିବାକୁ ଚେଷ୍ଟା କରିଛି । ଏ ଦିଗରେ ଭାଷାକେନ୍ଦ୍ରର ଅଧକ୍ଷ ଡଃ ବର୍ମନ, ଡଃ ବକୁଳ ଚୌଧୁରୀ, ଡଃ ଗୋସ୍ୱାମୀ, ଡଃ ବିଜୟଲକ୍ଷ୍ମୀ ମହାନ୍ତି, ଡଃ ପ୍ରକାଶ ପଟ୍ଟନାୟକଙ୍କ ସହଯୋଗକୁ ଭୁଲିହେବନାହିଁ । ଡଃ ତୃପ୍ତି ମହାନ୍ତି, ଡଃ ବସନ୍ତ ପଣ୍ଡା ମଧ ଏ ଦିଗରେ ମତେ ଉତ୍ସାହିତ କରିଛନ୍ତି । ଓଡ଼ିଆ, ବଂଗଳା, ଅସମୀୟା ଭାଷାରେ ରଚିତ ହୋଇଥିବା ବିଭିନ୍ନ ରୂଢ଼ିଗ୍ରନ୍ଥର ସାହାଯ୍ୟ ମୁଁ ନେଇଛି । ବଂଗଳାର ସଂସଦ ବାଗ୍‌ଧାରା ଅଭିଧାନ, ଅସମୀୟା ଖଣ୍ଡବାକ୍ୟ କୋଷ (ଜଗତଚନ୍ଦ୍ର ଗୋସ୍ୱାମୀ), ବେଣୁଧର ବାଜଖୋରାଙ୍କ ସଂକଳିତ 'ଅସମୀୟା ଖଣ୍ଡବାକ୍ୟକୋଷ', ଓଡ଼ିଆରେ ଡଃ ସନ୍ତୋଷ ତ୍ରିପାଠୀଙ୍କ 'ରୂଢ଼ି ଓ ଅଳଂକାର', ଡଃ ଅଜୟ ମିଶ୍ରଙ୍କ 'ରୂଢ଼ି ସଂଚୟନ', ଦାମୋଦର ଲେଙ୍କା ଓ ବିଜୟଲକ୍ଷ୍ମୀ ଲେଙ୍କାଙ୍କ 'ରୂଢ଼ି ଓ ଢ଼ଗ ଢ଼ମାଳି', ପଣ୍ଡିତ ନାରାୟଣ ମହାପାତ୍ର ଓ ଶ୍ରୀଧର ଦାସଙ୍କ 'ସର୍ବସାର ବ୍ୟାକରଣ' ଆଦି ପୁସ୍ତକ ମୋତେ ବହୁଭାବେ ସାହାଯ୍ୟ କରିଛି । ଇଂରାଜୀ ଶବ୍ଦ ଚୟନରେ ଭୁଲ ଥାଇପାରେ ! ତଥାପି ଏ ଦିଗରେ ବହୁଭାବେ ମତେ ସାହାଯ୍ୟ କରିଛନ୍ତି ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି, ପ୍ରଫେସର ସୁସ୍ମିତା ପାଣି, ଡଃ ରମେଶ ପାଣିଗ୍ରାହୀ, କେ.କେ.ଶର୍ମା, ସୀତାକାନ୍ତ ମହାନ୍ତି, ପ୍ରଫେସର ଅଚ୍ୟୁତାନନ୍ଦ ମିଶ୍ର ଏବଂ ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି । ସେମାନଙ୍କୁ ମୁଁ କୃତଜ୍ଞତା ଜଣାଉଛି ।

ଏ ସଂକଳନ ବାହାରେ ହୁଏତ ଆଉ କିଛି ରୂଢ଼ି ରହିଯାଇଥିବ, ଯାହା ମୋ ଦୃଷ୍ଟିକୁ ଆସିନାହିଁ । ପରବର୍ତ୍ତୀ ସୋପାନରେ ତାହା ଉପଯୋଗ କରିବାକୁ ମୁଁ କୁଣ୍ଠାବୋଧ କରିବି ନାହିଁ । ଏ ସଂକଳନଟି ପାଠକମାନଙ୍କ ଦ୍ୱାରା ଆଦୃତ ହୋଇପାରିବ ବୋଲି ମୁଁ ଆଶା କରି ରହୁଛି ।

ଲେଖକ ।

# ଅ

ଅଇରି ଖପରା ବଇରି ବାଆ – ଅଭାବରେ ପଡ଼ି ସଢ଼ିବା, ଧନସଂପଦ କିଛି ନଥିବା–Poverty stricken

.. ତା' ଉପରେ ଭରସା କରି ତମେ ଯଜ୍ଞ କରୁଛ ? ସିଏ ତ ହଉଛି ଅଇରି ଖପରା ବଇରି ବାଆ ।

ଅଇଘରାକୁ ବାଇଗଣ ଫୋପାଡ଼ିବା – ଫଳ ଆଶା ନ କରି କାମ କରିବା– to work without expectation

..ଏଡ଼େବଡ଼ ମେଳାଟାରେ ହଜିଲା ପିଲାଟାକୁ ଠାବ କରିବା ହେଉଛି ଅଇଘରାକୁ ବାଇଗଣ ଫୋପାଡ଼ିଲା ଭଳିଆ ।

ଅଇନର୍କରେ ପଡ଼ିବା – ମୃତ୍ୟୁପରେ ଆହୁରି କଠୋର ଯନ୍ତ୍ରଣା ଭୋଗ କରିବା– Down to hell

.. ସେ ଯାହା କର୍ମ କରିଛି, ସେଥିରେ ଅଇ ନର୍କରେ ପଡ଼ି ଛଟପଟ ହେବା ଛଡ଼ା ଅନ୍ୟ ଗତି ନାହିଁ ।

ଅଇ ସୁଲକ୍ଷଣୀ ହେଇଥା – ସଧବା ପ୍ରତି ଆଶୀର୍ବାଦ– Blessing to the conjugated lady

.. ଅଇ ସୁଲକ୍ଷଣୀ ହେଇଥା ମା' । ତୋ ହାତର ଶଙ୍ଖା ସେମିତି ବିରାଜୁ ଥାଉ ।

ଅଇଁଠା ପତର ଚାଟିବା – ଅତି ତଳକୁ ଖସିଯିବା– to compromise self dignity

.. ରଜାଘର ପୁଅ ହେଇ, ଶେଷରେ ତାଙ୍କର ଅଇଁଠା ପତର ଚାଟିବା ସାର ହେଲା ।

ଅଉଲ ପତର ବଉଳ – ଅତି ଗରିବ– very poor/torn into poverty

.. ଚାକିରୀରୁ ଛଟେଇ ହେବା ପରଠୁଁ ଲୋକଟା ଅଉଲ ପତର ବଉଳ ଭଳିଆ ହୋଇ ଘୁରି ବୁଲୁଛି ।

ଅକଲ ଗୁଡୁମ୍ – ବୁଦ୍ଧି ହଜିଯିବା, ବାଟ ନ ପାଇବା– no way out

.. ସାହସ କରି ତ ଗଛ ଉପରକୁ ଚଢ଼ିଗଲା । ହେଲେ ଏବେ ପୁଅର ଅକଲଗୁଡୁମ୍, ଓହ୍ଲାଇ ପାରୁନି ।

ଅକଲ ସଲାମି – ବୁଦ୍ଧି ଶିଖିବା, – paid with one's own coins

.. ଲାଗ୍ ଲାଗ୍ ତିନିଥର ଜେଲ ଯାଇ ପୁଅ ଅକଲ ସଲାମି ପାଇ ଯାଇଛି, ଆଉ ଚୋରି କରିବ ନାହିଁ ।

ଅକଲ ହଜିବା – ବୁଦ୍ଧି ନ ଦିଶିବା– to find no solutions/ intelligence being clouded

.. ଘର ଚାରିପଟେ ନିଆଁ ଘେରି ଯିବାରୁ ତା' ଅକଲ ହଜିଗଲା ।

**ଅକଲ ପାଇବା – ବୁଦ୍ଧି ଶିଖିବା–** to learn lessons

.. ଏଡ଼େ ପିଲାଟି ହେଲୁଣି, ମୁଣ୍ଡକୁ ଅକଲ ପାଉନି ! କାହା ସାଥିରେ କେମିତି କଥାବାର୍ତ୍ତା କରିବାକୁ ହୁଏ, ଜାଣିନୁ !

**ଅକସ ସାଧିବା – ଦାଉ ସାଧିବା–** to be revengeful/ to be malacious

.. ତା' କଲାକର୍ମ ଯୋଗୁ ସ୍ତ୍ରୀ ପିଲା ଛୁଆ ମଲେ । ଆଉ ତା' ଉପରେ କି ଅକସ ସାଧିବ ?

**ଅକାଳ କୁଣିଆ ସକାଳେ ଦେଖା – ହଠାତ୍ ଦେଖା ହେବା–** to meet all on a sudden

.. କିହୋ ଅକାଳ କୁଣିଆ ସକାଳେ ଦେଖା, ଏତେ ଦିନ ଯାଏ ଥିଲ କୁଆଡ଼େ ?

**ଅକାଳ କୁଷ୍ମାଣ୍ଡ – ଅକର୍ମଣ୍ୟ ଲୋକ–** a useless person

..ସେ ତ ଗୋଟାଏ ଅକାଳ କୁଷ୍ମାଣ୍ଡ, ତା' ଉପରେ ଏତେ ଗୁଡ଼ାଏ ଦାୟିତ୍ୱ ଦେବା ଠିକ୍ ନୁହେଁ ।

**ଅକାଳ କାଣ୍ଡ କପାଳେ ବାଜେ – ଦୈବୀ ଚଡ଼କ ପଡ଼ିବା, ହଠାତ୍ ବିପଦ ମାଡ଼ି ଆସିବା–** to face unexpected calamity/ bolt from the blue

.. ଅକାଳ କାଣ୍ଡ କପାଳରେ ବାଜିଲା ଭଳି ୨୪ ବର୍ଷର ପୁଅଟା ଚାଲିଗଲା, କେମିତି ବା ଦେହ ସହନ୍ତା !

**ଅକାଳ ମରଣ – ଅପମୃତ୍ୟୁ–** unnatural death

.. ଦୈବ ସହିଲା ନାହିଁ, ଭେଣ୍ଡିଆ ପୁଅଟାର ଅକାଳ ମରଣ ହେଲା ।

**ଅକାଳ କୁସୁମ – ଅସମ୍ଭବ ଜିନିଷ–** unusual phenomenon/absurd thing

.. ଅକାଳ କୁସୁମ ତୋଳିବାକୁ ଚେଷ୍ଟା କରନି, ଦୁଃଖ ପାଇବା ହିଁ ସାର ହେବ ।

**ଅକାଳେ ନିୟମ ନାସ୍ତି – ବିପଦ ବେଳେ ପାପପୁଣ୍ୟ ବିଚାର ନ କରିବା–** loosing conscience at stake

.. ଏତେ ଭାବୁଛ କ'ଣ ? ଦସ୍ତଖତ କର । ଅକାଳେ ତ ନିୟମ ନାସ୍ତି ।

**ଅକାଳେ ବୈରାଗୀ ପଥର ବୁହେ – ଅଭାବରେ ସ୍ୱଭାବ ନଷ୍ଟ–** necessity knows no law

.. ଥଟ୍ଟା କରନି, କର୍ମ ଦୋଷରୁ ଅକାଳ ବୈରାଗୀ ପଥର ବୋହୁଛି ।

**ଅଖା ଧୋଇବା – କ୍ଷତିଗ୍ରସ୍ତ ହେବା–** sustaining loss / be harmed

.. ଚାକର ହାତରେ ଟଙ୍କା ପଇସା ଧରେଇଛ, ଅଖା ଧୋଉଥିବ ଗୁଣ ଗାଉଥିବ ।

**ଅଖାଇ କରିଛି ଓଷା – ଇଚ୍ଛା ବିରୁଦ୍ଧ ଆଚରଣ–** subdued to act

.. ଆରେ ଅଖାଇ କରିଛି ଓଷା, ତାକୁ ଦେଖି ନାକ ଟେକୁଛ କ'ଣ ?

**ଅଗସ୍ତି ଦାନ – କୃପଣର ବଦାନ୍ୟତା ପ୍ରତି ବ୍ୟଙ୍ଗ–** miser mocking at charity

.. ଥାଉ ଥାଉ, ସେ ଅଗସ୍ତି ଦାନ ବନ୍ଦ କର । ତମ ହାତଟେକା ଅନ୍ନରେ ପୁଣି ସେମାନେ ମଣିଷ ହେବେ !

ଅଗାବଗା – ମୂର୍ଖ, ଅଯୋଗ୍ୟ– unfit/ useless

.. ଅଗାବଗା ସମସ୍ତେ ପ୍ରଫେସର ହେଲେ, ତମେ ଏତେ ଜ୍ଞାନୀ ହେଇ ପ୍ରଫେସର ହେଇ ପାରିଲନି ?

ଅଗଭାଂଗିବା/ ଅଗ ମୋଡ଼ିବା – ଆରମ୍ଭରୁ ବିଘ୍ନ ସୃଷ୍ଟି କରିବା– a nagative inborn

.. ଅଗମୋଡ଼ିବା ପ୍ରକୃତି ପାଇଁ ତମ ସାଙ୍ଗରେ କେହି ଯାଉ ନାହାନ୍ତି ।

ଅଗମୂଳ ନଥିବା – ଠିକ୍ ଠିକଣା ନ ରହିବା– baseless/irrational

.. କଥାବାର୍ତ୍ତା ବେଳେ ତା' କଥାର କିଛି ଅଗମୂଳ ନଥାଏ ।

ଅଗ୍ନି ପରୀକ୍ଷା – କଠିନ ପରୀକ୍ଷା – to cross the fire

.. ନିର୍ଦ୍ଦୋଷ ପ୍ରମାଣିତ କରିବା ପାଇଁ ତାଙ୍କୁ ଅଗ୍ନି ପରୀକ୍ଷା ଦେବାକୁ ପଡ଼ିଲା ।

ଅଗ୍ନିଶର୍ମା ହେବା – ଜୋରରେ ରାଗିଯିବା– to be enraged with anger

.. ଏବେ କିଛି କୁହନି, ସେ ଅଗ୍ନିଶର୍ମା ହେଇଛନ୍ତି ।

ଅଙ୍ଗୁଳି ନିର୍ଦ୍ଦେଶ – ଇସାରା–hints

.. ତାଙ୍କ ଅଙ୍ଗୁଳି ନିର୍ଦ୍ଦେଶରେ ସବୁ କିଛି ଘଟୁଛି ଏବଂ ଘଟିବ ।

ଅଚଳ ପଇସା – ଅଦରକାରୀ– of no use

.. ବୟସ ହୋଇଗଲେ ସମସ୍ତେ ଅଚଳ ପଇସା ହୋଇଯାନ୍ତି ।

ଅଚିନ୍ତାନାରୀ – ବାନ୍ଧ୍ୟ ସ୍ତ୍ରୀ– barren woman

.. ସୁଲୁଅପା ତ ଅଚିନ୍ତାନାରୀ, ସିଏ ବା କେମିତି ଜାଣିବ ପିଲା ପାଳିବାଟା କେତେ କଷ୍ଟ ।

ଅଜଣା ଚାଉଳ ଭାତ ଖାଇବା – ଅତି ସିଆଣିଆ– cunning/clever

.. ପୁଅ ଅଜଣା ଚାଉଳ ଭାତ ଖାଉଛି, କୁମ୍ଭୀର ନେଇ ମଝି ନଈରେ କଲାଣି, ଜଣା ପଡୁନି ।

ଅଜାତିକୁ ବଣିଜ ଅଦୁଆ – ଅଜଣା କାମ କରି ନ ପାରିବା–de-instinctive task

.. ବ୍ରାହ୍ମଣ ଲୋକଟାକୁ କାହିଁକି ଚାଷ କରିବାକୁ ବାଧ କରୁଛ ? ଅଜାତିକି ବଣିଜ ଅଦୁଆ । ତାଙ୍କ ଦେହି ଚାଷ ହେଲାଣି ନା' ହେବ !

ଅଟାକୁ ଲୁଣ ବଳି ପଡ଼ିବା – ଆବଶ୍ୟକତାଠାରୁ ଅଧିକ ନେବା ଖରାପ – acquiring beyond necessity

.. ଆରେ ଭାଇ ଯେତିକି ଯାନିଯୌତୁକ ଦେଇଛ, ସେତିକି ରଖିବାକୁ ଯାଗା ନାହିଁ । ଅଟାକୁ ଲୁଣ ବଳି ପଡ଼ିଲାଣି । ଆଉ କ'ଣ ଦେବ ?

ଅଠାକାଠିରେ ପଡ଼ିବା – ହଇରାଣରେ ପଡ଼ିବା– being put to troubles

.. ଏତେ ଦିନକେ ପୁଅ ଅଠାକାଠିରେ ପଡ଼ିଛି । କେମିତି ଖସିବ, ଖସୁ ।

ଅଠାକାଣ୍ଡିଆରେ ପକାଇବା – ଅସୁବିଧାରେ ପକାଇବା– inviting danger/self deception

.. ଦାମ ପୋଲିସ୍‌କୁ ଲାଞ୍ଚ ଯାଚି ଅଠାକାଣ୍ଡିଆରେ ପଡ଼ିଛି । ସେଠୁ ମୁକୁଳିବା ଭାରି କଷ୍ଟ ।

ଅଠାଠିକ୍ କରିବା – ହଇରାଣ କରି ନୟାନ୍ତ କରିବା–to break other's leg

.. ଏବେ ତା'କୁ କିଛି କୁହନାହିଁ । ମୁଁ ଠିକଣା ବେଳେ ତା'ର ଅଠା ଠିକ୍ କରିଦେବି ।

ଅଠାବୋଳିବା – ଅନ୍ୟ ଉପରେ ଦୋଷ ଲଦିବା– to shift responsibility/ finding fault with others

.. ବଡ଼ ବଡ଼ ଅଫିସରମାନେ ଦୁର୍ନୀତିରୁ ଖସିଗଲେ । ବିଚରା ପିଲାଟା ମୁଣ୍ଡରେ ଅଠା ବୋଳାହେଲା ।

ଅଡୁଆ ସୂତା – ଗୋଳମାଳିଆ ଘଟଣା– complexities of problems

.. ତାଂକ ପରିବାରର ଅଡୁଆସୂତା ଭିତରେ ନିଜକୁ ସାମିଲ କରିବାଟା ଉଚିତ ହେବନି । ବରଂ ଅନୁତାପ ହିଁ ସାରହେବ ।

ଅଢ଼େଇଦିନିଆ ପ୍ରୀତି – ଜୀବନର କ୍ଷଣସ୍ଥାୟୀତ୍ୱ– mortality of life

.. ସତୁରୀ ବର୍ଷରେ ସଂସାର କରିବାଟା ଅଢ଼େଇ ଦିନିଆ ପ୍ରୀତି ନୁହେଁ ତ ଆଉ କ'ଣ ?

ଅଣକ ଧରିବା – ପରିବେକ୍ଷଣ କରିବା– from theory to practice

.. ଅଣକ ଧରିବା ଛାଡ଼ି କ୍ଷେତ୍ର ଉପରକୁ ଆସ । ଯାହା ଗୋଟାଏ ନିଷ୍ପତ୍ତି ନେଇଯିବା ।

ଅଣଚାଷ ବହିବା – ମୃତ୍ୟୁ କାଳ ଉପସ୍ଥିତ ହେବା, ଶେଷ ସମୟ ଆସିଯିବା– eleventh hour

.. ବୁଢ଼ାର ଅଣଚାଷ ବହିଲାଣି । ଆଉ କାହିଁକି ଆଶା ରଖୁଛ ? ଯାଅ ସଜଡ଼ା ସଜଡ଼ି ଆରମ୍ଭ କର ।

ଅଣ୍ଟାଗୁଂଜା ଦେବା – ଲାଂଚଦେବା, ହାତ କରିବା– bribing/to gain over

.. ପୋଲିସକୁ କିଛି ଅଣ୍ଟାଗୁଂଜା ଦେଇଦିଅ, ବଳେ ଛାଡ଼ିଦବ ।

ଅଣ୍ଟା ଧରିବା – ଅଣ୍ଟା ବ୍ୟଥା ହେବା– feeling pain in waste

.. ଅଣ୍ଟାଟା ଏମିତି ଧରିଛି ଯେ ଉଠିବସି ହେଉନି ।

ଅଣ୍ଟା ନଇଁବା – ଦୁର୍ବଳ ହୋଇପଡ଼ିବା– getting exhausted

.. ସାରା ଜୀବନ ଲଢ଼ି ତା'ଙ୍କ ଅଣ୍ଟା ନଇଁଗଲାଣି । ଆଉ କ'ଣ ଅଛି ଯେ ତମକୁ ସାହଯ୍ୟ କରିବେ ?

ଅଣ୍ଟା ଭାଂଗିଯିବା – ଶକ୍ତିହୀନ ହେବା, ହାରିଯିବା– be poor / weak / powerless

.. ଦୁଇ ଦୁଇଟା ପିଲାଙ୍କୁ ବିଦେଶରେ ପଢ଼ାଇ ତାଂକର ଅଣ୍ଟା ଭାଂଗିଗଲାଣି ।

ଅଣ୍ଟା ଭିଡ଼ିବା – ସାହସ ବାନ୍ଧିବା, ମୁକାବିଲା କରିବା–to challenge/ be daring

.. ବାତ୍ୟା ଆସିଲେ ଆସୁ, ତେବେ ଅଣ୍ଟାଭିଡ଼ି ତା'ହାର ସାମନା କର ।

ଅଣ୍ଡିସୁନା ପିତଳ ପାଲଟିବା – ଦୁର୍ଯୋଗ ପଡ଼ିବା– facing mishap

.. ଅଣ୍ଡିସୁନା ତା ପିତଳ ପାଲଟିଲା । ଯେତେ ଭଲେଇ ହେଲେ କ'ଣ ଲୋକ ବିଶ୍ୱାସ କରିଯିବେ ?

ଅଣ୍ଟିରେ ପୁରେଇବା – ନିଜର କରି ରଖିବା– a blind support

.. ହେଉପଛେ ଶତ୍ରୁ, ସିଏ ତ ତା'କୁ ଅଣ୍ଟିରେ ପୁରେଇଛି । ଉପଦେଶ ଦେଇ ଲାଭନାହିଁ ।

ଅଣ୍ଟି ଛୁରି ତଣ୍ଟି କାଟେ – ନିଜ ଲୋକ ଶତ୍ରୁତା ଆଚରଣ କରିବା– to cut throat by kinsmen

.. ମୋ ଅଣ୍ଟିଛୁରି ତ ତଣ୍ଟି କାଟିଲେ, ଏ କଥା କହିବି କାହାକୁ ? ଶୁଣିବ କିଏ ?

ଅଣ୍ଡିରା ଚଣ୍ଡୀ – ଉଗ୍ର ସ୍ୱଭାବର ଝିଅ–virago/ shrew/ masculine woman

.. ସେ ଅଣ୍ଡିରାଚଣ୍ଡୀକୁ ନେଇ କିଏ ଘର କରିବ ? ମରିବାଟା ହିଁ ସାର ହେବ ।

ଅଣ୍ଡିରି ପୁଅ ଉଦ୍ଧବ – ବେପରୁଆ ମନୋଭାବ– arrogant

.. ଆରେ ଭାଇ, ସେ ତ ଅଣ୍ଡିରି ପୁଅ ଉଦ୍ଧବ । ତା'କୁ ମନେଇବାଟା ଏତେ ସହଜ ନୁହେଁ ।

ଅତିରୁ ଇତି – ସୀମାତୀତ ହେଲେ ଫଳ ବିଷମୟ ହୁଏ– too much curiosity brings trouble

.. ମଣିଷ ମାରି ପେଟ ପୋଷିବା ଧନ୍ଦା ଛାଡ଼, କାରଣ ଅତିରୁ ଇତି ହେଲେ କେହି ପିଠିରେ ପଡ଼ିବେ ନାହିଁ ।

ଅତି ଦର୍ପେ ହତ ଲଙ୍କା – ଅତି ଗର୍ବରୁ କ୍ଷୟ– pride goes before its fall

.. ଗୁରୁଜନମାନଙ୍କୁ ସମ୍ମାନ ଦେଇ ଶିଖ । 'ଅତି ଦର୍ପେ ହତ ଲଙ୍କା' ଭଳି କାର୍ଯ୍ୟ କରନି ।

ଅତି ଲେମ୍ବୁ ଚିପୁଡ଼ିଲେ ପିତା – ମାତ୍ରାଧିକ କାର୍ଯ୍ୟ ଖରାପ– too much of everything is good for nothing

.. ଏତେ ସ୍ନେହ କରନି, ସେ ଅମଣିଷ ହୋଇଯିବ । ଜାଣିନାହଁ, ଅତି ଲେମ୍ବୁ ଚିପୁଡ଼ିଲେ ପିତା ?

ଅତି ଲୋଭେ ତନ୍ତୀ ମରେ – ଲୋଭରୁ ମୃତ୍ୟୁ–too much of anything is bad

.. ବେଶି ଧନ ପାଇବ ବୋଲି ଡକାୟତମାନଙ୍କ ସାଙ୍ଗରେ ଭାବ ରଖିଥିଲା । ଏବେ ଜେଲ ଯିବାକୁ ପ୍ରସ୍ତୁତ ହୁଅ । ଅତି ଲୋଭେ ତନ୍ତୀ ମରେ ।

ଅତି ପରିଚୟେ ଗୌରବ ନଷ୍ଟ – ଅଧିକ ଭାବ ଗୁମର ଫିଟାଏ–too much familiarity breeds contempt

.. ତାଂକୁ ବୁଝେଇ ଲାଭ ନାହିଁ । ଅତି ପରିଚୟେ ଗୌରବ ନଷ୍ଟ । ବେଳ ଆସିବ । ସେ ଠିକ୍ ବୁଝିପାରିବ ।

ଅତି ଭକ୍ତି ଚୋରର ଲକ୍ଷଣ – ଅଧିକ ଆନୁଗତ୍ୟ କ୍ଷତିର କାରଣ– too much courtsey, too much craft

.. ଭାଇ ଖୋସାମତିଆକୁ ସାବଧାନ କାରଣ ଅତିଭକ୍ତି ଚୋରର ଲକ୍ଷଣ ।

ଅତି ସିଆଣିଆ କାଉ ଗୁହ ଖାଏ – ବୁଦ୍ଧିମାନ ଠକାମିରେ ପଡ଼ିବା– too much cunningness undoes.

.. ଭାରି ତ ଜ୍ଞାନୀ ଦେଖେଇ ହେଉଥିଲା, କ'ଣ ହେଲା କି ? ଜାଣିଲ, ଅତି ସିଆଣିଆ କାଉ ଗୁହଖାଏ ।

ଅଦା ବେପାରୀର ଜାହାଜ ମୂଲ – ଛୋଟ ମୁହଁରେ ବଡ଼ କଥା– leaping into skies

.. ହାତରେ ପଇସାଟିଏ ନାହିଁ, ସେଥିରେ ପୁଣି ଘର କିଣିବାକୁ ମନ ! କାହିଁକି ଅଦା ବେପାରୀ ହେଇ ଜାହାଜ ମୂଲ କରୁଛ ?

ଅଧ ନଈରେ କରିବା – ବିପଦରେ ପକାଇବା– overtaken by danger/ stir up hornet's nest

.. ଚାକର ପିଲାକୁ ମୁହଁ ଦେଇଥିଲ, ଏବେ କାନ୍ଦୁଛ କାହିଁକି ? କୁମ୍ଭୀର ନେଇ ଅଧ ନଈରେ କଲାବେଳକୁ ନିଦ ଭାଂଗୁଛି ?

ଅଧୁଆ ମୁହାଁ – ଅମଙ୍ଗଳିଆ– unlucky / unfortunate

.. ତା' କଥା ଉପରେ ଭରସା କରି ଶୁଭ ଦେବାଟା ଠିକ୍ ହେଲାନି । ସେଇଟା ତ ଗୋଟାଏ ଅଧୁଆ ମୁହାଁ ।

ଅନୁଗ୍ରହର ପାତ୍ର – ଦୟାର ପାତ୍ର– take pity on someone/ deserving pity

.. ଲୋକଟିର ହାବଭାବ, ପୋଷାକ ପତ୍ର ଦେଖିଲା ପରେ ବି ତମେ ଭାବୁଚ ସେ ଅନୁଗ୍ରହର ପାତ୍ର ?

ଅନ୍ଧର ଲଉଡ଼ି – ଅତି ଆପଣାର– darling

.. ପୁଅ ମରିଗଲା ପରେ ନାତି ପିଲାଟା ହିଁ ତା'ଙ୍କ ପାଇଁ ଅନ୍ଧର ଲଉଡ଼ି ।

ଅନ୍ଧ ରାଜାକୁ ପାଳ ବିଣ୍ଡା ମନ୍ତ୍ରୀ – ଗୋଟିଏ ମୂର୍ଖକୁ ଆଉ ଗୋଟିଏ ମୂର୍ଖର ସମର୍ଥନ– a foul minister to a foolish king

.. ଅନ୍ଧ ରାଜାକୁ ପାଳବିଣ୍ଡା ମନ୍ତ୍ରୀ, ଏମାନଙ୍କ ରାଜତ୍ୱରେ କି ନ୍ୟାୟ ଆଶା କରୁଛ ?

ଅନ୍ଧ ବୁଝାମଣା – ଭୁଲ ନିଷ୍ପତ୍ତି– wrong decision / misunderstanding

.. କେବଳ ଅନ୍ଧ ବୁଝାମଣାକୁ କେନ୍ଦ୍ରକରି ଘରଟା ଦୁଇଭାଗ ହୋଇଗଲା । କେହି ଥରେ ବାପ ମା'ଙ୍କ କଥା ଭାବିଲେ ନାହିଁ ।

ଅନ୍ଧର ସାକ୍ଷୀ କଣା – ଜଣେ ଅପରାଧୀକୁ ଆଉଜଣେ ଅପରାଧୀର ସମର୍ଥନ– one criminal supporting another/ birds of same feather flock together

.. ମୁଦେଇ ମୁଦାଲା କେହି କାହାକୁ ଊଣା ନାହାନ୍ତି । ଅନ୍ଧର ସାକ୍ଷୀ କଣା । ଏଠୁ କ'ଣଟା ଅଧିକ ଆଶା କରିବ ?

ଅନ୍ଧକୁ ଗୋହିରି ବାଟ – ହଇରାଣରେ ପକାଇବା– to put someone into trouble

.. ଅନ୍ଧକୁ ଗୋହିରିବାଟ ଧରାଇବା ଭଳି ଦାମା ତା' ମାଲିକଙ୍କୁ ଏମିତି ହରଡ଼ ଘଣାରେ ପକାଇଦେଲା ଯେ ସେଥିରୁ ସେ ମୁକ୍ତି ପାଇଲେନି ।

ଅନ୍ଧ ଥରେ ବାଡ଼ି ହଜାଏ – ଆଗକୁ ସାବଧାନ ହେବା– not to repeat the mistake

.. ତାଂକୁ ଆଉ ଚେତେଇବା ଦରକାର ନାହିଁ । କାରଣ ଅନ୍ଧ ଥରେ ବାଡ଼ି ହଜାଏ । ସେ ଠିକ୍ ଜାଗାରେ ପହଂଚିଯିବେ ।

ଅନ୍ଧ ରାଇଜରେ ଦର୍ପଣ ବିକିବା – ଅପାତ୍ରରେ ଦାନ– boon to a stupid person

.. ବୁଝିଲ ବନ୍ଧୁ, ମୂର୍ଖ ଆଗରେ ଶାସ୍ତ୍ର ବଖାଣିବା ହଉଛି, ଅନ୍ଧ ରାଇଜରେ ଦର୍ପଣ ବିକିବା ଭଳି । ତେଣୁ ବୁଦ୍ଧି ବିଚାରି କାମ କର ।

ଅନ୍ଧକୁ ଦୀପ ଦେଖାଇବା – ମୂଲ୍ୟହୀନ କର୍ମ, କଥା– tell that tale to the jews/ valueless work

.. ହଇହୋ, ଅନ୍ଧକୁ ଦୀପ ଦେଖାଇଲା ଭଳି କଥାବାର୍ତ୍ତା କରନି । କାମ ଉପରୁକ ଆସ ।

ଅନ୍ଧ ହାତରେ ରତ୍ନ ମୁଦି – ଯୋଗ୍ୟତା ମାପି ନ ପାରିବା– a blindman can't asses a dimond

.. ଅନ୍ଧ ହାତରେ ରତ୍ନ ମୁଦି ଧରାଇଲେ, ସିଏ କୋଉ ତା'ର ମୂଲ୍ୟ ବୁଝିବ ଯେ !

ଅନ୍ଧ ପୁଟୁଳି ବାନ୍ଧିବା – ଅନ୍ଧାରରେ ରଖିବା– keeping in dark/ not aware of the fact

.. କେତେ ଦିନ ସେମାନଙ୍କ ଆଖିରେ ଅନ୍ଧ ପୁଟୁଳି ବାନ୍ଧି ନଚାଇବ ? ବେଳ ଆସିବ, ତମେ ହାରିଯିବ ।

ଅନ୍ଧାର ଘରକୁ ଟେକା ମାରିବା – ଉଦ୍ଦେଶ୍ୟହୀନ ଭାବେ କାର୍ଯ୍ୟ କରିବା– do something without motive/ to act aimlessly

.. ଶିକ୍ଷକଙ୍କୁ ଦୋଷ ଦିଅନି । ପାଠ ପଢ଼ିଲନି, ଫେଲ ହେଲ । ସେଥିପାଇଁ ଅନ୍ଧାର ଘରକୁ ଟେକାମାରିବା ଲାଭ କ'ଣ ?

ଅନ୍ଧାର ଘରେ ବାଡ଼ି ବୁଲାଇବା – ଠାସକ ମାରିବା– to beat about the bush/ to guess

.. ସେ ସବୁବେଳେ ସେମିତି ଅନ୍ଧାର ଘରେ ବାଡ଼ି ବୁଲାଇବା ଭଳି କଥାବାର୍ତ୍ତା କରେ । ହେବ ତ ଏପଟ ନହେଲେ ସେପଟ ।

ଅନ୍ଧାର ଘରେ ମାଣିକ – ଦାରିଦ୍ର୍ୟ ଭିତରେ ଜ୍ଞାନର ବିକାଶ, ଆଶାର ବର୍ତ୍ତିକା– the only hope

.. ତା'ପକ୍ଷରେ ଯାହା ଖର୍ଚ୍ଚ ହେଉଛି ହଉ, ସେ ତ ଅନ୍ଧାର ଘରେ ମାଣିକ ।

ଅପାଳକ ରାଇଜକୁ ବିଜୁଳି ଲକ୍ଷେ ଟଙ୍କା – କୌଣସି ପ୍ରକାରେ ଶାନ୍ତ୍ୱନା, ସାମାନ୍ୟ ଲାଭରେ ଆନନ୍ଦ– something is better than nothing

.. ଛୋଟ ହେଉପଛେ, ପିଲାଟି ତାଂକ ସଂସାରରେ ଅପାଳକ ରାଇଜକୁ ବିଙ୍କୁଚି ଲକ୍ଷେ ଟଙ୍କା ଭଳି ।

ଅବଧାନଙ୍କୁ କୁଣ୍ଡାଦିଆ ପାଠ – ମୂଲ୍ୟହୀନ ଶ୍ରମ– futile labour

.. ମନରେ ନାଇଁକି ମାଳାରେ ନାହିଁ, ଆଉ ଅବଧାନୁକ କୁଣ୍ଡା ଦେଇ ପାଠ ପଢ଼ିଲେ କ'ଣ ଫଳ ମିଳିବ ?

ଅବସ୍ଥା ଦି'ଗଣ୍ଡା ଦି'କଡ଼ା ହବା – ଦୟନୀୟ ଅବସ୍ଥା–wretched condition

.. ତାଂକ ଅବସ୍ଥା ଏମିତି ଦି'ଗଣ୍ଡା ଦି'କଡ଼ା ହେଇଯାଇଛି ଯେ ଆଉ ସିଧା ଠିଆ ହୋଇ ପାରିବେନି ।

ଅଭାଗା କପାଳକୁ ସମୁଦ୍ର ଶୁଖେ – ଭାଗ୍ୟ ଖରାପ ହେବା– without luck

.. ବୁଢ଼ା ବୟସରେ ପୁଅଟିଏ ହୋଇଥିଲା । ଦଇବ ସହିଲାନି । ଅଭାଗା କପାଳକୁ ସମୁଦ୍ର ଶୁଖିଗଲା । ସାପ କାମୁଡ଼ାରେ ପିଲାଟି ମରିଗଲା ।

ଅଯାଗା ଘା' ଦେଖାଇବା – ଗୁମର ଅନ୍ୟକୁ କହିବା– to disclose secrecy

.. ଘରକଥା ଗୁଡ଼ାକ କେମିତି ପର ଆଗରେ ଗପୁଛ ? ଅଯାଗା ଘା' ଦେଖାଉବାଟା କ'ଣ ଭଲ କଥା ?

ଅରକ୍ଷିତକୁ ଦଇବ ସାହା – ଅସହାୟକୁ ଈଶ୍ୱର ଭରସା– god protects the helpless

.. ହାତୀ ତା' ମୁଣ୍ଡରେ ସୁନା କଳସୀ ଢାଳିଲାନି ଯେ ଅରକ୍ଷିତକୁ ଦଇବ ସାହା ହେଲା । ନଇଲେ ତା' ଅବସ୍ଥା ଯେ କ'ଣ ହୋଇଥାନ୍ତା !

ଅରଣ୍ୟ ରୋଦନ – ବୃଥା ଚେଷ୍ଟା, ବୃଥା କାର୍ଯ୍ୟ– fruitless attempt/cry in the wilderness

.. ପରିଶ୍ରମ କଲନାହିଁ, ଫେଲ ହେଲ । ସେଥିପାଇଁ ଅରଣ୍ୟରୋଦନ କରି ଲାଭ କ'ଣ ?

ଅର୍ଦ୍ଧଚନ୍ଦ୍ର ଖାଇବା – ମାଡ଼ ଖାଇବା– to be seriously beaten/ to seize by neck

.. ପୁଅ ଏମିତି ଅର୍ଦ୍ଧଚନ୍ଦ୍ର ଖାଇଛି, ପାଟିରୁ ବଚନ ବାହାରୁନି ।

ଅଳପ ଧନ ବିକଳ ମନ – ଅଭାବୀ ମଣିଷର ବିକଳ ଭାବ – a light purse makes a heavy heart

.. ପିଅନ ଚାକିରୀ । ସେଇଥିରେ ଘରଦ୍ୱାର ଜମିବାଡ଼ି କରିବ । ଅଳପ ଧନ ବିକଳ ମନ । ଯେମତି ହଉ ତା'କୁ ଚଳିବାକୁ ପଡ଼ିବ ।

ଅଳସୁଆ କର୍ମକୁ ଗଙ୍ଗା ବିଜେ ହେବା – ଅକର୍ମାର ଭାଗ୍ୟ ଉଦୟ – unexpected reward for the undeserving

.. ରାମବାବୁର ସାନପୁଅଟା ସଦାବେଳେ ଘରେ ଅକର୍ମା ହୋଇ ବସିଥାଏ । ଅଳସୁଆ କର୍ମକୁ ଗଙ୍ଗା ବିଜେ ହେବା ଭଳି, ତା' ଭାଗ୍ୟକୁ ଦୁଇଲକ୍ଷ ଟଙ୍କାର ଲଟେରି ଉଠିଗଲା ।

ଅଳସୁଆର ବାରବାଟୀ ଚାଷ – ଅକର୍ମାର ବଡ଼ ଯୋଜନା– the grand design of the incapable

.. ପାଦେ ହଲିବାକୁ ବଳ ନାହିଁ, ସିଏ ପୁଣି କୁସ୍ତିରେ ଭାଗ ନେବ ! ଏଇଟା ଅଳସୁଆର ବାରବାଟୀ ଚାଷ ନୁହେଁ ତ ଆଉ କ'ଣ !

ଅସିଆ କାଳର ମସିଆ କଥା – ଅତିପୁରୁଣା କଥା– ancient story

.. ଛାଡ଼ି ଦିଅ ହେ, ଅସିଆ କାଳର ମସିଆ କଥାକୁ ଘାଣ୍ଟି କ'ଣଟା ଆଉ ପାଇବ ?

ଅହିନକୁଳ ସଂପର୍କ – ଭୟଙ୍କର ଶତ୍ରୁତା ଆଚରଣ– dead enemity

.. ଦୁଇ ଭାଇଙ୍କର ଅହିନକୁଳ ସଂପର୍କ, ଗୋଟାଏ ମଞ୍ଚରେ ଠିଆହେବା କଠିନ ।

ଅଲଣା କଥା – ଅଦରକାରୀ କଥା– useless talk/ vague words

.. ଅଲଣା କଥାରେ ମୁଣ୍ଡ ନ ପୁରାଇ ବରଂ କିଛି କାମ କର ।

## ଆ ।

ଆଇନ ଚାଲିବା – ଶାସନ ବ୍ୟବସ୍ଥାର ପ୍ରଚଳନ– promulgation of law

.. ଏଠି ଜଙ୍ଗଲ ଆଇନ ଚାଲିଛି, ସତ କଥା କହିବା ବୃଥା ।

ଆଇନ ଉଠେଇନେବା – କାର୍ଯ୍ୟକାରୀ ନ ହେବା– lifting the law

.. ଅବଶ୍ୟକ ସଂଖ୍ୟକ ଭୋଟ ନ ମିଳିବାରୁ ପୋଟ ଆଇନ ଉଠେଇ ନିଆଗଲା ।

ଆଉଟୁ ପାଉଟୁ ହେବା – ଦହଗଂଜ ହେବା– be worried/ to be in trouble

.. ପିଲାଟା ଭୋକରେ ଆଉଟୁ ପାଉଟୁ ହେଉଛି । କ'ଣ ଗଣ୍ଡେ ଖାଇବାକୁ ଦିଅ ।

ଆଉଁସିଲା କୁକୁର ମୁହଁରେ ମୁତିବା – ଅତି ଗେହ୍ଲାରୁ ସମ୍ମାନ ହାନି– too much familiarity slashes one's personality

ମାଟି ଉପରେ ଚଲେଇ ଦଉନଥିଲ ତା'କୁ । ଆଉ ଯଦି ଆଉଁସିଲା କୁକୁର ମୁହଁରେ ମୁତିଲା, ବାଧୁଛି କାହିଁକି ?

ଆକଟ କରିବା – ଶୃଙ୍ଖଳିତ କରିବା– to chain/ to rule / to discipline

.. ଏତିକିବେଳୁ ପିଲାଟାକୁ ଆକଟ ନ କଲେ ବଡ଼ ହେଲେ ସେ କାହାରିକୁ ମାନିବ ନାହିଁ ।

ଆକାଶରେ ଘର କରିବା – ସ୍ୱପ୍ନ ରାଜ୍ୟରେ ଭାସି ବୁଲିବା– to build castle in the air

.. କେତେଦିନ ସେ ଆକାଶରେ ଘର କରୁଛି କରୁ । ପେଟ ପୋଡ଼ିଲେ ଆପେ ସେ ବାଟକୁ ଆସିଯିବ ।

ଆକାଶ କୁସୁମ – ଅତି ଅସମ୍ଭବ କଥା– absurd thing/ useless matter

ସରକାରଙ୍କ କୃଷି ଯୋଜନା ଆକାଶ କୁସୁମ ପରି ଲାଗୁଛି । ଫଳାଫଳ କଥା କାହିଁକି ଭାବୁଛ ?

ଆକାଶ କଇଁଆ ଚିଲିକା ମାଛ – ଅସମ୍ଭବ ପରିକଳ୍ପନା– absurd idea/ vague imagination

.. ସରକାରଙ୍କ ଶିଳ୍ପ ନୀତିରେ ଜନତା ଲାଭବାନ ହେବେ, ହେଲେ ସେ ତ ଆକାଶ କଇଁଆ ଚିଲିକା ମାଛ । ଆଗ ଶିଳ୍ପ ନୀତି କାର୍ଯ୍ୟକାରୀ ହେଉ ।

ଆଖଉ ଆଖଉ ପାଖେଇବା – କ୍ରମେ ନିକଟତର ହେବା– to come closer gradually

.. ସାବଧାନ ଥିବ ! ଲୋକଟି ଆଖଉ ଆଖଉ ପାଖେଇଲାଣି । ତା' ପ୍ରକୃତି ଭଲ ଜଣା ପଡୁନି ।

ଆଖଡ଼ା କରିବା – ଫେଚକାମି କରିବା– to quarrel/ creating disturbances

.. କଲେଜ ପିଲାଙ୍କୁ ଘର ଭଡ଼ା ଦେଇ ଠିକ୍ କଲେନି । ଘରେ ପଶୁ ପଶୁ ସେମାନେ ଆଖଡ଼ା କରିବା ଆରମ୍ଭ କରିଦେଲେଣି ।

ଆଖିର ପଲକ – କ୍ଷଣ କାଳ– spark of the moment/ for a while

.. ଆଖିର ପଲକ ମଧ୍ୟରେ ସବୁକିଛି ବଦଳି ଗଲା ।

ଆଖିର ଦେଖା – କ୍ଷଣିକ ଦେଖା– occasional meeting/ encounter

.. ଥରେ ଅଧେ ଆଖିର ଦେଖା । କିଏ ବା କାହିଁକି ମନେରଖିବ ?

ଆଖିର ତାରା – ପ୍ରିୟ ଜିନିଷ– darling of the eye/very dear

.. ସାନ ପିଲାଟା ତା'ଙ୍କ ଆଖିର ତାରା । ତା'କୁ କ'ଣ ସେ କେବେ ଭୁଲିପାରିବେ !

ଆଖିର ଭାଷା ପଢ଼ିବା – ଆଖିର ଇଂଗିତ ବୁଝିବା– respond to one's emotion

.. ଝିଅଟିର ଆଖିର ଭାଷାରୁ ତା' ପ୍ରେମର ଗଭୀରତା ଜଣାପଡ଼ି ଯାଉଛି ।

ଆଖି ନ ପାଇବା – କଳନା କରିବା– beyond estimation

.. ତାଂକର ଏଡ଼େବଡ଼ କୋଠାକୁ ମୋ ଆଖି ପାଉନି ।

ଆଖି ପାଇବା – ମନକୁ ପାଇବା– to be appreciable

.. ଝିଅ ଠିକ୍ କରିଥିବା ପାତ୍ରଟିକୁ ଦେଖିଲି । ଅବଶ୍ୟ ଆଖି ପାଇଲା ।

ଆଖିକୁ ଦିଶିବା – ପସନ୍ଦ ହେବା– liking/ to meet one's approval/ choiceable

.. ଆଖିକୁ ଦିଶିବା ଭଳିଆ ବନ୍ଧୁ ଘରଟିଏ ତ ପାଇଲ, ଏଥର ଆଉ କାହିଁକି ମନ ମାରୁଛ ?

ଆଖି ଲାଖିଯିବା – ସମ୍ମୋହିତ ହେବା– enchanted / to be struckd by beauty

.. ଝିଅଟିର ରୂପ ଯେମିତି ହୋଇଛି, ଯେ କୌଣସି ଲୋକର ଆଖି ଲାଖି ଯିବ ।

ଆଖି ରଖିବା – ଲକ୍ଷ୍ୟ ରଖିବା– to keep an eye

.. ସେ ଦଶବର୍ଷ ହେଲା ସେ କୋଠା ଉପରେ ଆଖି ରଖିଛି । ନିଶ୍ଚୟ କିଣିବ ।

ଆଖିକାନ ଖୋଲା ରଖିବା – ସଜାଗ ରହିବା– to be alert/ vigilant

.. ଆରେ ଭାଇ ଆଖିକାନ ଖୋଲା ରଖିଥା, କେତେବେଳେ ଆସି ଡକାୟତମାନେ ପହଂଚି

ଯାଇପାରନ୍ତି !

ଆଖିକାନ ବୁଜିଦେବା – ନ ଶୁଣିବା– to be careless / not to listen to anything

.. ପୁଅର ସବୁ ଦୋଷତ୍ରୁଟି ଦେଖିଲା ପରେ ମଧ୍ୟ ସେ ଏକପ୍ରକାର ଆଖିକାନ ବୁଜିଦେବାକୁ ବାଧ୍ୟ ହୋଇଥିଲେ ।

ଆଖିରେ ନାଚିବା – ମନେ ପଡ଼ିବା– to recollect / to remember clearly

.. ମା'ର ମୃତ୍ୟୁକାଳୀନ ଛବିଟା ଏବେ ବି ମୋ ଆଖି ଆଗରେ ନାଚି ଉଠୁଛି ।

ଆଖିରେ ପଡ଼ିବା – ନଜରରେ ପଡ଼ିବା– to catch sight of

.. ବାଡ଼ ଡେଇଁ ଯାଉ ଯାଉ ଚୋରଟି ପୋଲିସ ଆଖିରେ ପଡ଼ିଗଲା ।

ଆଖିରେ ଆଖିରେ କଥା କହିବା – ମନର ହୃଦୟର ଭାଷା– to communicate with eyes / invisible communication

.. ପାଟିରେ ସିନା କହିପାରିଲାନି, ହେଲେ ଆଖିରେ ଆଖିରେ ସବୁ କଥା କହି ହୋଇଗଲା । ଉଭୟ ଉଭୟଙ୍କୁ ବୁଝିଗଲେ ।

ଆଖିରେ ଧୂଳିଦେବା – ଠକିବା– to cheat/ to deceive

.. ସେ ଏମିତି ଭାବେ ଆଖିରେ ଧୂଳି ଦେବ, ତା'କୁ ସହଜେ ଧରି ପାରିବ ନାହିଁ ।

ଆଖିରେ ଅଙ୍ଗୁଳି ଗେଞ୍ଜିବା – ନିର୍ଭୟରେ କାମ ହାସଲ କରିବା – to get things done cleverly

.. ଲୋକଟା ସମସ୍ତଙ୍କ ସାମନାରେ ଆଖିରେ ଆଙ୍ଗୁଳି ଗେଂଜି ମୂର୍ତ୍ତି ଚୋରି କରି ନେଇ ଚାଲିଗଲା, କେହି ଦେଖି ପାରିଲେ ନାହିଁ ।

ଆଖିପାଣି ଆଖିରେ ମରିବା – ଅପେକ୍ଷା କରି କରି ହତାଶ ହେବା– to get desperate after long wait

.. ପୁଅ ଫେରିଲା ନାହିଁ । ଚାହିଁ ଚାହିଁ ମା'ର ଆଖିପାଣି ଆଖିରେ ମଲାଣି ।

ଆଖି ଆଗରେ ଚାଲିଯିବା – ମରିଯିବା– to pass away early

.. ଈଶ୍ୱର କରନ୍ତୁ, ମୁଁ ତା'ଙ୍କ ଆଖି ଆଗରେ ଚାଲିଯାଏ ।

ଆଖି ବୁଜି ଦୁଧ ପିଇବା – ଛଳନା କରିବା, ପ୍ରତାରଣା କରିବା– to pretend / to act as if nobody understands the deception

.. ବୃଦ୍ଧ ଭାବୁଛି, ତା'ର ଭୁଲ କେହି ଦେଖି ପାରୁନାହାନ୍ତି । ପୁଅ ଆଖି ବୁଜି ଦୁଧ ପିଉଛି ତ !

ଆଖି ଥାଉଁ ଥାଉଁ ଅନ୍ଧ – ଦେଖି ନ ଦେଖିଲାଭଳିଆ– to pretend ignorance

.. ଯିଏ ଆଖି ଥାଉଁ ଥାଉଁ ଅନ୍ଧ ହବ, ତା'କୁ ପୁଣି ଜଗାଇବ କିଏ ?

ଆଖିରୁ ପାଣି ମରିବା – ଅପେକ୍ଷା କରି କରି ନିରାଶ ହେବା– to be completely disappointed/ to become desperate

.. ପୁଅକୁ ଚାହିଁ ଚାହିଁ ତା'ଙ୍କ ଆଖିରୁ ପାଣି ମଲାଣି । ହେଲେ ପୁଅ ଫେରିବାକୁ ନାହିଁ ।

ଆଖି ଖୋସି ହୋଇଯିବା – ଆଶ୍ଚର୍ଯ୍ୟ ହେବା– to be bewildered/ dumb-founded

ମୂର୍ତ୍ତିଟା ଦେଖି ତା'ଙ୍କ ଆଖି ଖୋସି ହୋଇଗଲା ।

ଆଖି ଖୋଲିବା – ଜ୍ଞାନ ଉଦୟ ହେବା– to come to senses

.. ଛୋଟ ଛୋଟ କଥାରେ ମୁଣ୍ଡ ଖେଳାଅ ନାହିଁ । ଦୁନିଆକୁ ଥରେ ଆଖି ଖୋଲି ଦେଖିବାକୁ ଚେଷ୍ଟାକର ।

ଆଖି ଦେଖାଇବା – ଭୟ ଦେଖାଇବା– to frown / to frighten

.. ଟିକିଏ ଆଖି ଦେଖେଇ ଦିଅ । ପିଲାଏ ଠିକ୍ ସମୟରେ ପାଠ କରିଦେବେ ।

ଆଖି ଆଗରେ ରଖିବା – ଲକ୍ଷ୍ୟ ରଖିବା– to keep one's eye over something/ to remain alert

.. ସମୂହ ସ୍ୱାର୍ଥକୁ ଆଖି ଆଗରେ ରଖି କାର୍ଯ୍ୟ କରିବା ଉଚିତ ।

ଆଖିଦେବା – ଯତ୍ନ ନେବା– to take care

.. ପିଲାଟାକୁ ଟିକିଏ ଆଖିଦିଅ, ନଚେତ୍ ବାଲୁଙ୍ଗା ହୋଇଯିବ ।

ଆଖି ଧରିବା – ଆଖିରୋଗ ବ୍ୟାପିବା– the spread of opthalmic infection

.. ଆଖିଧରା ରୋଗ ଆସିଛି, ଆଖି ଧରିବାଟା ସ୍ୱାଭାବିକ ।

ଆଖି ବୁଜିଦେବା – ଜାଣିଶୁଣି ନ ଚାହିଁବା, ଉପେକ୍ଷା କରିବା– to ignore

.. ବଡ଼ ପୁଅର ଦୋଷ ଦେଖିଲେ ମଧ୍ୟ ସେ ଆଖି ବୁଜି ଦିଅନ୍ତି ।

ଆଖି ଛୁଇଁବା – ରାଣ ପକାଇବା– to take an oath

.. ପ୍ରତି କଥାରେ ଆଖି ଛୁଇଁବାଟା ତା'ଙ୍କର ଗୋଟାଏ ବଦଭ୍ୟାସ ।

ଆଖି ପକାଇବା – ଲୋଭାସକ୍ତ ହେବା– to long for/ to desire for something

.. କାହାରି ସଂପତ୍ତି ଉପରେ ଆଖି ପକାଇବା ଉଚିତ ନୁହେଁ ।

ଆଖି ବୁଜିବା – ମରିବା– to pass away

.. ରାମବାବୁ ୮୦ ବର୍ଷ ବୟସରେ ଆଖି ବୁଜିଲେ ।

ଆଖି ଖୋଲିଯିବା – ଚାଲାକ ହୋଇଯିବା, ଅଧିକ ଜାଣିବା– to be clever/in a position to know more

.. କଲେଜ ମାଡ଼ିବା ପରଠୁଁ ତା'ର ଆଖି ଖୋଲିଗଲାଣି ।

ଆଖି ମାରିବା – ଇସାରା ଦେବା– to work to let know something/ mischievous love communication

.. ଆଖି ମାରିବା ପାଇଁ ଯୁବକଟିକୁ ପାଞ୍ଚଶହ ଟଙ୍କା ଜୋରିମାନା ଦେବାକୁ ପଡ଼ିଲା ।

ଆଖି ଠାରିବା – ଉସ୍କେଇବା– to induce

.. କାହିଁକି ଆଖିଠାରି ତା'କୁ ଡାକୁଛ ? ସେ କ'ଣ ତମେ ଜାଣିନା ?

ଆଖି ଫୁଟିଯିବା – ଅସହାୟ ହୋଇପଡ଼ିବା– feeling helpless

.. ପିଲାଟି ଚାଲିଗଲାଣି ଯେ ତା'କୁ ଝୁରି ଝୁରି ତା' ମା'ର ଆଖି ଫୁଟିଗଲାଣି ।

ଆଖି ଦେଖାଇବା – ରାଗିବା– to get angry/ to threaten

.. ସେ ଆଖି ଦେଖେଇଲେ ବୋଲି କ'ଣ ତା'ଙ୍କ କଥାରେ ଦବିଯିବି ?

ଆଖି ଉପରକୁ ହୋଇଯିବା – ବେଖାତିର କରିବା– not to care/to show disrespect

ଜନତା ସରକାର ଅମଳରେ ସେମାନଙ୍କ ଆଖି ଉପରକୁ ହେଇଯାଇଛି । ଇନ୍ଦ୍ର ଚନ୍ଦ୍ର ମାନୁନାହାନ୍ତି ।

ଆଖି କଥା କହିବା – ଚଗ ଚଙ୍ଗ ହେବା– restlessness / fickleness

.. ପଚାରିବ କ'ଣ ? ତା' ଆଖି କଥା କହିବାରୁ କିଛି ବୁଝି ପାରିଲନି ?

ଆଖି ଉପରକୁ ଉଠିଯିବା – ଆଶ୍ଚର୍ଯ୍ୟ ହୋଇଯିବା– to be astonished/ dumbfounded

.. ରାତାରାତି ଏତେଗୁଡ଼ିଏ ସୁନା ଅଳଙ୍କାର ଦେଖି ତା'ଙ୍କ ଆଖି ଉପରକୁ ହୋଇଗଲା ।

ଆଖି ଖୋଲିଯିବା – ଜ୍ଞାନ ଉଦୟ ହେବା– to be aware / to be conscious

.. ଭାଇଠାରୁ ସବୁ ଘଟଣା ଶୁଣିଲାପରେ ତା'ଙ୍କର ଆଖି ଖୋଲିଗଲା ।

ଆଖି ଫେରାଇବା – ଆଖି ବନ୍ଦ କରିବା, ନ ଚାହିଁବା– engrossed/ overwhelmed

.. ଝିଅଟିର ରୂପ ଦେଖି ଆଖି ଫେରାଇବାକୁ ଇଚ୍ଛା ହଉ ନଥିଲା ।

ଆଖି ବୁଲାଇବା – ଚାରିଆଡ଼କୁ ଦୃଷ୍ଟି ପକାଇବା– to be vigilant

ଘରର ଚାରିଆଡ଼େ ଆଖି ବୁଲେଇ ଆଣିଲେ, ହେଲେ ଚୋରର ସଂକେତ ପାଇଲେ ନାହିଁ ।

ଆଖି ଲାଗି ଯିବା – ନିଦ ଲାଗିବା/ଆସିବା– to feel asleep/ drowsiness

.. ରାତିଯାକ ଅନିଦ୍ରା ରହିବା ପରେ ପାହାନ୍ତା ପ୍ରହରକୁ ତା'ଙ୍କ ଆଖି ଲାଗି ଆସିଲା ।

ଆଖି ଦେଖେଇବା – ଭୟଭୀତ କରାଇବା– to frighten / to threaten

.. ସେ ଆଖି ଦେଖାଇ ଘଟଣାଟିକୁ ଚପାଇଦେଲେ ।

ଆଖି ପକେଇବା – ନଜର ପକେଇବା– to feel greedy about something

.. ପର ଧନ ଉପରେ କାହିଁକି ଆଖି ପକାଉଛ ?

ଆଖୁ କିଆରୀରେ ପଶିବା – କୌଣସିଟିକୁ ଧରି ନ ପାରିବା, ସବୁକୁ ଆବୁରି ବସିବା– incapacity to choose

.. ସେ ଏଇନେ ଆଖୁ କିଆରୀରେ ପଶିଛି, ଭଲ ବୁଦ୍ଧି ତା' ମୁଣ୍ଡକୁ ଜୁଟିବନି । କିଛି ପରାମର୍ଶ ଦିଅନି ।

ଆଖୁ କିଆରୀରେ ପେଲିଦେବା – ବିପଦରେ ପକାଇବା– putting someone in danger

.. ତା'କୁ ସାବଧାନ ଥିବ । ବେଳ ପଡ଼ିଲେ ସେ ଆଖୁ କିଆରୀକୁ ପେଲିଦେଇ ମଜା ଦେଖିବ ।

ଆଗତଚଲା – ଅଯଥାରେ ଭଡ଼ ଭଡ଼ ହେବା– extrovert

.. ସେଇଟା ତ ଗୋଟିଏ ଆଗତ ଚଲା । ତା' କଥାକୁ କ'ଣ ଧରିବସୁଛ ?

ଆଗତକୁହା – ନ ପଚାରିଲେ ଯେ କହିଥାଏ– who speaks uncalled for

.. ସେ ଆଗତକୁହା ଢଙ୍ଗ ଛାଡ଼ । ଅନ୍ୟମାନଙ୍କଠାରୁ କିଛି ଶିଖିବାକୁ ଚେଷ୍ଟାକର ।

ଆଗପତରିଆ – ସର୍ବମାନ୍ୟ ବ୍ୟକ୍ତି– honourable person

.. ଆରେ ଦାମଭାଇକୁ ଡାକ । ସେ ତ ଆଗପତରିଆ । ସେ ବସି ସାରିଲେ ଅନ୍ୟଯିଏ ବସିବ ।

ଆଗପଛ ହେବା – କିଛି ସ୍ଥିର କରି ନ ପାରିବା– incapacity to take a decision

.. ପରୀକ୍ଷା ଦେଇ ଦେ, ଯାହାହବାର ହବ । ଏତେ ଆଗପଛ ହବାର କ'ଣ ଅଛି ?

ଆଗ ପୁଅ ବାଘ – ପ୍ରଥମ ସନ୍ତାନ ସାହାଯ୍ୟକାରୀ– first child is always helpful

.. ବାପସିନା ଛୋଟା ହେଇଗଲା, ହେଲେ ବଡ଼ପୁଅ କାନ୍ଧ ଲଗେଇ ଦେଲା ନା । କଥାରେ କହନ୍ତିନି, ଆଗ ପୁଅ ବାଘ ।

ଆଗ ପାଞ୍ଚ ବାଘ ଖାଏ – ଭବିଷ୍ୟ ଉପରେ ନିର୍ଭର କରିବା– lack of reliability of future plans

.. ଡିସେମ୍ବର ହଉ, କଲିକତା ଯିବ । ଆଗ ପାଞ୍ଚ ବାଘ ଖାଏ । ଏବେଠାରୁ କିଛି ସ୍ଥିର କରନି ।

ଆଗ ସୁନା ପାଗ – ଆଗକାମର ଆଦର– first business first gain

.. ପ୍ରଥମେ ସେ ଏଇଟା ବାହାର କରିଛି । ପୁରସ୍କାରଟା ତା'ର ପ୍ରାପ୍ୟ । କଥାରେ କହିଛି ପରା, ଆଗ ସୁନା ପାଗ ।

ଆଗତ ଚଢ଼େଇକୁ ବେସରବଟା – ଅନିଶ୍ଚିତ ଯୋଜନା– to count the chickens before they are hatched

.. ଆଗ ଚାକିରୀ କର, ତା'ପରେ କୋଠା କରିବୁ । କିଛି କୁଆଡୁ ନାହିଁ । ଆଗତ ଚଢ଼େଇକି ବେସରବଟା ଭଳିଆ କାହିଁକି ହଉଛୁ ?

ଆଗତ ଭବିଷ୍ୟ ଗଣିବା – ଅନିଶ୍ଚିତ ଆଶା ପଛରେ ଧାଇଁବା– to count the future

.. ଆରେ ଭାଇ ସେ ହଉଛି ଆଗତ ଭବିଷ୍ୟ ଗଣିଲାବାଲା । ବିନା ଲାଭରେ ସେ ପାଦ ପକେଇବନି ।

ଆଙ୍ଗୁଠି ଦେଖେଇ ବାହାଗିଳିବା – ଅଳ୍ପରୁ ଆରମ୍ଭ କରି ପୁରାପୁରି ମାଡ଼ି ବସିବା– devouring in slow degrees

.. ତା'କୁ ଏ ସବୁ କିଛି ଜଣାଅ ନାହିଁ, କାରଣ ସେ ହଉଛନ୍ତି ଆଙ୍ଗୁଠି ଦେଖେଇଲେ ବାହାଗିଳିବା ଲୋକ ।

ଆଛାକରି ପାନେ ଦେବା – ମଜା ଚଖେଇବା, ମାଡ଼ଦେବା, ହଇରାଣ କରିବା– put into trouble/ to beat seriously

ଏମିତି ଆଜ୍ଞାକରି ପାନେ ଦେଇଛି ପୁଅ ଆଉ ଦିନକ ପାଇଁ ଆମ ବେପାରରେ ମୁଣ୍ଡ ପୁରାଇବନି ।

ଆଜ୍ଞାକୁ ଅବଧାନ – ଆଦେଶାନୁସାରେ କାମ କରିବା– work as per order

.. ଆଜ୍ଞାକୁ ଅବଧାନ । ଟିକେ ଏପଟ ସେପଟ ହେଲେ ଦଶ ହଜାର ମିଟର ତଳକୁ ଖସିପଡ଼ିବ ।

ଆଡ଼ଆଖିରେ ନ ଚାହିଁବା – ଭୃକ୍ଷେପ ନ କରିବା, ଯତ୍ନ ନ ନେବା– to disobey/ not to take any care

.. ପିଲାଟି ଦିନରୁ ପାଳି ପୋଷି ରାମକୁ ମଣିଷ କରିଥିଲେ ଦାମବାବୁ । ମୁଣ୍ଡକୁ ହାତ ପାଇଯିବାରୁ ଆଡ଼ଆଖିରେ ସେ ଚାହିଁଲାନି ତା'ଙ୍କୁ ।

ଆଡ଼ ଚିରା ମାରିବା – ଲୁଚିଛପି, ବାଆଁରେଇ ହେଇ– to be secrative

.. ଯେମିତି ଝିଅଟାକୁ ଦେଖିଲା, କଥାବାର୍ତ୍ତା ନାହିଁ, ଆଡ଼ଚିରା ମାରି ଛୁ ।

ଆଡ଼ ଆଡ଼ ହେବା – ଲାଜ କରିବା– to feel shy

.. ଦେଢ଼ଶୁରଙ୍କୁ ଦେଖି ଭାଇବୋହୂ ଆଡ଼ ଆଡ଼ ହେଇ ଚାଲିଗଲା ।

ଅଣ୍ଟା ବାନ୍ଧିବା – ଅଡ଼ି ବସିବା– to persist/to insist

.. ବାପଘରକୁ ଯିବ ବୋଲି ବୋହୂଟା ତିନିଦିନ ହେଲା ଆଣ୍ଟ ବାନ୍ଧି ବସିଛି ।

ଆଣ୍ଠୁଗଣ୍ଠି ଛିଡ଼େଇବା – ଇହୁ ଲୁହାଣ ହେବା– getting hurt

.. ସାମାନ୍ୟ କଥାବାର୍ତ୍ତାରେ ସେ ଆଣ୍ଠୁଗଣ୍ଠି ଛିଡ଼େଇ ସାରିଲାଣି । ହାତାହାତି ହେଲେ ଆହୁରି କ'ଣ ନ ହେବ !

ଆଣ୍ଠେଇ ପଡ଼ିବା – ଦୁର୍ବଳ ହୋଇପଡ଼ିବା, ଥକି ପଡ଼ିବା– to feel tired/to be struck in the middle

.. ଜୀବନ ସାରା ରଣ କରି ସେ ଆଣ୍ଠେଇ ପଡ଼ିଛନ୍ତି । ଆଉ ଉଠିବାକୁ ବଳ ପାଉନି ।

ଆ ଦଉଡ଼ି ମୋତେ ବାନ୍ଧ – ବିପଦକୁ ଡାକି ଆଣିବା– inviting danger to oneself

.. ତା'କୁ ବୁଝାଇ କିଛି ଲାଭନାହିଁ । ଚୋରକୁ ଘରେ ଆଶ୍ରୟ ଦେଇ ସେ 'ଆ ଦଉଡ଼ି ମତେ ବାନ୍ଧ' ଶିଖିଛନ୍ତି ।

ଆପଣା ଦେଶେ ଠାକୁର – ନିଜ ସ୍ଥାନରେ ଆଦୃତି– one is lord under his own roof

.. ସନ୍ଦେହ କରନି । ଲୋକାଟା ଜ୍ଞାନପୀଠ ପୁରସ୍କାର ଜିତିଛି । ଆପଣା ଦେଶରେ ଠାକୁର ହବନି ?

ଆପଣା ହାତ ଜଗନ୍ନାଥ – ନିଜ ଉପରେ ଭରସା ରଖି କାମ କରିବା– to depend on one's own ability

.. ଆଉ ଭାବୁଛ କ'ଣ ? ଆପଣା ହାତ ଜଗନ୍ନାଥ, ଆଗେଇ ଯାଅ ?

ଆପଣା ସୁନା ଭେଣ୍ଡି – ନିଜଲୋକ ଭୁଲକାମ କରିବା–to be deceived by one's

own men

.. ଆପଣା ସୁନା ତ ଭେଣ୍ଡି, କାନ୍ଦିବେନି ଆଉ କ'ଣ କରିବେ !

ଆପଣା ଶିଙ୍ଗରେ ମାଟି ତାଡ଼ିବା – ନିଜେ ନିଜ ଗୋଡ଼ରେ ଠିଆହେବା– self-made/ to stand on one's own legs

.. ତା'କୁ କହିପାରିବନି, ସେ ଆପଣା ଶିଙ୍ଗରେ ମାଟିତାଡ଼ି ମଣିଷ ହୋଇଛି ।

ଆପୁ ଆପୁ ହେବା – ପାଟି ଝନି ମାରିଯିବା– to loose one's speech

.. ଥଣ୍ଡାରେ ତା' ପାଟି ଆପୁ ଆପୁ ହଉଛି । ସିଏ କି ଭାଷଣ ଦବ ?

ଆପେ ରାନ୍ଧୁଣୀ ଆପେ ଚାଖୁଣୀ – ସବୁକଥା ନିଜେ ବୁଝିବା– to cover up one's short-comings/to judge one's own work

.. ତା'ଠୁଁ ଖସିବା ସହଜ ନୁହେଁ । ସେ ଆପେ ରାନ୍ଧୁଣୀ ଆପେ ଚାଖୁଣୀ । ଠିକଣାବେଳେ ଦୋଷ ଧରିଦେବ ।

ଆପେ ମଲେ ସ୍ୱର୍ଗ ଯାଏ / ଆପେ ବଂଚିଲେ ବାପର ନାଁ – ନିଜ କଥା ନିଜେ ବୁଝିବା– one's own interest is first interest

.. ଯାହା ପଇସା ପତ୍ର ମିଳୁଛି, ବାନ୍ଧ । ସେମାନଙ୍କ କଥା ଭୁଲିଯାଅ । ଆପେ ବଂଚିଲେ ବାପର ନାଆଁ ।

ଆମ୍ବ ଖିଆକୁ ଟାକୁଆ ଖିଆ ଭଣ୍ଡେଇବା – ଧନୀ ଆଗରେ ଅଳ୍ପ ଧନୀର ଉଦାହରଣ ବାଢ଼ିବା– the poor browbeating the rich

.. ସିଏ ପୁରୁଣା ମୂଷା, କ'ଣ ପାଇଲୁ କି ତା'କୁ ? ଆମ୍ବ ଖିଆକୁ ଟାକୁଆ ଖିଆ ଭଣ୍ଡଉଛି ? ସିଏ ଠିକ୍ ବୁଝିପାରିବ ।

ଆମ୍ବ ପଡ଼ିବା – ବିକ୍ରି ଆରମ୍ଭ ହେବା– good supply

.. ମାଲଗୋଦାମରେ ଆମ୍ବ ପଡ଼ିଲାଣି । ଦର କମ୍ ଅଛି ।

ଆରେଇ ଯିବା – ଆଦରିଯିବା, ଖାପଖୁଆଇ ନେବା– to get accustomed

.. ନୂଆ ନୂଆ ଘରକୁ ଆସିଛି, କାନ୍ଦୁଛି । ଆରେଇଗଲେ ଆଉ କିଛି ହବନି ।

ଆରପାରିକୁ ଯିବା – ମୃତ୍ୟୁବରଣ କରିବା– to pass away

.. ତା'ଙ୍କୁ କୋଉଠୁ ପାଇବ ? ସେ ତ କେବେଠାରୁ ଆରପାରିକୁ ଚାଲିଗଲେଣି ।

ଆରପାରିର ଡାକ – ଆୟୁଷ ଶେଷହେବା, ମୃତ୍ୟୁ ସନ୍ନିକଟ– nearer to death

.. କାହିଁକି ଆଉ ଅଯଥା ମାୟା ମୋହ ଭିତରକୁ ଟାଣୁଛ । ମୋତେ ଆରପାରିର ଡାକ ଶୁଭିଲାଣି ।

ଆଳୁ ଖୋଳୁ ଖୋଳୁ ମହାଦେବ ବାହାରିବା – ଛୋଟ କଥା ଧରୁ ଧରୁ ବଡ଼ କଥା ଜଣାପଡିବା– to strike a big discovery accidentally

.. ଅବଶ୍ୟ କାମରେ ହାତ ନ ଦେଇଥିଲେ ଭଲ ହୋଇଥାନ୍ତା । କିଏ ଜାଣିଥିଲା ଆଳୁ ଖୋଳୁ ଖୋଳୁ ମହାଦେବ ବାହରିବ ବୋଲି !

ଆଲୁଦୋଷ – ଅଭ୍ୟାସଗତ ଦୋଷ ବା ଦୁର୍ବଳତା– a routine habit one is not aware

.. ନନାଙ୍କର କିଛି ଆଲୁଦୋଷ ରହିଛି ନଇଲେ କାହା ସାଥିରେ କେମିତି କଥା ହେବାକୁ ହୁଏ ଜାଣନ୍ତେନି ।

ଆ ବଳଦ ମତେ ବିନ୍ଧି – ବିପଦ ବରଣ କରିବା– inviting trouble

.. ସେ ତ ନିଜେ 'ଆ ବଳଦ ମତେ ବିନ୍ଧିବା କାମ' କରିଛି । ଏବେ କାନ୍ଦିଲେ କ'ଣ ହେବ ।

ଆଶା ବୈତରଣୀ – ଅସୁମାରୀ ଆଶା– unlimited desire/ unquenchable thirst

.. ପୁଅକୁ ବାହା ଦେଇ ଯାହା ପାଇବେ, ସେଇଥିରେ ଆଶା ବୈତରଣୀ ପାରି ହେଇଯିବେ ବୋଲି ରାମବାବୁ ଭାବିଛନ୍ତି ।

ଆଶା ଭରସା – ଏକ ମାତ୍ର ସହାୟ– only saviour

.. ଈଶ୍ୱର ହିଁ ଏକମାତ୍ର ଭରସା । ସେ ହିଁ କେବଳ ତା'କୁ ବିପଦରୁ ରକ୍ଷା କରିପାରିବେ ।

ଆଷାଢ଼ ମାସରେ ଘସିପାରିବା – ଅବେଳରେ ବୃଥା ପରିଶ୍ରମ– futile labour

.. ଆଷାଢ଼ ମାସରେ ଘସି ପାରୁଛି, ପାରୁ, କିଛି କୁହନି । ହାବୁଡ଼ରେ ପଡ଼ିଲେ ସିଏ ଠିକ୍ ଶିଖିଯିବ ।

ଆସନ ଟଳମଳ ହେବା – ଦୋଦୁଲ୍ୟମାନ– vacillating/ wavering

.. ଜନତା ସରକାରର ଆସନ ଟଳମଳ ହେଲାଣି । ଇଲେକ୍ସନ ନିଶ୍ଚିତ ।

ଆହା କରିବା – ସମବେଦନା ଜଣାଇବା, ଦୟା ଦେଖାଇବା– to be kind/ to console

..ବାପ ମା' ମରିଗଲା ପରେ ଆହା କହିବାକୁ ତା'ର କେହିନାହାନ୍ତି ।

ଆୟାରାମ ଗୟାରାମ – କୌଣସି ସ୍ଥିରତା ନଥିବା । ନିଜର ସ୍ୱାର୍ଥ ଘେନି କାର୍ଯ୍ୟ କରିବା – to work selfishly without any conviction

.. ଯେତିକି ଆସୁଛି, ସେତିକି ଆୟାରାମ ଗୟାରାମ ହୋଇଯାଉଛି । ବଳିଲେ ସିନା ଯାଗ କହିବ ।

ଆଳ ବୋଇଲେ କାଳ୍ – ସ୍ଥିର ନିଶ୍ଚୟ କରି ନ ପାରିବା– no fixity

.. ତା' ଆଗରେ କହିଲେ, ସେ ଆଳ ବୋଇଲେ କାଳ୍ ବୁଝିବ । କାହିଁକି ଅଯଥାରେ କହିବ ?

ଆଲ୍ଲା ଭଜିବା – ନିରୁପାୟ ହେବା– to be helpless

.. ଯେତିକି ଅନ୍ୟାୟରେ ଆଣିଥିଲା ଘର ପୋଡ଼ିରେ ସବୁଗଲା । ଏବେ ବସି ଆଲ୍ଲା ଭଜୁଛନ୍ତି ।

ଆଲୁରୁବାଲୁରୁ – ଏଣୁ ତେଣୁ, ଅପରିଷ୍କାର– nonsense/ shabby

.. କ'ଣ ଆଲୁରୁବାଲୁରୁ ତା'ଙ୍କ ସାଙ୍ଗରେ ଗପୁଛୁ ? ସିଏ ପରା ତୋ ମାମୁ ।

ଆଲୋ ମଉସା, ଜଡ଼ ପଇସା – କିଂ କର୍ତ୍ତବ୍ୟ ବିମୂଢ଼ ଅବସ୍ଥା– to feel helpless for

want of means

.. ବିଚରା କ'ଣ ବା କରିବ ସିଏ । ଚାକିରୀଟା ଚାଲିଗଲା । ମୁଣ୍ଡ ଉପରେ ଝିଅ ବାହାଘର । ଆଲୋ ମଉସା ଜଡ଼ ପଇସା । ବିନା ପଇସାରେ କ'ଣ ବା କରିପାରିବ ସେ ।

## ଇ

**ଇଜ୍ଜତ କା ସବାଲ – ଗୌରବକୁ ଜାବୁଡ଼ି ଧରିବା–** a question of honour

.. ଆରେ ଭାଇ ଏ ଘର ହେଉଛି ମୋ ଇଜ୍ଜତ୍ କା ସବାଲ । ଗରିବ ହୋଇଯିବି ପଛେ ବିକ୍ରିକରି ପାରିବିନି ।

**ଇଜ୍ଜତ୍ ତଳେ ପଡ଼ିବା – ସମ୍ମାନ ହାନି ହେବା–** loss of dignity

.. ଇଜ୍ଜତ ତଳେ ପଡ଼ିବାଠାରୁ ବଳି ବଡ଼ କ୍ଷତି ଆଉ କ'ଣ ଅଛି ?

**ଇଜ୍ଜତ ସାଙ୍ଗେ ଖେଳିବା – ସମ୍ମାନକୁ ପରିହାସ–** to ridicule one's dignity

.. କାହାରି ଇଜ୍ଜତ ସାଙ୍ଗରେ ଖେଳ ଖେଳିବାଟା ଆଦୌ ଭଲକଥା ନୁହେଁ ।

**ଇଜ୍ଜତ ମହତ ସାରିବା – ଗାଳିମନ୍ଦ କରିବା –** to abuse/to lose one's honour

.. ଇଜ୍ଜତ ମହତ ସାରିବାକୁ କାହାକୁ ବା ଭଲ ଲାଗେ ?

**ଇତସ୍ତତ ହେବା – ସଂକୋଚ କରିବା, ହଡ଼ବଡ଼ହେବା, ଅନ୍ୟମନସ୍କ–** perturbed/ to waver

.. କଥାଟା କହିବେ କି ନାହିଁ, ଏଇଆ ଭାବି ସେ ଇତସ୍ତତ ହେବାକୁ ଲାଗିଲେ ।

**ଇତି କଥା – ଶେଷ କଥା, ଉପକଥା, ଇତିହାସ–** conclusion/ending

.. ଏହା ହିଁ ହେଉଛି ଏ କାହାଣୀର ଇତିକଥା ।

**ଇତି କରିବା – ଶେଷ କରିବା–** coming to an end

.. ଷୋଳ ବର୍ଷର ସଂପର୍କକୁ ଇତି କରିବା କ'ଣ ଏତେ ସହଜ ?

**ଇତିହାସ ଖୋଲିବା – ଗୁପ୍ତକଥା ପ୍ରଥମରୁ ଆରମ୍ଭ କରିବା–** opening secrete

.. ଏତେ ଲୋକଙ୍କ ଆଗରେ ଇତିହାସ ଖୋଲନାହିଁ ।

**ଇତିଶ୍ରୀ ହେବା – ଶେଷ ହୋଇଯିବା–** about to end/ come to an end

.. ଯାହାସବୁ ଧନ କମେଇଥିଲେ ସେ ସବୁ ଜୁଆରେ ଇତିଶ୍ରୀ ହେବା ଉପରେ ।

**ଇନ୍ଦ୍ର ପତନ – ବିଖ୍ୟାତ ବ୍ୟକ୍ତିର ମୃତ୍ୟୁ –** death of a famous person

.. ସଚିନଙ୍କ ମୃତ୍ୟୁରେ କ୍ରୀଡ଼ାଜଗତରେ ଇନ୍ଦ୍ରପତନ ଘଟିଲା ।

**ଇନ୍ଦ୍ର ଚନ୍ଦ୍ର ନ ମାନିବା – ସମସ୍ତଙ୍କୁ ଅବଜ୍ଞା କରିବା–** not to pay proper respect to anybody

.. ବଡ଼ ଚାକିରୀ କରୁଛି ବୋଲି ସେ ଇନ୍ଦ୍ର ଚନ୍ଦ୍ର ମାନୁନି ।

ଇନ୍ଦ୍ର ଶହେକୁ ସତି ଏକ – କୋଟିଏରେ ଗୋଟିଏ– very rare

.. ମୋ ପୁଅର ଦୋଷ ଧରିବାକୁ ତମେ ସାହସ କରିପାରୁଛ ? ଜାଣି ନାହଁ, ଇନ୍ଦ୍ର ଶହେକୁ ସତି ଏକ । ତା'ର ପୁଣି ଭୁଲ ବାଛିବ ?

ଇଶାଣରେ ଚାଉଳ ପକାଇବା – ବିବାହ ସ୍ଥିର ହେବା– made for each other

କିଏ ଜାଣେ କାହା ଈଶାଣରେ ସେ ଚାଉଳ ପକାଇଛି । ତେବେ ଏଇ ଆଷାଢ଼ରେ ବାହାନାଡ଼ି ନିଶ୍ଚୟ ଫିଟୁଛି ।

ଇଷ୍ଟନାମ ଜପିବା – ଈଶ୍ୱରଙ୍କୁ ସ୍ମରଣ କରିବା– to pray God

.. ମସ୍ତକ ଉପରେ ଝୁଲୁଥିବା ଖଣ୍ଡାକୁ ଦେଖି ସେ ବାରମ୍ବାର ଇଷ୍ଟନାମ ଜପିବାକୁ ଲାଗିଲେ ।

ଇସାରା ଦେବା – ସୂଚନା ଦେବା– giving suggestion/ hints

.. ବୁଝିବା ଲୋକକୁ ଇସାରା ଯଥେଷ୍ଟ ।

ଇଲମ ପାଇବା – ଶିକ୍ଷା ପାଇବା– to be tought a lesson

.. ବ୍ୟସ୍ତ କାହିଁକି ହଉଛ ? ପୁଅ ଇଲମ ପାଇଲେ ଆପେ ଆମ ପଟକୁ ଆସିଯିବ ।

ଇଲାକା ତୁଟେଇବା – ସଂପର୍କ ଛିନ୍ନ କରିବା– to cut off relation

.. ସେ ତ ଇଲାକା ତୁଟେଇବା କାମ କରିଛି, କିଏ କାହିଁକି ତା'କୁ ସମର୍ଥନ ଦେବ ?

## ଉ

ଉଆ ଖାଇ ବସିବା – ସଜବାଜ ହୋଇ ବସିବା– getting ready

.. ବାପ ଘର ଯିବ ବୋଲି ଶଶି ଉଆ ଖାଇ ବସିଛି ।

ଉଅାଁସି କନିଆ – ଅମଙ୍ଗୁଳିଆ ଝିଅ– unlucky girl born on newmoon day

.. ଛବି ଉଅାଁସିକନିଆ ହୋଇଥିବାରୁ ତା'କୁ କେହି ବାହା ହଉନାହାନ୍ତି ।

ଉଆ ଉଷୁନା ସମାନ – ପାପ ପୁଣ୍ୟ ସମାନ– no profit no loss

.. ନାନୀର ଉଆ ଉଷୁନା ସବୁ ସମାନ । ନା'ତାର ଆଗକୁ ଅଛି ନା' ପଛକୁ ଅଛି !

ଉଇକି ଓଦାଭୂଇଁ – ମନ ଅନୁସାରେ ଫଳ– like father like son

.. ଶିକ୍ଷକ ପଳେଇଗଲେ, ପିଲାଙ୍କୁ ମାତିବା ପାଇଁ ସୁଯୋଗ ମିଳିଗଲା । ଉଇକି ଓଦାଭୂଇଁ ।

ଉଇ ଧରିବା – ଉଇ ମାଡ଼ିଯିବା– eaten by white-ant

.. ଉଇ ଧରିବାରୁ ବଡ଼ ବଡ଼ ବହିଯାକ ନଷ୍ଟ ହୋଇଗଲା ।

ଉଜ୍ଜୁଟି ଉଠିବା – ଉଜ୍ଜଳ ହୋଇଉଠିବା– glittering

.. ଶୁଦ୍ଧ ସୁବର୍ଣ୍ଣ ଆପେ ଉଜ୍ଜୁଟି ଉଠିବ ।

ଉଜୁଣି ମୁଣ୍ଡରେ ଖୋସା – ବୁଢ଼ାକୁ ସଜେଇ ହବା– to show off

.. ବାହା ତିଥି ତ ଅନେକ ଦୂର । ଉଜୁଣି ମୁଣ୍ଡରେ ଖୋସା ପାରିଲେ କ'ଣ ହେବ ?

ଉଖୁଡ଼ାଦିଆ ବନ୍ଧୁ – ସ୍ତ୍ରୀର ଭାଇ, ଶାଳକ– brother-in-law

.. ଉଖୁଡ଼ାଦିଆ ବନ୍ଧୁ ଉପରେ ଏମିତି ରାଗିଲେ ଚଳିବ !

ଉଚକପାଳିଆ – ଭାଗ୍ୟବାନ– lucky person/ fortunate

.. ଉଚକପାଳିଆ ହୋଇନଥିଲେ ସେ ଏତେ ଉପରକୁ ଉଠିପାରିଥାନ୍ତା ?

ଉଚଘର – ଆର୍ଥିକ ସ୍ୱଚ୍ଛଳ, ସମ୍ଭ୍ରାନ୍ତ ବଂଶଧର– well-to-do family/ financially sound

.. ଉଚଘର ଦେଖି ସେ ଝିଅକୁ ବାହା ଦେଲେ ?

ଉଚ ନଜର – ଉତ୍ତମ ଦୃଷ୍ଟି– good sense/ high mindedness

.. ଦିନ ମଜୁରିଆ ହେଲେ କ'ଣ ହେବ, ତା'ଙ୍କ ଉଚନଜର କଥା ସମସ୍ତେ ଜାଣନ୍ତି ।

ଉଚମନ – ଉଦାର ମନ– magnanimous/ liberal

.. ଉଚମନ ଥିଲାବୋଲି ସିନା ସେ ପୁଅକୁ କ୍ଷମା କରିଦେଲେ ।

ଉଚବାଚ କରିବା – ଝଗଡ଼ା କରିବା– to be involved in quarrels

.. ଇତର ଲୋକଙ୍କ ସହିତ ଉଚବାଚ କରିବା ଠିକ୍ ନୁହଁ ।

ଉଚ କପାଳିଆ – ଭାଗ୍ୟବାନ– luckiest person

.. ପିଲାଟା ଉଚ କପାଳିଆ, ତା' ନ ହେଲେ ଏମିତିକା ଚାକିରୀ ପାଇଥାନ୍ତା !

ଉଁ ଚୁଁ ନ କରିବା – ନୀରବ ରହିବା, ହଲଚଲ ନ ହେବା– to remain silent/ be steady

.. ଏତେ ମାଡ଼ ପରେ ମଧ୍ୟ ପିଲାଟା ଉଁ ଚୁଁ କରୁନି ।

ଉଚ୍ଛନ୍ନ କରିବା – ସର୍ବସ୍ୱାନ୍ତ କରିବା– to hasten/to ruin

.. ତା'ଙ୍କ ଟଙ୍କା ଦେଇଦିଅ, ନଇଲେ ସେ ଉଚ୍ଛନ୍ନ କରିଦେବେ ।

ଉଚ୍ଛନ୍ନ ହେବା – ଅଧିର ହେବା– to be worried/ disturbed

.. କାହିଁକି ଉଚ୍ଛନ୍ନ ହଉଛ ? ସେ ଠିକ୍ ସମୟରେ ପହଂଚିବେ ।

ଉଚ୍ଛନ୍ନ ହୋଇଯିବା – ତଳକୁ ଖସିଯିବା– be ruined/ to go down

.. କୁସଙ୍ଗରେ ପଡ଼ି ତା'ଙ୍କ ପୁଅଟା ଉଚ୍ଛନ୍ନ ହୋଇଗଲାଣି ।

ଉଚ୍ଛେଦ କରିବା – ବିତାଡ଼ିତ କରିବା– to destroy/ to eject

.. ଭଡ଼ାଟିଆ ଲୋକଟିକୁ ଘରମାଲିକ ଉଚ୍ଛେଦ କଲେ ।

ଉଜେଇ ଦବା – ବିସର୍ଜନ କରିବା– to immersion/ to abondon/ to discharge

.. ଷୋଳ ପାଳି ଓଷା କଲାପରେ ସେ ଆଜି ଉଜେଇବା ପାଇଁ ଯାଇଛନ୍ତି ।

ଉଠବସ୍ କରେଇବା – ହଇରାଣରେ ପକେଇବା, ବୋଲମାନିବା– putting into trouble/ to let somebody obey orders

ସ୍ତ୍ରୀ ଲୋକଟା ତା'ଙ୍କୁ ରାତିଦିନ ଉଠବସ୍ କରଉଛି ।

ଉଠାବସା କରିବା – ଦଣ୍ଡ ଦେବା– to punish/ to disturb

.. ଆଉ ଅଧିକ ଉଠାବସା କରାନ୍ତୁ ନାହିଁ । ସେ ତା'ଭୁଲ ମାନିଯାଇଛି ।

ଉଠାଇନେବା – ପ୍ରତ୍ୟାହାର କରିବା– to withdraw

.. ସଂସଦରୁ ବିକ୍ରିକର ବିଲକୁ ଉଠାଇ ନିଆଗଲା ।

ଉଠାପକା କରିବା – ହଇରାଣ କରିବା– to irritate

.. ପାଗଳାଟାକୁ ପିଲାଏ ଉଠପକା କରୁଛନ୍ତି ।

ଉଠିଆ ଖାଇବା – ମାଗଣା ଖାଇବା– eating free meals

.. ଏ ଉଠିଆ ଖାଇବା ଅଭ୍ୟାସ ଛାଡ଼ । ପରିଶ୍ରମ କରିବାକୁ ଚେଷ୍ଟାକର ।

ଉଠିବା ପଡ଼ିବା – ଅଧିକ ପ୍ରସାରିତ ହେବା, ବଢ଼ିବା କମିବା– to be in circulation/ rise and fall of price

.. ତା'ଙ୍କର ଖ୍ୟାତି ଉଠୁଛି ପଡୁଛି ।

ବଜାର ଦର ଉଠୁଛି ପଡୁଛି ।

ଉଠିଲା କଉ ମୁହଁରେ ବାଡ଼ି – ଆରମ୍ଭରୁ ଭଣ୍ଡୁର କରିବା, ସୁବିଧା ଦେଖି ଫାଇଦା ନେବା– to obstruct from the beginning

.. ଗୋଛି ପାଣି ସେମାନଙ୍କୁ ଭଲ ପୋଷେଇଲା, ନଇଲେ ଉଠିଲା କଉ ମୁହଁରେ ବାଡ଼ି ଦେଇ ପାରିଥାନ୍ତେ ।

ଉଡ଼ନ ଛୁ ମାରିବା – ଖସି ପଳାଇଯିବା– to escape

.. କାମ ହାସଲ ପରେ କୋଉ ବାଟେ ସେ ଉଡ଼ନ ଛୁ ମାରିବ କେହି କହି ପାରିବେନି ।

ଉଡ଼ାଖବର – ଭିତ୍ତିହୀନ ସମ୍ବାଦ, ବାଜେ ଖବର– baseless news/ vague words

.. ଉଡ଼ା ଖବରରେ ସତ୍ୟତା କମ୍‌ଥାଏ ।

ଉଡ଼ାଚିଠି – ବେନାମି ଚିଠି– anonymous letter

.. ଭୟ ଦେଖାଇବା ପାଇଁ କିଏ ଏଇ ଉଡ଼ାଚିଠି ପଠେଇଛି ।

ଉଡ଼ିଗଲା ଚଢ଼େଇର ପର ଗଣିବା – ଗୁପ୍ତ ରହସ୍ୟ ଭେଦ କରିବା– capacity to know others' secrets

..ସେ ଉଡ଼ିଗଲା ଚଢ଼େଇର ପରଗଣିବା ଲୋକ । ତା'କାନରେ ଏ କଥା ପଡ଼ିଲେ ସେ କାହାରିକୁ ଛାଡ଼ିବନି ।

ଉଡ଼ା ଚଢ଼େଇ – ଅସ୍ଥାୟୀ– temporary/ transient

.. ଆରେ ଭାଇ, ସେ ତ ଉଡ଼ା ଚଢ଼େଇ । ଆଜି ଏଠି କାଲି ସେଠି ହେବା ହେଲା ତା'ର କାମ ।

ଉଡ଼ିଗଲା ଲିଆ ନୈବେଦ୍ୟ ସ୍ୱାହା – ଆଶା ଛାଡ଼ିଦେବା– to give up hope

.. ଉଡ଼ିଗଲା ଲିଆ ନୈବେଦ୍ୟ ସ୍ୱାହା, କାନ୍ଦୁଛ କାହିଁକି ? କେଇଟା ମୁହୂର୍ତ୍ତ ସେ ରହିବ !

ଉଡ଼େଇ ଦବା – ବଦ ଖର୍ଚ୍ଚ କରିବା, ଅଗ୍ରାହ୍ୟ କରିବା– wasteful spending

.. ସେ ଯାହା ରୋଜଗାର କରନ୍ତି ସବୁ ଉଡ଼େଇ ଦିଅନ୍ତି ।

ବାବୁଙ୍କ କଥାକୁ ସେ ହସରେ ଉଡ଼େଇ ଦେଲେ ।

ଉଣେଇଶି ବିଶ୍ – ସାମାନ୍ୟ ଫରକ– degrees of the differences

.. ଦୁଇ ଭାଇଙ୍କର ସବୁ ଜିନିଷରେ ଉଣେଇଶ ବିଶ୍ ।

ଉତ୍ତମ ମଧ୍ୟମ – ମାଡ଼ ଦେବା– a sound thrashing

.. ତା'କୁ ଉତ୍ତମ ମଧ୍ୟମ ଦେଇଦିଅ, ଛାଡ଼ି ପଳଉ ।

ଉତ୍ତୁରି ଯିବା – ଉଦ୍ଧାର ପାଇବା, ଅତିକ୍ରମ କରିବା– to be saved/ to cross

.. ବଡ଼ ବିପଦରୁ ସେ ଉତ୍ତୁରିଗଲେ ।

ଉଦରସାତ୍ କରିବା – ଆତ୍ମସାତ କରିବା, ଖାଇଯିବା– to pocket/ to swallow

.. ଯାହା ରୋଜଗାର କରୁଛି, ସବୁ ଉଦରସାତ କରୁଛି ।

ଉଦା ଖାଇବା – ଅନ୍ୟର ଖାଇ ବୁଲିବା– eating free meal/wilful movement

.. ଏ ଉଦା ଖାଇବା ପ୍ରକୃତି ଛାଡ଼ । ପରିଶ୍ରମ କରି ଖାଅ ।

ଉଧାର ସେରକ ତିନିପା – ଅଭାବ ମେଣ୍ଟାଇବା ପାଇଁ ବିକଳ ଭାବ – borrowing fails to meet the need/ to compromise with a bad luck

.. ଭାଗ୍ୟ ଖରାପ ହେଲେ ଉଧାର ସେରକ ତିନିପା ହୁଏ ।

ଉପରେ ପାଣି ସିଞ୍ଚି ଭିତରେ କାଟିବା – ଉପରେ ସଂପର୍କ ରଖି ଭିତରେ ଗୋଛି କାଟିବା– wolf in the sheep skin/outside goodness inside hostility

.. ସେ ହଉଛନ୍ତି ଉପରେ ପାଣି ସିଞ୍ଚି ଭିତରେ କାଟିବା ଲୋକ । ତା'ଙ୍କୁ ସଦାବେଳେ ସାବଧାନ ଥିବ ।

ଉପର ମୁହାଁ କାଙ୍କ – ଅବାଧ୍ୟ ସ୍ୱଭାବର– disobedient

.. ସେଇଟା ଉପର ମୁହାଁ କାଙ୍କ । ତା'କୁ ବୁଝେଇ ଲାଭ ନାହିଁ ।

ଉପରେ ପଡ଼ି ଝଡ଼େଇ ହବା – ପଚରା ନଗଲେ ମଧ୍ୟ କହିବା– unasked for advice

.. ତା' କଥା କାହିଁକି ଶୁଣୁଛ ? ଉପରେ ପଡ଼ି ଝଡ଼େଇହବା ହେଲା ତା'ର କାମ ।

ଉପକାରରେ ଆସିବା – କାର୍ଯ୍ୟରେ ଲାଗିବା– to be useful

.. ତୁମେ ପଠାଇଥିବା ଟଙ୍କା ବହୁ ଉପକାରରେ ଆସିଲା ।

ଉପର ଉପର – ପର ପର– one after another

.. ଉପର ଉପର କରି ଇଟା ସଜାଇ ରଖ ।

ଉପରବାଲା – ଭଗବାନ– God

.. ଉପରବାଲା ସବୁ ଜାଣିଛି, ସେ ସବୁ ଦେଖୁଛି ।

ଉପରେ ଚଢ଼ିବା – ବେଖାତିର କରିବା– disrespect/disregard

.. ତା'କୁ ହାତ କାମୁଡ଼ା ଶିଖାଅନି, ନଇଲେ ସେ ଉପରେ ଚଢ଼ିବ ।

ଉପର ତାଲା – ଉଚ୍ଚଶ୍ରେଣୀ – high class/ high society

.. ସମାଜରେ ଉପର ତାଲାର ଲୋକ ତଳ ଶ୍ରେଣୀକୁ ଘୃଣା କରିଥାନ୍ତି ।

ଉପରେ ପଡ଼ିବା – ଅନଧିକାର ଚର୍ଚ୍ଚା– meddlesome

.. ସେ ଉପରେ ପଡ଼ି କଥାବାର୍ତ୍ତା କରୁଛନ୍ତି ।

ଉପରକୁ ଉଠିବା – ଉନ୍ନତି କରିବା– to improve

.. ଜୀବନକାଳ ମଧ୍ୟରେ ସେ ବହୁତ ଉପରକୁ ଉଠିଲେ ।

ଉପର ହାତରେ ଦେବା – ଦାନ ଦେବା– to donate/ give away

.. ଉପର ହାତରେ ଦେଲେ ତା'ର କିଛି ମହତ୍ତ୍ୱ ରହିଥାଏ ।

ଉପରୋଧ ନ ରଖିବା – ଭରସା ନ କରିବା–not to depend upon

.. ତା'କୁ ଉପରୋଧ ରଖନି । ସିଏ ଟଙ୍କା ଦବ, ତମ ବା'ଘର ହେବ !

ଉପୁରି ଖାଇବା – କଳା ଟଙ୍କା, ଲାଞ୍ଚ– black money/ extra benefit

.. ଚାକିରୀ ସିନା କରିଛନ୍ତି ହେଲେ ଉପୁରି ଖାଇବା ତା'ଙ୍କର ଅଭ୍ୟାସ ।

ଉପର ମୁହାଁ – ଉଦ୍ଧତ– arrogant

.. ତା'କଥା କହନି, ସେ ଭାରି ଉପର ମୁହାଁ ।

ଉପର ଠାଉରିଆ – ଉପର ପରି ଭିତର ପରିଷ୍କାର ନୁହେଁ – casual

.. ସେ ସଦାବେଳେ ସେମିତି ଉପର ଠାଉରିଆ ଭାବେ କଥାବାର୍ତ୍ତା କରନ୍ତି ।

ଉପେକ୍ଷା କରିବା – ଅବଜ୍ଞା କରିବା– to disobey/ to neglect/ to overlook

.. ଗୁରୁଙ୍କ ଆଦେଶ ଉପେକ୍ଷା କରିବା ଉଚିତ ନୁହେଁ ।

ଉବୁଟୁବ ହେବା – କଣ୍ଠାଗତ ହେବା, ହଇରାଣରେ ପଡ଼ିବା – to be oppressed/ sunk/ in deep waters

.. ଋଣଯନ୍ତାରେ ସେ ଉବୁଟୁବୁ ହଉଚନ୍ତି ।

ଉଭା ଯେତିକି ପୋତା ସେତିକି – ଧନ ଧାନ୍ୟରେ ପରିପୂର୍ଣ୍ଣ– plentifully rich

.. ତା'ଙ୍କ ରୋଜଗାର କଥା କାହିଁକି ପଚାରୁଛ ? ତା'ଙ୍କର ଉଭା ଯେତିକି ପୋତା ସେତିକି ।

ଉମର କଟିବା – ସାରା ଜୀବନ ବିତିଯିବା– to spend whole life

.. ଜେଲ ଭିତରେ ତା'ଙ୍କର ଉମର କଟିଗଲା ।

ଉମର କଇଦୀ – ଆଜୀବନ ବନ୍ଦୀ– life prisoner

.. ହଟିଆ ଜେଲରେ ସେ ଉମର କଇଦୀ ହୋଇ ରହୁଛନ୍ତି ।

ଉଶ୍ୱାସ କରିବା – ଦୁଃଖ ଲାଘବ କରିବା – to relieve or mitigate sufferings

.. ବାପ ମା'ଙ୍କର ବୋଝ ଉଶ୍ୱାସ କରିବା ହେଉଛି ପିଲାମାନଙ୍କର କାମ ।

ଉଷୁନା ଧାନ ଗଜା ହେବ – ଅସମ୍ଭବକୁ ସମ୍ଭବ କରିବା– to make the impossible possible

.. ସତରେ କ'ଣ ଉଷୁନା ଧାନ ଗଜାହେବ, ତା'ହଜିଲା ପୁଅ ଘରକୁ ଫେରିବ ।

## ଋ

ଋକାର ଅଶୁଦ୍ଧି ହେବା – ବିଧି ଭଣ୍ଡୁର ହେବା, ଓଲଟପାଲଟ ହୋଇଯିବା– to turn top-syturvy

.. ଦେଖି ଚାହିଁ କାର୍ଯ୍ୟକର, ନଚେତ୍ ଋକାର ଅଶୁଦ୍ଧି ହୋଇଯିବ ।

ଋଖା ଉପରେ ଚଢ଼ିବା – ଗର୍ବରେ ଉନ୍ମତ୍ତ ହେବା– to swell with vanity

.. ବାପର ବହୁତ ସଂପତ୍ତି ଅଛି । ପୁଅକୁ ଋଖା ଉପରେ ଚଢ଼ିଲା ଭଳିଆ ଲାଗୁଛି । ଯେତେ ଉଡ଼ୁଛି ଉଡ଼ୁ ।

ଋଣ କରି ଘିଅ ପିଇବା – ଅନ୍ୟର ଦାନରେ ଅୟସ କରିବା– to make merry with someone else's money

.. ମାଲ ମିଳିଛି । ଋଣ କରି ଘିଅ ପିଇଯା । ବେଳ ଆସିବ ଅନୁତାପ କରିବୁ ।

ଋଣ ଘଡ଼ାରେ ଦାନ – ଅଯଥାର୍ଥ ଦାନ– improper donation

.. ପଇସା ଅଛି ତ ମହତ କାମ କର, ନହେଲେ ଋଣ ଘଡ଼ାରେ ଦାନ କରି ଲାଭ କ'ଣ ?

ଋଣୀର ମୋକ୍ଷ ଚିନ୍ତା – ଅଯୌକ୍ତିକ ଚିନ୍ତା– illogical thought

.. କାହାର କୋଉ ଚିନ୍ତା ହେଲେ ଋଣୀର ମୋକ୍ଷ ଚିନ୍ତା ।

ଋଷିମନ ଲୋଭା – ଅତ୍ୟନ୍ତ ସୁନ୍ଦର, ଆକର୍ଷଣୀୟ– attractive/ alluring

.. ତା'ଙ୍କ ଋଷିମନ ଲୋଭା ଚାହାଣୀରୁ କିଏ ବର୍ତ୍ତି ପାରିବ ।

ଋଷି ବାଳ ଛିଣ୍ଡାଇ ମରିବା – ମରମକୁ ବାଧିଲା ଭଳି କହିବା– heart-pinching words

.. ସେ ଏମିତି କଥା କହୁଛି ଯେମିତି ଋଷି ବାଳ ଛିଣ୍ଡେଇ ମରିବ ।

ଋଷି ମୁଣ୍ଡରେ ଜଟା – ସ୍ୱାଭାବିକ କଥା– very natural

.. ନିଶା ଛାଡ଼ିଗଲା ପରେ ଋଷି ମୁଣ୍ଡରେ ଜଟା ପରି ସିବୁ ଠିକ୍ ।

## ଏ

ଏଆଡ଼େ ସେଆଡ଼େ ହେବା – ଉଭୟ ପକ୍ଷ ସହିତ ଭଲ– to be on both sides

.. ସେ ସବୁ ଦଳରେ ଥାଆନ୍ତି । ତା'ଙ୍କର ଏଆଡ଼େ ସିଆଡ଼େ ହେବାଟା କ'ଣ ନୂଆକରି ଦେଖୁଛ ?

ଏଇବେଳା – ଏଇଥର– this time

.. ଏଇବେଳା ସୁଯୋଗ ହାତଛଡ଼ା କରନି ।

ଏଇମନ ବୃନ୍ଦାବନ – ମନରେ ମୂଳରେ ସବୁକିଛି– a clear heart is abode of god

.. ଠାକୁର ଆମ ଭିତରେ ଅଛନ୍ତି । ମନ୍ଦିର ଯିବା ଦରକାର ନାହିଁ । ଏଇମନ ହେଉଛି ବୃନ୍ଦାବନ ।

ଏକ ଆଖିଆକୁ ପରତେ ନଯିବା – କଣାକୁ ବିଶ୍ୱାସ ନ କରିବା – not to put trust in those who are incapable of judging properly

.. ଏକ ଆଖିଆକୁ ପରତେ ଯାଉଥା, ପଛରେ କହିବୁନି ।

ଏକମନ ଏକପ୍ରାଣ – ଏକ ସ୍ୱରରେ, କାୟୋମନ ବାକ୍ୟରେ– in one voice/with one aim

.. ଏକମନ ଏକ ପ୍ରାଣ ହୋଇ ସମସ୍ତେ ଜନ୍ମଭୂମିର ସେବାକର ।

ଏଇ ନଈର ସହସ୍ର କୋଶ – ଲମ୍ବାଇବା (କଥା,କାମ)– lengthening story

.. ଏକ ନଈ ତ ସହସ୍ର କୋଶ । ତା' କଥା ସରିଲାଣି ନା' ସରିବ ?

ଏକ ଆଖିଆ ହରିଣ – ଏକ ଦେଶଦର୍ଶୀ– one-sided

.. ସିଏ ହଉଛି ଏକ ଆଖିଆ ହରିଣ । ତା'କୁ ସାଙ୍ଗରେ ମିଶାଇବା ଠିକ୍ ନୁହେଁ ।

ଏକ ଦୃଷ୍ଟି – ଅପଲକ – undivided attention

..ଏକ ଦୃଷ୍ଟିରେ ସେ ମୂର୍ତ୍ତିଟିକୁ ଚାହିଁ ରହିଛି ।

ଏକ ନମ୍ବର – ଶ୍ରେଷ୍ଠ, ପ୍ରଧାନ– number one

.. ଲୋକାଟା ଏକ ନମ୍ବର ଶୟତାନ ।

ଏକ ମୁଖରେ ଦୁଇକଥା – ଅଲଗା ଅଲଗା କଥା କହିବା – to indulge in double talk/ duplicity

.. ଯିଏ ଏକ ମୁଖରେ ଦୁଇଟି କଥା କହୁଛି, ତା'କୁ ବିଶ୍ୱାସ କରିବ ?

ଏକରକମ – ମୋଟାମୋଟି– after all/ on the whole

.. ପଢ଼ାଶୁଣା ଏକରକମର ଚାଲିଛି ।

ଏକଚାଟିଆ କାରବାର – ମନମୁଖୀ କାର୍ଯ୍ୟ– monopoly

.. ଦଳ ଭିତରେ ଏକଚାଟିଆ କାରବାରକୁ ପ୍ରଶୟ ଦେବା ଉଚିତ ନୁହେଁ ।

ଏକତରଫା – ଗୋଟିଏ ପଟକୁ ସମର୍ଥନ– to support one side

.. ସରପଞ୍ଚଙ୍କ ଏକତରଫା ନିଷ୍ପତ୍ତି ଆଦୌ ଠିକ୍ ହେଲାନି ।

ଏକା ହାତରେ ତାଳି ନ ବାଜିବା– ବିବାଦ ଦୁଇ ପକ୍ଷରୁ ହୁଏ– one needs two hands to clap

.. ଏକା ହାତରେ ତାଳି ବାଜେନା । ଏ ଗଣ୍ଡଗୋଳ ପଛରେ ନିଶ୍ଚୟ କାହାର ହାତ ଅଛି ।

ଏକାନରୁ ସେକାନ ନହେବା – କଥା ଗୁପ୍ତ ରଖିବା– to keep the matter confidential

.. ହଁ, ଘଟଣାଟା ଯେମିତି ଏକାନରୁ ସେକାନ ନ ହୁଏ । ନଇଲେ ସମସ୍ତେ ମରିବା ।

ଏ କାନରେ ପୂରାଇ ସେ କାନରେ ବାହର କରିବା – କୌଣସି ଗୁରୁତ୍ୱ ନ ଦେବା – casual/ not to attach any importance

.. ତା'କୁ ଏ ବିଷୟରେ କିଛି କହି ଲାଭନାହିଁ । ସେ ଏ କାନରେ ପୁରେଇ ସେ କାନରେ ବାହାର କରିଦେବା ଲୋକ ।

ଏକା ମାଘକେ ଶୀତ ନ ଯିବା – ପୁଣିଥରେ ଘଟିବାର ସମ୍ଭାବନା– possibility of repetition

.. ହଉରେ ପୁଅ ଯାଆ, ଏଥରକ ସିନା ଠକିଦେଲୁ । ଏକାମାଘକେ ଶୀତ ଯାଉନି । ପୁଣି ଦେଖାହେବ ।

ଏକା ତୁଣ୍ଡରେ ଉଆ ଉଷୁନା – ଦୁଇପ୍ରକାର ମତ ଦେବା– to have views for and against

.. ତା'ଙ୍କୁ ଜାଣିନା ? ସେ ଏକା ତୁଣ୍ଡରେ ଉଆ ଉଷୁନା କରିବା ଲୋକ ।

ଏକା ଟେକାରେ ଦୁଇଟି – ଗୋଟିଏ କାର୍ଯ୍ୟରେ ଦୁଇଟି ଲକ୍ଷ୍ୟ ସାଧନ– to kill two birds with one stone

.. ତା'ଙ୍କର ଉଦ୍ଦେଶ୍ୟ ହେଲା ଏକା ଟେକାରେ ଦୁଇଟି ଶିକାର କରିବା ।

ଏକା ତୁଣ୍ଡରେ ଛେଳି କୁକୁର – ଭଲ ମନ୍ଦ ଉଭୟଙ୍କୁ ସମର୍ଥନ– support both side

.. ଏକା ତୁଣ୍ଡରେ ଛେଳି କୁକୁର କରିବା ହଉଛି ତା'ଙ୍କ ପ୍ରକୃତି । ତା'ଙ୍କଠାରୁ କ'ଣ ସାହାଯ୍ୟ ଆଶା କରୁଛ ?

ଏକା ଲାଉର ମଂଜି – ଏକାଭଳି– birds of same feather

.. ଆରେ ଭାଇ, ନେଇଯାଅ । ନିଶ୍ଚୟ କାମ ଦେବ । ଏକା ଲାଉର ମଂଛିଟି ।

ଏକା ଭାଡ଼ିର ପାରା – ଗୋଟିଏ ସ୍ୱଭାବର– birds of same feather/ similar nature

..ସମସ୍ତେ ଏକାଭାଡ଼ିର ପାରା । କାହାର ଦୋଷ ବାଛିବ ?

ଏକା ମାଧିଆ ବାଇଶିପଳ – ଖୁବ୍ ଦକ୍ଷ– capable one/ one is enough

.. ଏ କାମ ପାଇଁ ଏତେ ଲୋକଙ୍କୁ ଡାକିବା ଦରକାର ନାହିଁ । ସନିଆ ଅଛି । ସେ ତ ଏକା ମାଧିଆ ବାଇଶିପଳ ।

ଏକା ଚାହାଳୀର ପାଠ – ଗୋଟିଏ ପ୍ରକାର ନୀତି– same policy/lessons from one school

.. ଏକା ଚାହାଳୀର ପାଠ ସେ ପଢ଼ିଛି, ପାରିବନି ? ତା'କୁ ସବୁ ଜଣା ।

ଏକା ଅବଧାନ ଚାଟ – ଜଣେ ଗୁରୁଙ୍କ ଶିଷ୍ୟ– pupils of some teacher

.. ଦି'ଜଣଯାକ ଏକା ଅବଧାନଙ୍କ ଚାଟ । ଦିହିଙ୍କ ଭିତରେ କିଛି ଫରକ ଦେଖୁଛ ?

ଏକାଦଶ ବୃହସ୍ପତି – ସୌଭାଗ୍ୟ– good luck/ good fortune

.. ବାପର ପ୍ରମୋଶନକୁ ପୁଅର ଚାକିରୀ । ତା'ଙ୍କର ତ ଏଇନେ ଏକାଦଶ ବୃହସ୍ପତି ଚାଲିଛି ।

ଏକୁ ଆରକେ ବଳିଆର – ଉଭୟ ବା ସମସ୍ତେ ବଳୀୟାନ– equally powerful

.. କୌରବ ପକ୍ଷରେ ଯାହାକୁ ଦେଖିବ, ଏକୁ ଆରକେ ବଳିଆର ।

ଏକୁଟିଆ ବାଆଁରା – ଏକଲା କାମ କରିବା, ସ୍ୱାର୍ଥପର– selfish / to be away from others

.. ସେ କାହା ସାଙ୍ଗରେ ମିଶିବନି । ଏକୁଟିଆ ବାଆଁରିଆ ହେଇ ରହିବା ତା'ର ପ୍ରକୃତି ।

ଏକୋଇର ବଳା ବିଶିକେଶନ – ଗେହ୍ଲାପୁଅ, ଏକମାତ୍ର– apple of all eyes/ loved by all

.. ଏକୋଇର ବଳା ବିଶିକେଶନ, ସେ କେବେ ତା'କୁ ଚାକିରୀ କରିବାକୁ ଛାଡ଼ିବେ !

ଏ ଘର ମାଉସୀ ସେ ଘର ପିଉସୀ – ବିପରୀତ କଥା କହିବା – to be engaged in double talk

.. ତୁ ତା'କୁ ଭଲ କହୁଛୁ ? ସେ ଏ ଘର ମାଉସୀ ସେ ଘର ପିଉସୀ ।

ଏଡୁଟିରୁ ଏଡୁଟିଏ କରିବା – ଲାଳନପାଳନ କରି ବଡ଼ କରିବା– bring up one

.. ବାପା ମା' ପିଲାମାନଙ୍କୁ ଏଡୁଟିରୁ ଏଡୁଟିଏ କଲେ ।

ଏଣୁ ମାଇଲେ ଗୋହତ୍ୟା ତେଣୁ ମାଇଲେ ବ୍ରହ୍ମହତ୍ୟା – କିଛି ସ୍ଥିର କରି ନ ପାରିବା, ଦୁଇ ନାବରେ ଗୋଡ଼ ଦେବା– between Scylla and Charibdis/ between two types of danger

.. କାହା କଥା ନ ଶୁଣି ସେ ନିଜେ ଏ କାମରେ ହାତ ଦେଇଛି । ଏଣୁ ମାଇଲେ ଗୋ ହତ୍ୟା ତେଣୁ ମାଇଲେ ବ୍ରହ୍ମ ହତ୍ୟା । କ'ଣ କରିବ କରୁ ।

ଏଣ୍ଡୁଅ ଉପରେ ଓଉବୋଝ – ଦୁର୍ବଳଲୋକ ଉପରେ ଗୁରୁ ଦାୟିତ୍ୱ– heavy responsibility on a weak fellow

.. ଚାକର ହେଲେ ବି ସେ ମଣିଷ । ଏଣ୍ଡୁଅ ଉପରେ ଓଉ ବୋଝ ଲଦୁଛ । ସିଏ କୋଉ ପାରିବ ।

ଏଣ୍ଡୁଅ ଦଉଡ଼ ସିଝୁବୁଦାକୁ – ସୀମିତ ଜ୍ଞାନ ବା ଶକ୍ତିର ଅଧିକାରୀ– man of limited power/ knowledge

.. କାହିଁକି ଡରବର ହେବ ? ତା'କୁ ଯିବାକୁ ଦିଅ । ଏଣ୍ଡୁଅ ଦଉଡ଼ି ଦଉଡ଼ି ସିଝୁବୁଦା ମୂଳକୁ, ଆଉ କୋଉଠିକି ଯିବ ?

ଏତେ ସପନକୁ ରାତି କାହିଁ – ଆଶା ପୂରାପୂରି ଫଳବତୀ ନ ହେବା– too many desires too little time

.. ସେ ବହୁତ ଆଶା କରିଥିଲେ, ଘର କୋଠାବାଡ଼ି । ହେଲେ ଏତେ ସପନକୁ ରାତି କାହିଁ । ଆଶା ଆଶାରେ ରହିଗଲା ।

ଏନ୍ତୁଡ଼ି ଛୁଆକୁ ଭରସା – ଅନିଶ୍ଚିତକୁ ଭରସା କରିବା– to depend on uncertainity

.. ଏନ୍ତୁଡ଼ି ଛୁଆକୁ ଭରସା କରି ଘର କରୁଥା । ଫଳ ପାଇବୁ ।

ଏପାରି ସେପାରି – ପାରିଲାପଣିଆ– capableness

.. ସେ ପୁରୁଣା କଥା । ଏପାରି ସେପାରି କଲା ତା'କୁ ଭଲଭାବେ ଜଣା ।

ଏପାରି ଗଛ ସେପାରିରେ – କାର୍ଯ୍ୟଘେନା ପ୍ରୀତି– selfish pleasure

.. ଏ ପାରି ଗଛ ସେପାରିରେ ଲଗାଇବା ପ୍ରକୃତି ଛାଡ଼ ।

ଏମିତି ସେମିତି – ଗୁରୁତ୍ୱହୀନ– common/ordinary

.. ସେ କିନ୍ତୁ ଏମିତି ସେମିତି ଲୋକ ନୁହେଁ ।

ଏରୁଣ୍ଡି ବନ୍ଧ ଡେଇଁବା – ଝିଅ ବାହା ହୋଇଯିବା– getting married (girl)

.. ଏରୁଣ୍ଡି ବନ୍ଧ ଡେଇଁବା ତା'ଭାଗ୍ୟରେ ନାହିଁ । କାଣୀକୁ କିଏ ନବ ?

## ଓ

ଓ କରିବା – ଜବାବ ଦେବା–to respond

.. 'ଓ କରିବି ଆଲୋ ଦାସୀ ଡାକିଲେ କିଶୋରୀ'

ଓଜନ – ମୂଲ୍ୟ– value/depth

.. ତମ ପୁରୁଷପଣିଆର ଓଜନ କେତେ ଏଇଠୁ ଜଣାପଡ଼ିବ ।

ଓଜନଦାର – ଦାମିକା, ଗୁରୁତ୍ୱପୂର୍ଣ୍ଣ– responsible/ valuable

.. ସେ ଜଣେ ଓଜନଦାର ଲୋକ ।

ଓଜନ ବୁଝି ଚାଲିବା – ମର୍ଯ୍ୟାଦା ଓ ଗୁରୁତ୍ୱ ବୁଝି ଚାଲିବା– work according to dignity

.. ସଦାବେଳେ ନିଜର ଓଜନ ବୁଝି ଚାଲ ।

ଓଜନ କରିବା – ତଉଲିବା– evaluate/ to weigh

.. ଅନ୍ୟର ମମତାକୁ ଓଜନ କରିବାକୁ ତମେ ସାହସ କଲ କେମିତି ?

ଓଟ ମୁହଁକୁ ଜିରା – ଆବଶ୍ୟକତାକୁ ଚାହିଁ ଅଘଟ ହେବା– a drop in the ocean

.. ଗାଁକୁ ସରକାର ଯେତିକି ରିଲିଫ ଜିନିଷ ପଠେଇଛନ୍ତି, ସେ ତ ଓଟ ମୁହଁକୁ ଜିରା ।

ଓଡ଼ କରାଇବା – ହରଡ଼ ଘଣାରେ ପକେଇବା– to put into trouble

.. ସେ ତା'କୁ ଏମିତି ଓଡ଼ କରେଇଲାଣି, ଆଉ ତା' ସାଙ୍ଗରେ କେବେ ଲାଗିବନି ।

ଓଡ଼ିଶା ଚିନ୍ତା ଓଡ଼ଚଷାକୁ – ସାଧାରଣ ଲୋକର ବଡ଼ଚିନ୍ତା– high thinking of a common man

.. ଖାଇ ଯାଇଥିବା ନଦୀବନ୍ଧ ତିଆରି କରିବେ ସରକାର । ତମର କାହିଁକି ଭାଳେଣି ପଡ଼ିଛି । ଓଡ଼ିଶା ଚିନ୍ତା ଓଡ଼ଚଷାକୁ !

ଓଧ ସାଙ୍ଗରେ ଭୂଆଁ ବିଲେଇ ବାଇ – କର୍ମ ପନ୍ଥା ହୁଡ଼ିଲେ ବିପଦ– one foolish man following another

.. କାହିଁକି ବ୍ୟସ୍ତ ହଉଚ ? ଓଧ ସାଙ୍ଗରେ ଭୂଆଁ ବିଲେଇ ବାଇ ହୋଇଛି । ହତାଶ ହୋଇଗଲେ ବଳେ ଫେରିବ ।

ଓର ଉଣ୍ଡିବା – ସୁଯୋଗ ଖୋଜିବା– to look for a chance

.. ରାମ ଦାମକୁ ପାନେ ମଜା ଚଖାଇବା ପାଇଁ ଓର ଉଣ୍ଡି ବୁଲୁଛି ।

ଓଳିଆରୁ ଗଜା – ଜନ୍ମରୁ ବୁଦ୍ଧିଆ ବା ଚାଲାକ– born smart/ extremely clever

.. ଓଳିଆରୁ ଗଜା ସେ, ତା'କୁ ଟକ୍କର ଦେବା ସହଜ !

ଓଷଧ ଧରିବା – ଔଷଧ କାର୍ଯ୍ୟ କରିବା, ଫଳପ୍ରଦ ହେବା– to be effective/ to hit correctly

.. ଏତେଦିନ ପରେ ତା'କୁ ଓଷଧ ଧରିଛି, ଆଉ ଅସୁବିଧା ନାହିଁ ।

ଓଷଧ କାଟୁକରିବା – ଫଳପ୍ରଦ ହେବା – to be effective

.. ଗୁଣିଆର ଓଷଧ ଠିକ୍ କାଟୁ କରିଛି ।

ଓଷଧ ବିକଳରେ ତାଟିଆ କାମୁଡ଼ିବା – ଅନ୍ୟ ଉପରେ ରାଗ ସୁଝାଇବା– to act irresponsibly/to do something which is not required

.. ଯାହା କହିବା କଥା ସିଧା କୁହ । ଏମତି ଓଷଦ ବିକଳରେ ତା'ଟିଆ କାହିଁକି କାମୁଡୁଛ ?

ଓଲଟ ପାଲଟ – ବିଶୃଙ୍ଖଳ – confused

ଘର ବଦଳାଇବା ସମୟରେ ସବୁ ଜିନିଷ ଓଲଟ ପାଲଟ ହୋଇଯାଇଛି ।

ଓଲୁଅ ସାକ୍ଷୀ ବଣସାରୁ – ଉଭୟ ଦୋଷୀ– one guilty man supporting another

.. ତା'ଠୁ କ'ଣ ନ୍ୟାୟ ଆଶା କରୁଛ ? ସେ ତ ଓଲୁଅ ସାକ୍ଷୀ ବଣସାରୁ ।

ଓଲେଇ ଗାଈ – ଲଗାମହୀନ – out of hands/ beyond control

.. ରାଧୀ ନାନୀର ଲଗା ଅଛି ନା' ପଘା ଅଛି । ସେ ତ ଓଲେଇ ଗାଈ ।

## କ

କଅଁଳ କହି ରାଧା – ସୁବିଧାବାଦୀ ନାରୀ– opportunist woman/ cunning lady

.. ସେ କଅଁଳକହି ରାଧା, ତା'କୁ ବିଶ୍ୱାସ କରୁଛ ?

କଟା କପଡ଼ା – କଟ୍‌ପିସ, ଛିଟ କପଡ଼ା– cut-piece

.. କଟା କପଡ଼ାରେ ଏ ସାର୍ଟ ତିଆରି ହୋଇଛି ।

କଟା ଘା'ରେ ଚୂନ ଦେବା – ଆହତକୁ ଆହୁରି ଆଘାତ ଦେବା– to add insult to injury

.. ତା' କଟା ଘା'ରେ ଚୂନ ଦେଲେ ସେ ବଂଚିବଟି ?

କଟିଯିବା – ଦୂରହେବା– to be mentally free

.. ତାର ସବୁ ଡରଭୟ କଟିଗଲା ।

କଡ଼ାଗଣ୍ଡା ହିସାବ – ଖୁବ୍ ସୂକ୍ଷ୍ମ ହିସାବ– to calculate every pie

.. ଏ ସାମାନ୍ୟ କାମର କ'ଣ କଡ଼ାଗଣ୍ଡା ହିସାବ ଦରକାର ?

କଡ଼ାକର ଜୀବନ – ଅଳ୍ପ ଶକ୍ତିର ମଣିଷ– man of less power

.. ତା'ର ତ କଡ଼ାକର ଜୀବନ, ତା' ସାଙ୍ଗରେ କ'ଣ ଲାଗିବ ?

କଣ୍ଟାଚାମଚ ଧରାଇବା – ସାହେବୀ ଚାଲି ଚଳନ ଅଭ୍ୟାସ କରାଇବା – to practice English style

.. ସେ କ'ଣ ଆମ ଭଳିଆ ହେଇଛି ଯେ କଣ୍ଟା ଚାମଚ ଧରି ପାରିବନି ।

କଣ୍ଟାରେ କଣ୍ଟାକୁ କାଢ଼ିବା – ଶତ୍ରୁଦ୍ୱାରା ଶତ୍ରୁକୁ ଜବତ କରିବା– to catch a thief by a thief

.. କଣ୍ଟାରେ କଣ୍ଟାକୁ କାଢ଼ିବା ହେଉଛି ତାଙ୍କର ପୁରୁଣା ଅଭ୍ୟାସ ।

କଣ୍ଟାହେବା – ବାଧା ହେବା– obstruction/ barrier

.. ସେ ମୋ ପଥର କଣ୍ଟା ହୋଇ ଛିଡ଼ା ହୋଇଛନ୍ତି ।

କଣ୍ଟା ହୋଇଯିବା – ଦୁର୍ବଳ ହୋଇଯିବା, କଙ୍କାଳ ସାର ହେବା– emaciated

.. ନ ଖାଇ ନ ପିଇ ତାଙ୍କ ଦେହ ଶୁଖି ଶୁଖି କଣ୍ଟା ହୋଇଗଲାଣି ।

କଣ୍ଟା ଉପରେ ଚାଲିବା – ବିପଦ ବରଣ କରିବା– to invite trouble/ to face danger/throny path

.. ଜୀବନଟା ତାଙ୍କର କଣ୍ଟା ଉପରେ ଚାଲି ଚାଲି କଟିଗଲା ।

କର୍ମଗୁଣେ କରମଙ୍ଗା – ଭାଗ୍ୟଖରାପ– bad luck/misfortune

.. କର୍ମଗୁଣେ କରମଙ୍ଗା ଫଳିଛି । କହିବ କାହାକୁ ?

କତରା ଲାଗିବା – ରୋଗିଣା ହୋଇଯିବା– to be sick

.. ବୁଢ଼ୀ ମା'ଟା କତରା ଲାଗିଲାଣି, ଖସିଯିବ ।

କଥା ଛିଣ୍ଡାଇବା – ନିଷ୍ପତ୍ତି କରିବା– to make a decision

.. ଯାହାହେଉ ସରପଞ୍ଚ କଥାଟା ଛିଣ୍ଡାଇଦେଲେ ।

କଥା ମାଜିଲେ ମୋଟ – ଛୋଟ କଥାକୁ ଅଯଥା ବଢ଼ାଇବା– to make a mountain

out of a mole hill

କଥା ମାଢ଼ିଲେ ମୋଟ, କାହିଁକି ତା'କୁ ଧରି ବସିଛ ?

କଥା ଆଦାୟ କରିବା – ପ୍ରତିଶ୍ରୁତି ଆଦାୟ କରିବା– to extract information

.. ସେ ଯେଉଁ ଲୋକ, କଥା ଆଦାୟ ନ କରି କେବେ ଛାଡ଼ିବେନି ।

କଥା ଉଠିବା – ପ୍ରଚାରିତ ହେବା– to give publicity

.. ଚୋରି କେମିତି ହେଲା ସେ ନେଇ କଥା ଉଠିଛି ଆମ କଲୋନୀରେ ।

କଥା କଟାକଟି – ଯୁକ୍ତିତର୍କ–argument

.. ସନିଆ ସାଙ୍ଗରେ କଥା କଟାକଟି କରି ଜିତିବା ବଡ଼ କଷ୍ଟ ।

କଥା କାଢ଼ିବା – ଆଦାୟ କରିବା, ବାହାର କରିବା– to find fault

.. ତା'ଙ୍କ ପେଟରୁ କଥା କାଢ଼ିବା ଭାରି କଷ୍ଟ ।

କଥା ଚଳେଇବା – କଥା ରଟିବା, ଖାପ ଖୁଆଇବା– adjustment/ to circulate

.. କଥା ଚଳେଇବାରେ ନାନୀ ଆମର ଭାରି ଓସ୍ତାଦ୍ ।

କଥା ଦେବା – ପ୍ରତିଶ୍ରୁତି ଦେବା– to promise/ to assent

.. କଥା ଦେଇଛି ମାନେ ନିଶ୍ଚୟ ରଖିବି ।

କଥା ବଢ଼ାଇବା – ବାଗବିତଣ୍ଡା କରିବା– to exaggerate / to quarrel

.. ଆଉ କଥା ବଢ଼େଇ ଲାଭ କ'ଣ ? କିଛି ଗୋଟାଏ ସମାଧାନ କରିଦିଅ ।

କଥା ବାହାର କରିବା – ମନ କଥା ଜାଣିବା– to study one's mind/to extract information

.. ତା'ପାଖରୁ କଥା ବାହାର କରିବାଟା ଏତେ ସହଜ ନୁହେଁ ।

କଥା ରଖିବା – ଅନୁରୋଧ ରଖିବା, ପ୍ରତିଶ୍ରୁତି ପାଳନ କରିବା– to keep promise

.. ଆମ କଥା ରଖି ସେ ସଂଧ୍ୟାରେ ଭୋଜିକୁ ଆସିଲେ ।

କଥା ପକାଇବା – ପ୍ରସ୍ତାବ ଦେବା– to give a proposal

.. ତା'ଙ୍କ ଝିଅ ପାଇଁ ରାମବାବୁ କଥା ପକାଇଛନ୍ତି ।

କଥା ଫୁଟିବା – ପଦାରେ ପଡ଼ିବା– to leak out secrecy

.. କଥା ଫୁଟି ବାହାରିଲାଣି । ଏବେ ସମସ୍ତେ ଜାଣିବେ ।

କଥା ଶୁଣିବା – ମାନିବା, ତିରସ୍କାର ସହିବା– to obey/ to listen to instruction

.. ସାନପୁଅଟା ଆଦୌ କଥା ଶୁଣୁନି ।

.. ବଡ଼ ପୁଅଟା ପାଇଁ ମତେ ଏତେ କଥା ଶୁଣିବାକୁ ପଡୁଛି ।

କଥା ଶୁଣେଇବା – ଗାଳି ମନ୍ଦ ଦେବା– to blame/ to reproach

.. ମୁଁ କ'ଣ କଲି ଯେ ମତେ ଏତେ କଥା ଶୁଣଉଛ !

କଥା କଥାରେ – କଥା ଛଳରେ, କଥା ପ୍ରସଙ୍ଗରେ– in course of conversation/

by the way

.. କଥା କଥାରେ ମୁଁ ତା'ର ମନର କଥା ବୁଝି ନେଇଛି ।

କଥା କାର୍ଯ୍ୟ ମିଳିବା – କଥା ସହିତ କାର୍ଯ୍ୟର ମେଳ– words tallying with works

.. ସେ କି ପ୍ରକାର ଭଦ୍ର ଲୋକ ? ତାଙ୍କର କଥା କାର୍ଯ୍ୟ ତ ମିଳୁନି ।

କଥା ଉଡ଼େଇ କହିବା – ବାଗାଡ଼ମ୍ବର– verbosity/ to talk much

.. କଥା ଉଡ଼େଇ କହିବାରେ ସେ ଭାରି ଧୁରନ୍ଧର ।

କଥାର ଖିଲାପ – କଥା ଦେଇ କଥା ନ ରଖିବା– breach of contract

.. ଥରେ ଯିଏ କଥାର ଖିଲାପ କରିଛି, ତାକୁ ଆଉ କହିବ ?

କଥାର ଜାହାଜ – ବାକ୍ୟବାଗୀଶ– man of eloquence/ voracious

.. ସେ ତ କଥାର ଜାହାଜ, ତାକୁ କଥାରେ ପାରିବ ?

କଥାର ଧାର – କଥାର ତୀକ୍ଷ୍ଣତା – sharpness of speech

.. ତାର କଥାର ଯୋଉ ଧାର, ସେଥିରେ କିଏ କ୍ଷତ ବିକ୍ଷତ ନ ହେବ !

କଥାର ଧାର ନ ଧରିବା – ଗୁରୁତ୍ୱ ନ ଦେବା– not responding to

.. ସେ କାହା କଥାର ଧାର ଧାରେନା

କଥାର ଫୁଲଝରି – ବାଚାଳ, ବାକ୍‌ପଟୁ– talkative/ verbosity

.. ଏତେ ଅଳ୍ପ ବୟସରୁ ପିଲାଟା ଏକବାରେ କଥାର ଫୁଲଝରି ।

କଥା ଭଳିଆ କଥା – ଅତି ମୂଲ୍ୟବାନ କଥା– valuable speech

.. ଏତେବେଳକେ ତମେ ପଦୁଟିଏ କଥା ଭଳିଆ କଥା କହିଲ ।

କଥାର ମଣିଷ – ସତ୍ୟନିଷ୍ଠ ମଣିଷ– truthful/ true to words

.. ରାମବାବୁ କଥାର ମଣିଷ । ସେ କେବେ ତମକୁ ଠକିବେନି ।

କଞ୍ଚା ନିଦ – ଘୁମର ପ୍ରଥମ ଅବସ୍ଥା– light sleep/ early sleep

.. ସେ କଞ୍ଚା ନିଦରେ ଶୋଇଛି ।

କଞ୍ଚାପାଣି – ଥଣ୍ଡା, ସନ୍ନିପାତ– collapsing condition

.. ତା ଦେହ କଞ୍ଚାପାଣି ହୋଇଯାଇଛି

କଞ୍ଚାପଇସା – ନଗଦ ଟଙ୍କା– hard cash

.. ଏଇନେ ତାଙ୍କର ଘରକୁ କଞ୍ଚା ପଇସା ଆସୁଛି

କଞ୍ଚା ବୟସ – ତରୁଣ ବୟସ, ଅଳ୍ପ ବୟସ– young age

.. ଏ କଞ୍ଚା ବୟସରେ ସବୁକିଛି ଖାଇ ହଜମ କରିପାରିବ ।

କଞ୍ଚା ବୁଦ୍ଧି – ପରିଣତ ନୁହେଁ– childish / immatured

.. କଞ୍ଚାବୁଦ୍ଧି ହୋଇଥିବାରୁ ସେ ଅଯଥା ଖର୍ଚ୍ଚ କରି ପକାଇଲା ।

କଞ୍ଚାମିଛ – ଡାହାମିଛ– blatant lie

.. ସେ କୋର୍ଟରେ ଯାହା କହିଲା ସବୁ କଞ୍ଚାମିଛ ।

କଞ୍ଚାହାଟ – ଶାକସବ୍‌ଜିର ହାଟ– country market/ green market

.. ସକାଳ ଓଳି ଏକ ନମ୍ବର ମାର୍କେଟରେ କଞ୍ଚାହାଟ ବସେ ।

କଞ୍ଚା ହାତ – ଅପରିପକ୍ୱ ରଚନା– immatured writing

.. ଏ ଉପନ୍ୟାସଟି କଞ୍ଚାହାତର ଲେଖା ।

କପାଳ ଫାଟିବା – ଦୁର୍ଭାଗ୍ୟଜନକ, ଭାଗ୍ୟହୀନ– unlucky/ unfortunate/bad luck

.. କପାଳ ନ ଫାଟିଥିଲେ ତାଙ୍କ ଘର କାହିଁକି ପୋଡ଼ିଥାନ୍ତା ?

କପାଳ ଫେରିବା – ଭାଗ୍ୟ ଉଦୟହେବା– return of good fortune

.. ଦଶ ବର୍ଷ ପରେ ତାଙ୍କ କପାଳ ଫେରିଛି । ଦୋକାନ ଲାଭ କରୁଛି ।

କପାଳରେ କରମାରିବା – ହତାଶ ହେବା– to feel disappointed

.. ଠିକ୍ ସମୟରେ କାମ ନ କରି ଏବେ କପାଳରେ କରମାରିଲେ କ'ଣ ହେବ ?

କପାଳରେ ନିଆଁ ଲାଗିବା – ଚରମଦୁର୍ଗତି, ଦୁର୍ଭାଗ୍ୟଜନକ ବିଷୟ– great diversity

.. କପାଳରେ ନିଆଁ ଲାଗିବାରୁ ତାର ସ୍ତ୍ରୀ ମଲା, ପୁଅଗଲା । ଶେଷରେ ସଂପତ୍ତି ମଧ୍ୟ ଗଲା ।

କପାଳର ଫେର – ଅଦୃଷ୍ଟର ବିଡ଼ମ୍ବନା, ଦୁର୍ଭାଗ୍ୟ– bad luck/ misfortune

.. ଏମିତି କପାଳର ଫେର ହେଲା ଯେ ବର୍ଷେ ନ ପୁରୁଣୁ ଝିଅଟା ବିଧବା ହେଲା ।

କପାଳ ଫିଟିବା – ସୌଭାଗ୍ୟ– good luck

.. ଏତେ ଦିନ ପରେ ତାଙ୍କ କପାଳ ଫିଟିଛି, ଆୟ ବଢ଼ିଛି ।

କପାଳ ଜୋର – ଭାଗ୍ୟଟାଣ– favourable fortune

ତାର କପାଳ ଜୋର ଅଛି, ନଇଲେ ନିଆଁ ଭିତରୁ ବଂଚିଥାନ୍ତା !

କପୋତ-କପୋତୀ – ପ୍ରେମିକ- ପ୍ରେମିକା– pair of loving doves

.. ଦେଖୁନ, କେମିତି କପୋତ କପୋତୀ ଭଳି ତୁନି ହୋଇ ବସିଛନ୍ତି ।

କପୋଳ କଳ୍ପନା – ମନଗଢ଼ା କଥା– fictitious

.. ଏ କପୋଳ କଳ୍ପନାକୁ କେହି ଗୁରୁତ୍ୱ ଦେବେ ନାହିଁ ।

କବ୍‌ଜା କରିବା – ବଶୀଭୂତ କରିବା, ଅଧିକାର କରିବା– to bring into subjection/ to win over

.. ଦୁଷ୍ଟ ମଣିଷଟାକୁ କବ୍‌ଜା କରିବା ସହଜ ନୁହେଁ ।

କମର କଷିବା – ପ୍ରତିଦ୍ୱନ୍ଦିତା ପାଇଁ ପ୍ରସ୍ତୁତ ହେବା– to prepare for competition/to guard up one's lions

.. କମର ନ କଷିଲେ ଭଲରେ ବଂଚିପାରିବନି ।

କମର ଭାଂଗିବା – ବଳ ଭାଙ୍ଗିବା – to lose one's strength

.. ବ୍ୟବସାୟର କ୍ଷତି ଏବର୍ଷ ତାଙ୍କ କମର ଭାଂଗି ଦେଇଛି ।

କମର ଜୋର – ଶାରୀରିକ ଏବଂ ମାନସିକ ଶକ୍ତି– physical and mental strength

.. ଏ କାମରେ ତାଙ୍କର କମର ଜୋର ଦରକାର ।

କମଜୋର – ଦୁର୍ବଳ, କ୍ଷୀଣ– emaciated/ weak

.. ରୋଗରେ ପଡ଼ିପଡ଼ି ସେ କମ୍‌ଜୋର ହେଇ ଯାଇଛନ୍ତି ।

କମ୍‌ସେ କମ୍ – ଅନ୍ତତଃ ପକ୍ଷେ– at least

.. କମ୍ ସେ କମ୍ ଆପଣଙ୍କୁ ଦୁଇ ଘଣ୍ଟା ଅପେକ୍ଷା କରିବାକୁ ହେବ ।

କମ୍ବଳ ସମ୍ବଳ – ଅତି ଦରିଦ୍ର ଅବସ୍ଥା– wretched condition/ miserable

.. ଯାହାର କମ୍ବଳ ସମ୍ବଳ, ତା' ପାଖରୁ ତମେ କ'ଣଟା ପାଇବ ?

କମ୍ବଳରୁ ଲୋମ ବାଛିବା – ବୃଥା ପରିଶ୍ରମ– useless work/ baseless labour

.. ତାଙ୍କର ଏ ମାସଟା କମ୍ବଳରୁ ଲୋମ ବାଛିବାରେ ବିତିଗଲା ।

କଳ ମୋଡ଼ିବା – ଗୋପନ ନିର୍ଦ୍ଦେଶ, ପ୍ରରୋଚନା ଦେବା– to induce/ to excite

.. ଘର ଲୋକଙ୍କ କଥା ସେ କାହିଁକି ଶୁଣିବ ? ଅନ୍ୟ ଲୋକ ତ କଳ ମୋଡ଼ିବାକୁ ଅଛନ୍ତି ।

କଳା ଦେଖାଇବା – ଅସଲ ସ୍ୱରୂପ ବା ଗୁଣ– true colour/ reality

.. ଠିକଣା ସମୟରେ ଫାଙ୍କିଦେଇ ସେ ତା' କଳା ଦେଖାଇଦେଲା ।

କଳା କାଢ଼ିନେବା – ଶସ ବା ସାର କାଢ଼ିନେବା– to take away the essence

.. କେଉଁ ମୁହୂର୍ତ୍ତରେ ସେ କଳା କାଢ଼ିନେବ କେହି କହି ପାରିବେନି ।

କଳାମେଘ – ଘୋର ବିପଦ– very difficult situation

.. ତା' ଆଶାର ଆକାଶରେ ସହସା କଳାମେଘ ଘୋଟି ଆସିଲା ।

କଳାକନା ବୁଲାଇବା – ଚୋରି କରିନେବା– to wipe away

.. ଚୋରମାନେ ତାଙ୍କ ଘରୁ କଳାକନା ବୁଲେଇ ଦେଇଛନ୍ତି ।

କଳାପାଣି – ଦୀପାନ୍ତର ଦଣ୍ଡ– exile

.. ରାମ ସିଂହଙ୍କୁ କଳାପାଣି ଦିଆଯାଇଥିଲା ।

କଳାପାହାଡ଼ – ଅବାଧ ମନୋଭାବ, ଧ୍ୱଂସକାରୀ– disobedient/ destructive

.. ତୁମକୁ ଏ କଳାପାହାଡ଼ ମନୋଭାବ ଛାଡ଼ିବାକୁ ପଡ଼ିବ

.. ସେ ଥିଲା ଓଡ଼ିଆ ଜାତିର ସଂସ୍କୃତିର କଳାପାହାଡ଼

କଳାମୁଖ – ନିର୍ଲ୍ଲଜ, କଳଙ୍କିତ– shameless/ discredited

.. ତୋ କଳାମୁଖ କେମିତି କାହାକୁ ଦେଖାଉଛୁ ?

କଳାମାଣିକ – ଆଦରର ଧନ (ବାତ୍ସଲ୍ୟ)– darling

.. ସେ କଳାମାଣିକଟିକୁ ଛାଡ଼ି କୁଆଡ଼େ ଯାଉନାହାନ୍ତି ।

କଳାକୁ ଧଳା କରିବା – ଅନ୍ୟାୟକୁ ନ୍ୟାୟ ଜ୍ଞାନ କରିବା– to justify bad as good

.. ପଇସା ଥିବାରୁ ସେ କଳାକୁ ଧଳା କରିପାରୁଛନ୍ତି ।

କଳିଯୁଗ କୃଷ୍ଣ – ଲମ୍ପଟ, ନଷ୍ଟ ଚରିତ୍ର– loose character/ vagabond/ unscrupulous

.. ପୁଅ ଆଜିକାଲି କଳିଯୁଗ କୃଷ୍ଣ ସାଜିଛି । ହାବୁଡ଼ରେ ପଡ଼ିଲେ ଥଣ୍ଡା ହୋଇଯିବ ।

କବିତୁଣ୍ଡ ମେଣ୍ଢାମୁଣ୍ଡ – ରୋକଠୋକ ପ୍ରକାଶ– directly said

.. କବି ତୁଣ୍ଡ ମେଣ୍ଢାମୁଣ୍ଡ, ଯାହା କହୁଛି ଶୁଣିଯାଅ ।

କଲମ ଚଳେଇବା – ଲେଖା ଲେଖିର କ୍ଷମତା– power of pen

.. ଆଜିକାଲି ଆଉ ତାଙ୍କର ସେ କଲମ ଚଳେଇବା ପଟୁନି ।

କଲମ ଧରିବା – ଲେଖି ବସିବା, ପ୍ରତିବାଦ ଲେଖା– to start writing/ to protest

.. ଏଥର ସେ ନିଶ୍ଚୟ କଲମ ଧରିବେ, ଆମେ ନ୍ୟାୟ ପାଇବା ।

କଲମ ପେଶା – କିରାଣୀଗିରି, ଲେଖାଲେଖି– clerical work/ writing

.. ସାରା ଜୀବନଟା କଲମ ପେଶା କରିବାରେ ହିଁ କଟିଗଲା ।

କଲମବାଜ – ଲେଖା ଲେଖିରେ ଦକ୍ଷ– skill in writing

.. ଖୁସବ୍ନ୍ତ ସିଂ ଜଣେ ନାମକରା କଲମବାଜ୍ ।

କଲମର ଜୋର – ରଚନା ଶକ୍ତି– power of writing

.. କଲମର ଜୋର ନଥିଲେ ଏଭଳି ଉପନ୍ୟାସ ଲେଖି ହୋଇନଥାନ୍ତା !

କାଇଦା-କାନୁନ – ବିଧିବ୍ୟବସ୍ଥା, ନିୟମ-କାନୁନ– rules and regulations

.. ଅଡ଼ିଟ୍‌ର କାଇଦା-କାନୁନ ବିଷୟରେ ମୁଁ କିଛି ଜାଣିନି ।

କଲିଜାର ଜୋର – ଅତ୍ୟଧିକ ସାହାସ– strong willpower

କଲିଜାର ଜୋର ନ ଥିଲେ ସେ ଏତେ ରାତିରେ ଯାଇପାରିଥାନ୍ତା !

କାଉ ବସାରେ ଢମଣା – ହଠାତ ବିପଦର ଆଶଙ୍କା– to sense danger suddenly

.. କାଉ ବସାରେ ଢମଣା ପଶିଛି, ଗୋଳମାଳ ହବ ହିଁ ହବ ।

କାକ-କୋକିଳ ଭେଦ – ଭଲ ମନ୍ଦ ପାର୍ଥକ୍ୟ– difference between good and bad

.. ସଂସାରରେ ବଂଚିବାକୁ ହେଲେ କାକ–କୋକିଳ ଭେଦ ଜାଣିବାକୁ ହେବ

କାକ ଜ୍ୟୋସ୍ନା – ଅସ୍ପଷ୍ଟ ଜ୍ୟୋସ୍ନା– hazy lighting

.. କାକ ଜ୍ୟୋସ୍ନା ଚୋରକୁ ଭଲ ପୋଷାଏ

କାକ ନିଦ୍ରା – ଅତି ସକାଗ, ହାଲକା ନିଦ– light sleep/ day sleep

.. ତାର ତ କାକ ନିଦ । ସେ ଉଠି ପଡ଼ିବ ।

କାକୁଡ଼ି ଚୋରକୁ ମୁଣ୍ଡକାଟ – ସାମାନ୍ୟ ଦୋଷକୁ ବଡ଼ଦଣ୍ଡ– severe punishment for a minor mistake

.. କାକୁଡ଼ି ଚୋରକୁ ମୁଣ୍ଡକାଟ ଦେଇ ଭାବିଛ ବାହାଦୁରି ନବ !

କାଗଜ କଲମରେ – ଲିଖିତ ଭାବେ– in written form

.. ସେ ଯାହା କହନ୍ତି କାଗଜ କଲମରେ ତାର କିଛି ପ୍ରମାଣ ନଥାଏ ।

କାଗଜବାଘ – ଜୋର ନଥାଇ ଜୋର ଦେଖେଇ ହବା – paper tiger/empty vessel

.. ସନ୍ତ୍ରାସବାଦକୁ କାଗଜବାଘ କହି ଉଡ଼ାଇ ଦେବା ଠିକ୍ ନୁହେଁ ।

କାଠପିତୁଳା – ବ୍ୟକ୍ତିତ୍ୱହୀନ ମଣିଷ– lacking in personality/ wooden doll

.. କାହିଁକି ତାକୁ ଅନୁରୋଧ କରିବ, ସେ ଗୋଟାଏ କାଠ ପିତୁଳା ।

କାଠ ହୋଇଯିବା – ସ୍ତମ୍ଭୀଭୂତ ହୋଇଯିବା– to get dumb-founded

.. ବାପାଙ୍କ ମୃତ୍ୟୁ ଖବର ଶୁଣି ସ କାଠ ହୋଇଗଲେ ।

କାଠିକର ପାଠ – ଅତି କଷ୍ଟକର– very difficult

.. ଆଜିକାଲି ଅଳ୍ପ ଦରମାରେ ଚଳିବା କାଠିକର ପାଠ ।

କାଣ୍ଡକାରଖାନା – ଅଦଭୁତ ଆଚରଣ, ଲଙ୍କା କାଣ୍ଡ, ଗୋଳମାଳିଆ ବ୍ୟବହାର – disturbing behaviour

.. ମଦପିଇ ସେ ଏମିତି କାଣ୍ଡକାରଖାନା କରିବ ବୋଲି କେହି ଭାବି ନଥିଲେ ।

କାଣ୍ଡଜ୍ଞାନ – ଉଚିତ ଅନୁଚିତ ବୋଧ ନଥିବା – lacking commonsense

.. ପିଲାଟାର ସାଧାରଣ କାଣ୍ଡଜ୍ଞାନ ବି ନାହିଁ ।

କାଣ୍ଡକରିବା – ହଇଚଇ– to create a noise/ to make nuissance of oneself

.. ଦଶ ମିନିଟ ଭିତରେ ସେ ଏମିତି କାଣ୍ଡ କରିବ ବୋଲି କିଏ ଜାଣିଥିଲା ?

କାନ ଆଉଁସିବା – ବାଆଁରେଇବା– to avoid/ to pretend

.. କାନ ଆଉଁସିବା ଛାଡ଼ି ସିଧାସଳଖ ପ୍ରଶ୍ନର ଉତ୍ତର ଦିଅ

କାନ କାଟିଦବା – ହରେଇଦବା– to defeat

.. ସେ ଯେମିତି ଖେଳୁଛି ବଡ଼ମାନଙ୍କର କାନ କାଟିଦବ

କାନ ଠିଆ କରିବା – ସଦା ସତର୍କ ରହିବା– to be alert

.. କେତେବେଳେ କ'ଣ ଘଟିବ ସେଥିପାଇଁ ସେ କାନ ଠିଆ କରି ରଖିଛି

କାନରେ ତାଲା ପକାଇବା – କିଛି ନ ଶୁଣିବା– to turn a deaf ear/not to respond

.. ସେ ତ କାନରେ ତାଲା ପକେଇଛି । କାହିଁକି ତାକୁ ଶୁଣାଉଛ ?

କାନ ଦେବା – ଶୁଣିବା, କର୍ଣ୍ଣପାତ କରିବା– overhear/ respond

.. ଘର କଥାରେ କାନ ଦେବା ଠିକ୍ ନୁହଁ ।

କାନ ପାତିବା – ଶୁଣିବାକୁ ଉଦ୍‌ଗ୍ରୀବ ହେବା– eager to listen

.. ଶବ୍ଦ ଆଡ଼କୁ ସେ କାନ ପାତିଛନ୍ତି

କାନ ଫାଟିବା – ବିକଟ ଶବ୍ଦ– deafening sound/ explosive noise

.. କେଁ କଟର ଶବ୍ଦରେ କାନ ଫାଟିପଡୁଛି ।

କାନ ଫୁଟାଇବା – କାନର କସରତ୍– excercise of ear

.. ତା' ପାଖକୁ ଯାଅ । ସେ ଭଲ କାନ ଫୁଟେଇ ଜାଣେ

କାନରେ ଆଙ୍ଗୁଳି ଦେବା – ନ ଶୁଣିବା– to plug the ears/ not to listen

.. ଅଶ୍ରାବ୍ୟ କଥା ପାଇଁ ସେ କାନରେ ଆଙ୍ଗୁଳି ଦେଲେ ।

କାନରେ କହିବା – ଧିରେ ଧିରେ କହିବା (ମନ୍ଦ), ଚୁପି ଚୁପି– to whisper in the ear

.. କାନରେ କହିବା ପ୍ରକୃତି ଛାଡ଼

କାନକୁ କାନ – ବ୍ୟାପିଯିବା– to spread out

.. ସାଙ୍ଗେ ସାଙ୍ଗେ ତାଙ୍କ ମୃତ୍ୟୁ ଖବରଟା କାନକୁ କାନ ହେଇଗଲା

କାନ ଧରିବା – ତିରସ୍କାର କରିବା– to scold/ to hesitate

.. ସେ କାନ ଧରାଧରି କଥା ଛାଡ଼

କାନରେ ବାଜିବା – ଶୁଣିବା, ଶୃତିକଟୁ ହେବା– to hear/ to come within knowledge

.. କଥାଟା ମୋ କାନରେ ବାଜିବାରୁ କହିଲି

କାନରେ ମଧୁବର୍ଷିବା – ଶ୍ରୁତିମଧୁର– sweet sounds

.. ଝିଅଟିର ଗୀତ ଯେମିତି କାନରେ ମଧୁ ବର୍ଷଣ କଲା ।

କାନକୁ ଲାଗିବା – ପସନ୍ଦ ହେବା– to one's liking/ to one's choice

.. ତାଙ୍କ ଗୀତଟା କାନକୁ ଲାଗିଲା

କାନ୍ଧରେ ପଡ଼ିଲେ ବଳେଇ ଶିଖିବା – ଦାୟିତ୍ୱ ପଡ଼ିଲେ ସମ୍ଭାଳିବା– to shoulder responsibility when called for

.. ତା'କୁ କହିବା ଦରକାର ନାହିଁ । କାନ୍ଧରେ ପଡ଼ିଲେ ଆପେ ବଳେଇ ଶିଖିବ ।

କାନ୍ଧରେ ଜୁଆଳି ପଡ଼ିବା – କୌଣସି ଦାୟିତ୍ୱ ଲଦି ଦିଆଯିବା – to put in harass

.. କାନ୍ଧରେ ଜୁଆଳି ପଡ଼ିଲେ ତା ସଂସାର ସେ ଠିକ୍ ଚଳେଇବ ।

କାନ୍ଧ ଲଗେଇବା – ଦାୟିତ୍ୱ ସମ୍ଭାଳିବା – to share responsibility

.. ସମସ୍ତେ କାନ୍ଧ ଲଗାଇବାରୁ କାମଟା ସରିଗଲା ।

କାନ୍ଧ ଉପରେ ଉଠିବା – ଅନ୍ୟ ଉପରେ ନିର୍ଭର କରି ନାଁ କମେଇବା– to use somebody else as a ladder

.. ତଳସ୍ତରର ଲୋକଙ୍କ କାନ୍ଧ ଉପରେ ସେମାନେ ଚିରଦିନ ଉଠିଥାନ୍ତି ।

କାନ୍ଧକୁ କାନ୍ଧ ମିଳାଇବା – ସହଯୋଗ କରିବା– to cooperate/ to join hands

.. କାନ୍ଧକୁ କାନ୍ଧ ନ ମିଳାଇଲେ ଭାରତର ଉନ୍ନତି ଅସମ୍ଭବ ।

କାନ୍ଧରେ ଢାଳିବା – ଅନ୍ୟକୁ ଦାୟିତ୍ୱ ଦେବା– to shift responsibility/ to pass the buck

.. ନିଜ କାମର ଅଧା ସେ ଅନ୍ୟ କାନ୍ଧରେ ଢାଳିବାରେ ଓସ୍ତାଦ ।

କାବୁ କରିବା – ନିଜ ଆୟତ୍ତକୁ ଆଣିବା – to overwhelm

.. ପ୍ରବଳ ଶୀତ ମଧ୍ୟ ତାଙ୍କୁ କାବୁ କରିପାରିଲା ନାହିଁ ।

କାବୁହେବା – ଦୁର୍ବଳ ହେବା, ଆୟତ୍ତକୁ ଆସିବା– to be captured

.. ଦୁଇଘଣ୍ଟା ଲଢ଼େଇ ପରେ ପିଲାଟି କାବୁ ହେଲା ।

କାମିକା ଲୋକ – ବୁଦ୍ଧିମାନ, ପରିଶ୍ରମୀ– hard working / able

.. ଭଡ଼ ଭଡ଼ିଆ ଲୋକ ଦରକାର ନାହିଁ, କାମିକା ଲୋକ ଦରକାର ।

କାମ ପାଗଳ – କାର୍ଯ୍ୟରେ ଯାର ଆନନ୍ଦ– involved in work

.. ତା' ଭଳି କାମପାଗଳ ଲୋକ ଖୁବ୍ କମ୍ ଦେଖାଯାଆନ୍ତି ।

କାର୍ତ୍ତିକ ଝଡ଼ – ଅସମୟର ଝଡ଼– untimely storm

.. କାର୍ତ୍ତିକ ଝଡ଼ରେ ରବି ଫସଲ ପୂରାପୁରି ଯାଇଛି ।

କାର୍ଯ୍ୟ ଚଳେଇବା – କାର୍ଯ୍ୟ ନିର୍ବାହ କରିବା– discharging responsibility

.. ଯେ କୌଣସି ପ୍ରକାରେ ସେ କାର୍ଯ୍ୟ ଚଳଉଛନ୍ତି ।

କାର୍ଯ୍ୟରେ ଯୋଗଦେବା – ନୂଆ ଚାକିରୀରେ ଯୋଗଦେବା– to join in a new job

.. ରାମ ପହିଲାରେ କାର୍ଯ୍ୟରେ ଯୋଗ ଦେଇଛି

କାର୍ଯ୍ୟକାଳ ଶେଷ ହେବା – ଅବସର ନେବା– to be retired

.. ତାଙ୍କ ସରକାରୀ ଚାକିରୀର କାର୍ଯ୍ୟକାଳ ଶେଷ ହୋଇଛି

କାର୍ଯ୍ୟ ଦେଖିବା – କାମ ଖୋଜିବା– to search for jobs

.. ମୋ ପାଇଁ କିଛି କାର୍ଯ୍ୟ ଦେଖିଥିବ

କାର୍ଯ୍ୟ ନେବା – ଦାୟିତ୍ୱ ନେବା– to take up responsibility

.. ତିନୋଟି ଘରର ଛାତ ମରାମତି କାର୍ଯ୍ୟ ସେ ନେଇଛନ୍ତି

କାର୍ଯ୍ୟ ହାସଲ କରିବା – ଉଦ୍ଦେଶ୍ୟ ସଫଳ ହେବା– to succeed in a mission/ to complete one's work

.. ତିନି ବର୍ଷ କାଳ ଲାଗି ଲାଗି ସେ କାର୍ଯ୍ୟ ହାସଲ କଲେ

କାର୍ଯ୍ୟରେ ଲାଗିବା – କାର୍ଯ୍ୟ ଉପଯୋଗୀ ହେବା– to be useful

.. ବେଳହୁଁ ଧନ ସଞ୍ଚୟ କର, କାର୍ଯ୍ୟରେ ଲାଗିବ ।

କାର୍ଯ୍ୟର କଥା – ଉଚିତ କଥା– right decision/ right choice

.. ତାକୁ ଏଠାରେ ଛାଡ଼ିଯିବାଟା କାର୍ଯ୍ୟର କଥା ହେଲାନି ।

କାର୍ଯ୍ୟର ମୁଣ୍ଡଗଣ୍ଡି ନାହିଁ – କାର୍ଯ୍ୟର ଆରମ୍ଭ ଶେଷ ନାହିଁ; ଶୃଙ୍ଖଳା ନାହିଁ– uncertain work

.. ସେ ଯାହା କରୁଛି, ତା କାର୍ଯ୍ୟର ମୁଣ୍ଡଗଣ୍ଡି ନାହିଁ ।

କାର୍ଯ୍ୟ ଭଳିଆ କାର୍ଯ୍ୟ – ଭଲ କାର୍ଯ୍ୟ– demonstratively good work

.. କାର୍ଯ୍ୟ ଭଳିଆ କାର୍ଯ୍ୟଟା ସେ କରି ଦେଖେଇ ଦେଲା ନା ।

କାଳଗ୍ରାସରେ ପଡ଼ିବା – ମୃତ୍ୟୁବରଣ କରିବା– to wiped out/ passing away

.. କାଳଗ୍ରାସରେ ତାଙ୍କର ପରିବାରଟା ଚାଲିଗଲା ।

କାଳ ବୈଶାଖୀ – ଚୈତ୍ର ମାସର ଝଡ଼, ଅସମୟର ଝଡ଼– untimely storm/ rain in the summer

.. କାଳ ବୈଶାଖୀ ତାଙ୍କ ସୁଖର ସଂସାରକୁ ଛାରଖାର କରିଦେଲା ।

କାଳ ରାତ୍ରି – ବିପଦ ସଂକୁଳ ରାତି – dreadful night

.. ସେ କାଳରାତ୍ରି କଥା ମନେ ପଡ଼ିଲେ ଦେହ ଶିହରି ଉଠେ ।

କାଳି ଗାଈର ଭିନେ ଗୋଠ – ଗୋଷ୍ଠୀରୁ ବାହାର ହୋଇ ଚଳିବା– singular/out of the fold

.. ସେ ସମସ୍ତଙ୍କ ସାଙ୍ଗରେ ଚଳି ପାରିବନି । କାଳି ଗାଈର ଭିନେ ଗୋଠ ।

କାଶୀ ପ୍ରାପ୍ତି – ମୃତ୍ୟୁ ଓ ସ୍ଵର୍ଗ ଲାଭ– to gain salvation

.. କାଶୀ ପ୍ରାପ୍ତି ବୃଦ୍ଧଙ୍କ ଜୀବନର ଶେଷ ଲକ୍ଷ ।

କାଲ ଆଗରେ ମୂଳା ଚୋବେଇବା – ମୂର୍ଖ ଆଗରେ ଜ୍ଞାନ ଚର୍ଚ୍ଚା– useless labour

.. କାଲ ଆଗରେ ମୂଳା ଚୋବେଇବା ଦରକାର ନାହିଁ । ନିଜ କାମ ନିଜେ କରିଯାଅ ।

କିଚକ ବଧ – ନୃଶଂସ ହତ୍ୟାକାଣ୍ଡ– cruel murder

.. ନାଟକେ ନୁହେଁ, ସତକୁ ସତ ସେଠାରେ କିଚକବଧ ହୋଇଗଲା ।

କିଷ୍କିନ୍ଧା କାଣ୍ଡ – ତୁମୁଳ ହଟଗୋଳ– uproar/ tumult

.. ଶିକ୍ଷକ ଚାଲିଗଲା ପରେ ପରେ ଛାତ୍ରମାନେ କିଷ୍କିନ୍ଧାକାଣ୍ଡ ସୃଷ୍ଟି କରିଦେଲେ ।

କୁକୁର ଲାଂଜ ସଳଖିବା – ଅସମ୍ଭବ କାର୍ଯ୍ୟ ସଂପାଦନ କରିବା– to make impossible possible

.. କୁକୁର ଲାଂଙ୍ଗ ସଳଖିବାଟା ଏତେ ସହଜ କାର୍ଯ୍ୟ ନୁହେଁ । ଚେଷ୍ଟାକର ।

କୁଟା ଖଣ୍ଡକ ଦିଖଣ୍ଡ ନ କରିବା – ଅଳସୁଆ– lazy/ slothful

.. ସେ କୁଟାକୁ ଦି'ଖଣ୍ଡ ନ କରିବା ଲୋକ ।

କୁଣିଆକୁ କାତୁଭାର – ଅନାବଶ୍ୟକ ଚିନ୍ତା– unnecessary thought

.. ସେମାନେ ତାଙ୍କର ଗୁହନ୍ତୁ । କୁଣିଆକୁ କାତୁଭାର କାହିଁକି ?

କୂପମଣ୍ଡୁକ – ସଂକୀର୍ଣ୍ଣମନା ଲୋକ– of limited knowledge

.. କେତେ ଦିନ କୂପମଣ୍ଡୁକ ହୋଇ ଏଇଠି ପଡ଼ି ରହିଥିବ ? ବାହାରକୁ ଚାଲି ଆସ । ଦୁନିଆକୁ ଦେଖ ।

କୁବେର ଭଣ୍ଡାର – ଅକଳନ୍ତି ଐଶ୍ୱର୍ଯ୍ୟ, ଯକ୍ଷଭଳି ଯାହା ପୂର୍ବରୁ ଗଚ୍ଛିତ– abundant wealth

.. ବସିଖାଇଲେ କୁବେର ଭଣ୍ଡାର ମଧ୍ୟ ସରିଯିବ ।

କୁମ୍ଭକର୍ଣ୍ଣର ନିଦ୍ରା – ଗଭୀର ନିଦ୍ରା– deep slumber

.. ତାର କୁମ୍ଭକର୍ଣ୍ଣର ନିଦ୍ରା ଭାଙ୍ଗିବା କ'ଣ ସହଜ ?

କୁମ୍ଭୀର କାନ୍ଦଣା – ଲୋକ ଦେଖାଣିଆ କାନ୍ଦ, କପଟ ଅଶ୍ରୁ– to make a show of/ fraudulent tears

.. ନିର୍ବାଚନ ସମୟରେ ନେତାମାନେ କୁମ୍ଭୀର କାନ୍ଦଣା କାନ୍ଦିଥାନ୍ତି ।

କୂର୍ମ ଅବତାର – ଅଳସୁଆ– lethergetic/ lazy

.. କୂର୍ମ ଅବତାର ଛାଡ଼ି ହସ୍ତପଦ ଚଳାଅ ।

କୁରୁକ୍ଷେତ୍ର କାଣ୍ଡ – ପ୍ରଚଣ୍ଡ ଯୁଦ୍ଧ, ତୁମୁଳ ଝଗଡ଼ା– violent struggle/ tumult

.. କଲେଜ ପରିସରରେ କୁରୁକ୍ଷେତ୍ର କାଣ୍ଡ ଘଟିଗଲା ।

କୁଳରେ କାଳି ବୋଳିବା – ବଂଶର ସମ୍ମାନ ନଷ୍ଟ କରିବା– to spoil one's reputation/ to stain family's reputation

.. ବଡ଼ ଝିଅ କୁଳରେ କାଳି ବୋଳି ଦେଲା ।

କୁଳରୁ ବାହାରିବା – କୁଳ ତ୍ୟାଗୀ ହେବା– cast off/ an out caste

.. ନିଜର ଭୁଲ ପାଇଁ ସେ କୁଳରୁ ବାହାରିଲେ ।

କୁଳରେ ବତୀ ଜଳାଇବା – ଅସ୍ତିତ୍ୱ ରଖିବା– to preserve family line

.. ତାଙ୍କ କୁଳରେ ବତୀ ଜଳାଇବାକୁ କେହି ରହିଲେ ନାହିଁ ।

କୂଳ କିନାରା – ପ୍ରତିକାର, ସମସ୍ୟାର ସମାଧାନ– remedy/ solution

.. ବିପଦ ଭିତରେ ସେ କୌଣସି କୂଳ କିନାରା ପାଉନଥିଲେ ।

କୁଳାଙ୍ଗାର – ଅଯୋଗ୍ୟ ସନ୍ତାନ– unworthy child/ unfit one

.. କୁଳାଙ୍ଗାରଟାଏ, ତା ଦ୍ୱାରା କିଛି ହେବ ନାହିଁ ।

କୁସୁମ-କୁସୁମ – ଅଳ୍ପଗରମ– luke warm

.. ସେ କୁସୁମ-କୁସୁମ ଜଳରେ ସ୍ନାନ କଲେ ।

କୁହୁଡ଼ି ପହଁରିବା – ବୃଥା ଭାବନା– useless hope/ vague ideas

.. ଚାକିରୀ ପାଇବ ବୋଲି ମନେ ମନେ କୁହୁଡ଼ି ପହଁରୁଛ କାହିଁକି ?

କେବଳରାମ – ବୋକା, ହାଉଡ଼ା– foolish

.. ମଣିଷ ଭାଗ୍ୟକୁ ଭଲ କେବଳରାମ ଲୋକ ମିଳିଲା, କିଛି କରୁନି ।

କେରାଣ୍ଡି ଗୁନ୍ଥି ବାଳିଆ ଧରିବା – ବୃହତ୍ତର ସ୍ୱାର୍ଥ ପାଇଁ ନଗଣ୍ୟ ଦାନ– small payment in the larger interest/ to have big gain at the small cost.

.. କେରାଣ୍ଡି ଗୁନ୍ଥି ବାଳିଆ ଧରିବାରେ ଲୋକଟା ପୁରାପୁରି ଧୂର୍ତ୍ତ ।

କେଶ ସ୍ପର୍ଶ କରି ନ ପାରିବା – କୌଣସି କ୍ଷତି କରି ନ ପାରିବା– to fail to do any harm

.. ଯେତେ ବଡ଼ ବଡ଼ କଥା କହୁ, ହେଲେ ତାଙ୍କ କେଶ ସ୍ପର୍ଶ କରିପାରିବନି ।

କୋପେବର ତପେବର – ଭୟ କିମ୍ବା ଭକ୍ତି ଦ୍ୱାରା କାମ ହାସଲ– get the thing done by hook or by crook

.. ମନ ନେଇ ପୂଜା କର, ତାଙ୍କର ତ କୋପେବର ନଇଲେ ତପେବର ।

କୋଳ ଅନ୍ଧାର ରାତି – କୃଷ୍ଣ ପକ୍ଷର ରାତି– dark night/ dense darkness

.. କୋଳ ଅନ୍ଧାର ରାତିରେ ନାବିକ ଦିଗ ହରାଇ ଥାଏ ।

କୋଳ ଆଲୁଅ କରିବା – ସନ୍ତାନ ପ୍ରାପ୍ତି– blessed with off spring

.. କୋଳ ଆଲୁଅ କରିବା ପାଇଁ ଭଗବାନ ତମକୁ ସେଇଟିକୁ ଦେଇଛନ୍ତି ।

କୋଳକାଙ୍ଗାଳ – କୋଳକୁ ଆଶ୍ରୟ କରୁଥିବା– dependent on others

.. ଏମିତି କୋଳକାଙ୍ଗାଳ ଛୁଆକୁ ନେଇ ତମେ କି କାମ କରିବ ?

କୋଳ ଦେବା – ଆଶ୍ରୟ ଦେବା– to give shelter

.. ପ୍ରକୃତି କୋଳ ଦେବାରୁ ସୀତା ବଂଚିଗଲେ ।

କୋଳ ପାଇବା – ଆଦର ଯତ୍ନ ପାଇବା– to get care and affection

.. ଶିଶୁ ଯେଉଁଠି ରହିଲେ ବି ମା'ର କୋଳ ପାଇବ ହିଁ ପାଇବ ।

କୋଳପୋଛା – ସର୍ବ କନିଷ୍ଠ– juniormost/last/youngest

.. ଏଇଟି ମା'ର କୋଳ ପୋଛା ଛୁଆ ।

କୋଳି ଖାଇ ମଂଜି ପୋତିବା – ଉତ୍ତରାଧିକାର ସାବ୍ୟସ୍ତ କରିବା– doubtful right of succession

.. ତୁ କ'ଣ କୋଳିଖାଇ ମଂଜି ପୋତିଛୁ, ସବୁଦିନ ଏଇଠି ରହିବୁ !

କୋଶିଳା କିଆରିକି ମେଘନାଦ ପାଚେରୀ – ସାମାନ୍ୟ କାମ ପାଇଁ ବିରାଟ ଆୟୋଜନ– much ado about nothing

.. କୋଶିଳା କିଆରୀକି ମେଘନାଦ ପାଚେରୀ ହବନି ? ତାର ଯେତେ ମାଲ ଅଛି, ଏମିତି ତ ଖର୍ଚ୍ଚ ହବ ।

## ଖ

ଖଇରି ଖପରା ବଇରି ବା – ନିଃସ୍ୱ ହୋଇଯିବା– to become a destitute

.. ତାଙ୍କର ଖଇରି ଖପରା ବଇରିବା ହେବା ଆଉ କେତେ ଦିନ ?

ଖଚକୁହା – ବଗୁଲିଆ, ମିଛୁଆ– backbiter/ lier

.. ଖଚକୁହା ପ୍ରକୃତି ଛାଡ଼ି ମଣିଷ ହୁଅ ।

ଖଟ୍‌ଖଟ୍ – ପୁରାପୁରି ଶୁଖିଲା– dry as dust

.. ଖରାରେ ରାସ୍ତା ଘାଟ ଖଟ୍ ଖଟ୍ ଡାକ ଛାଡୁଛି ।

ଖଟ୍‌କା ଲାଗିବା – ସନ୍ଦେହ ହେବା– to be suspicious

.. ତା' ସଫେଇ ଗୁଡ଼ାକ ମତେ କାହିଁକି ଖଟ୍‌କା ଲାଗୁଛି ।

ଖଟାଇବା – ବିନିଯୋଗ କରିବା, ପ୍ରୟୋଗ କରିବା– to invest

.. ଟଙ୍କା ଖଟାଇବା, ବୁଦ୍ଧି ଖଟାଇବା, ବଳ ଖଟାଇବା

ଖଟୁଲି ଖାଇବା – ଆତ୍ମସାତ କରିବା– complete misappropriation

.. ସେ ତ ଠାକୁର ଖାଇ ଖଟୁଲି ଖାଇବା ଲୋକ

ଖଡ଼ି କାଟିବା – ଶକ୍ତ ଜିନିଷ ଉପରେ ଚିହ୍ନ ଦେବା – draw line with a piece of chalk

.. କାନ୍ଥରେ ଏମିତି ଖଡ଼ି କାଟିବାଟା ଠିକ୍ ହେଲାନି ।

ଖଡ଼ିମାରିବା – ଚିହ୍ନ ଦେବା– to make a sign/ to mark

.. ଘର ତିଆରି ପାଇଁ ସେ ଭୂଇଁରେ ଖଡ଼ି ମାରିଲେ ।

ଖଡ଼ି ଛୁଇଁବା – ପାଠପଢ଼ା ଆରମ୍ଭ – beginning of education

.. ଶ୍ରୀପଞ୍ଚମୀରେ ପିଲାଟି ଖଡ଼ି ଛୁଇଁଲା ।

ଖଣ୍ଟ ସଙ୍ଗେ ଗୋଳ – ଦୁଷ୍ଟ ସହିତ ବିବାଦ– to quarrel with an evil man

.. ଖଣ୍ଟ ସଙ୍ଗେ ଗୋଳ କରି ତମେ ଭାବିଛ ଜିତିଯିବ ?

ଖଣ୍ଡପ୍ରଳୟ – ଧ୍ୱଂସ, ମହା ଗଣ୍ଡଗୋଳ– havoc/ tumult/ great destruction

.. ସତୁରି ମସିହାର ଖଣ୍ଡପ୍ରଳୟରେ ଦଶହଜାର ଲୋକ ମରିଥିଲେ ।

ଖଣ୍ଡରେ ଖାର ମିଶାଇବା – ଭଲ ସହିତ ମନ୍ଦ ଯୋଡ଼ିବା– to combine good with evil

.. ତାଙ୍କର ପ୍ରକୃତି ହେଲା ଖଣ୍ଡରେ ଖାର ମିଶାଇବା ।

ଖଣ୍ଡାଧାରରେ ଚାଲିବା – କଠୋର କର୍ତ୍ତବ୍ୟପରାୟଣତା– strict obedience of rules

.. ଖଣ୍ଡାଧାରରେ ଚାଲିବା ଲୋକକୁ କ'ଣ ଧମକାଇବ ?

ଖଣ୍ଡା ଦାଢ଼ରେ ବାଟ ଚାଲିବା – ସାବଧାନ ହୋଇ ଚଳିବା– to be extremely careful/ to move with strict caution

.. ଶତ୍ରୁଙ୍କ ପାଇଁ ସେ ଖଣ୍ଡା ଧାରରେ ବାଟ ଚାଲୁଛି ।

ଖଣ୍ଡିଆଭୂତ – ଘୂର୍ଣ୍ଣିବାତ– whirlwind

.. ଖଣ୍ଡିଆଭୂତକୁ ଡରିଲେ ଘର ସଂସାର କରିବ କେମିତି ?

ଖତଗଦାକୁ ଆଖି – ଇତର ଜିନିଷ ପ୍ରତି ଲୋଭ – not to be mean

ମଣିଷ ହେବାକୁ ହେଲେ ଖତଗଦାକୁ ଆଖି ପକାଅନି ।

ଖତଗଦାର ନିଆଁ – ସାମାନ୍ୟ ଘଟଣାରୁ ଉତ୍ପନ୍ନ ରାଗ ଶୀଘ୍ର ଥଣ୍ଡା ପଡ଼ିଥାଏ– anger from a small occasion does not last long

.. ଆରେ ଭାଇ ତାର ରାଗ ହେଉଛି ଖତଗଦାର ନିଆଁ । ସାଙ୍ଗେ ସାଙ୍ଗେ ଥଣ୍ଡା ହୋଇଯିବ ।

ଖତଗଦାର ପଦ୍ମ – ଅସ୍ୱାଭାବିକ ପରିବେଶରେ ଗୁଣର ବିକାଶ– to find something worthy in unexpected quarters/worthiness at an unexpected place

.. ତାଙ୍କ ପରିବାରରେ ସେ ଏକା ହେଉଛି ଖତଗଦାର ପଦ୍ମ ।

ଖତିଆନ କରିବା – ଜମା ଖର୍ଚ୍ଚର ହିସାବ ତିଆରି କରିବା– to make accounts of profit and loss

.. ଏ ବର୍ଷ ଜମିବାଡ଼ିର ଖତିଆନ କରା ହେଲାଣି ନା' ନାହିଁ ?

ଖପରାରେ ଖାଇବା – ଅତି ଦୟନୀୟ ଅବସ୍ଥା– wretched condition/ miserable condition

.. ବେଳହୁଁ ସାବଧାନ, ନହେଲେ ଖପରାରେ ଖାଇବ ।

ଖର୍ଚ୍ଚ ଖାତା – ବାତିଲ ତାଲିକା– cancelled list

.. ସେ ତମକୁ ଖର୍ଚ୍ଚ ଖାତାରେ ପକେଇ ଦେଇଛି, କାରଣ ତମେ କୌଣସି କାମରେ ଲାଗିବନି ।

ଖର୍ଚ୍ଚ ଖାତାରେ ଲେଖିବା – ହିସାବ ବହିର୍ଭୂତ– expenditure list

.. ସେ ଅଧ ଏକର ଜମିଟା ଖର୍ଚ୍ଚ ଖାତାରେ ଲେଖା ହେଇଛି, ଆଉ ଫେରି ପାଇବା ଅସମ୍ଭବ ।

ଖର୍ଚ୍ଚୀହାତ – ଅପବ୍ୟୟୀ– spendthrift

.. ତାଙ୍କର ତ ଖର୍ଚ୍ଚୀ ହାତ । ସେଥିରୁ ବଳିଲେ ତମେ ପାଇବ ।

ଖରା ଦେଖେଇବା – ଖରା ପଡ଼ିବା– sunny weather

.. ଚାରିଦିନ ଲଗାତାର ବର୍ଷା ପରେ ଏବେ ଖରା ଦେଖେଇଛି ।

ଖରାଦେବା – ଶୁଖାଇବା– to dry

.. ଆଚାର ଖରା ନ ଦେଲେ ଖରାପ ହୋଇଯିବ ।

ଖରାପ କରିବା – ନଷ୍ଟ କରିବା– to spoil

.. ମଥା ଖରାପ କରିବା, ପେଟ ଖରାପ ହେବା, ମୁହଁ ଖରାପ କରିବା, କପଡ଼ା ଖରାପ କରିବା ।

ଖସାଇବା – ଖର୍ଚ୍ଚ କରାଇବା, କାଢ଼ିବା– to draw out

.. ସେ କୃପଣ ପାଖରୁ ଟଙ୍କାଟିଏ ଖସାଇବା ସହଜ ନୁହେଁ ।

ଖସିବା – ଝରି ପଡ଼ିବା– to loose

.. ତାଙ୍କ ଯୌବନ ଖସିଗଲାଣି ।

ଖସିଯିବା – ଚାଲିଯିବା, ପଳାଇବା– to escape/missing

.. ଟଙ୍କା ଗଣିଲା ବେଳେ ଶହେ ଟଙ୍କିଆ ନୋଟ୍‌ଟା ଭୁଲ୍‌ରେ ଖସିଯାଇଛି ।

ଖଲିଆ ବଳଦ – ଠକ, ଅଳସୁଆ, କାମକୁ ଅଯୋଗ୍ୟ– lame/ cheat/ lazy

.. କେତେଦିନ ଏମିତି ଖଲିଆବଳଦ ହୋଇ ବୁଲିବ ? ପରିଶ୍ରମ କର ।

ଖଲିକୁହା – ପରିହାସକାରୀ– jester

.. ଏ ଖଲିକୁହାଗିରି ଛାଡ଼ି ଶିଷ୍ଟାଚାର ଶିଖ ।

ଖାଁ ଖାଁ କରିବା – ଶୂନଶାନ– lonely/ solitary

.. ସମସ୍ତେ ଚାଲିଗଲାରୁ ଘରଟା ଖାଁ ଖାଁ କରୁଛି ।

ଖାଇବା ପତ୍ରରେ ଧୂଳି ଦେବା – ନିରାଶ କରିବା– to deprive one of his right

.. ପୁଅ ହେଇ ବାପର ଖାଇବା ପତ୍ରରେ ସେ ଧୂଳି ଦେଲା ।

ଖାଇଲା ଘର ପୁଅ ରଙ୍କ – ଧନୀର ଆହୁରି ଧନ ଲୋଭ– abundance fosters want

.. ଖାଇଲା ଘର ପୁଅ ରଙ୍କ । ଯେତେ ଦେଲେ ବି ସେମାନଙ୍କ ପେଟ ପୁରିବନି ।

ଖାଡ଼ାଖାଡ଼ି କଥା – ସ୍ପଷ୍ଟ କଥା– outspokeness

.. ସେ ସଦାବେଳେ ଖାଡ଼ାଖାଡ଼ି କଥାବାର୍ତ୍ତା କରନ୍ତି ।

ଖାଣ୍ଟିଖୁଣ୍ଟି ହେବା – କୁଣ୍ଠିତ ସ୍ୱଭାବ– to live miserly

.. ଖାଣ୍ଟିଖୁଣ୍ଟି ହେଇ କେତେଦିନ ଚଳିବ ?

ଖାଣ୍ଟିସୁନା – ନିଷ୍କଳଙ୍କ– flawless

.. ପିଲାଟା ଖାଣ୍ଟିସୁନା । କୋଉ ଗୁଣରେ ବାରିବନି ।

ଖାତ ଖୋଳିବା – ବିପଦରେ ପକାଇବା– to put one into trouble

.. ସେ ତମ ପାଇଁ ଖାତ ଖୋଳିବା ଆରମ୍ଭ କରିଛନ୍ତି ।

ଖାତା ଖୋଲିବା – ହିସାବ ପତ୍ର ଆରମ୍ଭ କରିବା– to start a new account

.. ରାମନବମୀଠାରୁ ତାଙ୍କର ନୂଆ ଖାତା ଖୋଲା ହେଲା ।

ଖାପଖାଇବା – ଠିକ ହେବା, ଉପଯୋଗୀ ହେବା– befitting/ matching

.. ଏ ଫ୍ରକ୍ ତାକୁ ଖାପ ଖାଇଯାଉଛି । କଥାକୁ କାମ ଖାପଖାଉନି ।

ଖାପଛଡ଼ା – ଅଦ୍‌ଭୁତ, ସଂଗତି ବିହୀନ– illogical/ unreasonable

.. ସେ ଭାରି ଖାପଛଡ଼ା ସ୍ୱଭାବର ଲୋକ । କଥାବାର୍ତ୍ତା ଖାପଛଡ଼ା ଲାଗିଲା ।

ଖାରିଆ ଖଡ଼ାକୁ ନବାତ – ଠିକ୍ ଭାବେ ମିଶିବା– matching perfectly

.. ଖାରିଆ ଖଡ଼ାକୁ ନବାତ । ମେଣ୍ଢାବାଳ ଜଡ଼ାଦେଲ ଭଳି ମିଶିଯାଇଛନ୍ତି ।

ଖାଳେଇ ସାଙ୍ଗେ ମାଳେଇଯିବା – ସବୁ ଆଶା ମଉଳିଯିବା– desire not fulfilled

.. ଏତେ ବାଟ ଆଗାଅନି, ଖାଳେଇ ସାଙ୍ଗରେ ମାଳେଇଯିବ ।

ଖାଲ ଖୋଳିବା – ବିପଦରେ ପକାଇବା– to put one into danger

.. ଅନ୍ୟ ପାଇଁ ଖାଲ ଖୋଳିଲେ ନିଜେ ବି ଖାଲରେ ପଡ଼ିବ ।

ଖାଲଢ଼ିପ ନ ମାନିବା – ବେଖାତିର ମନୋଭାବ– careless attitude

.. ଏ ବୟସରେ ସେ ବା କେମିତି ଖାଲଢ଼ିପ ମାନିବ ?

ଖାଲି ହାତ – ଅର୍ଥଶୂନ୍ୟ ହେବା– empty hands

.. ଖାଲି ହାତରେ କାହିଁକି ବଜାରକୁ ଯିବ ?

ଖାଲି ଖାଲି – ଖାଲି ବା ଫାଙ୍କା, ସବୁ ସମୟ– lonely/ always

.. ସମସ୍ତେ ଗଲାପରେ ଘରଟା ଖାଲିଖାଲି ଲାଗିବ

.. ଖାଲି ଖାଲି ପିଲାଟା ବସି ରହୁଛି ?

ଖିଅ କାଢ଼ିବା – ଦୋଷ ବାହାର କରିବା– to find fault

.. ପ୍ରତି କଥାରେ ଖିଅ କାଢ଼ିବା ଢଙ୍ଗ ଛାଡ଼ ।

ଖିଆଲ କରିବା – ମନେରଖିବା– remind/ to keep in mind

.. ଏ କଥାଟା ନିଶ୍ଚୟ ଖିଆଲ କରିବ ।

ଖିଆଲି ସ୍ୱପ୍ନ – ଅବାସ୍ତବ ପରିକଳ୍ପନା– vague imagination

.. ଖିଆଲି ସ୍ୱପ୍ନରେ ମଣିଷର ପେଟ ପୁରେନା ।

ଖିଲ ମାରିବା – ଜବତ କରିବା, କାବୁ କରିବା– to capture/ to tighten

.. ଆଉ ପାଟି ଫିଟାଇବେନି । ସେ ତାଙ୍କୁ ଖିଲ ମାରିଦେଇଛନ୍ତି ।

ଖୁଣ୍ଟଗୁଣେ ଘୋଡ଼ା କୁଦେ – ମୁନିବ ବଳରୁ ଚାକରର ଟାଣ– to borrow strength from a stronger source

.. ଯେମିତି ମୁନିବ ସେମିତି ଚାକର, ସେଇଥି ପାଇଁ ତ ଖୁଣ୍ଟ ଗୁଣେ ଘୋଡ଼ାକୁଦୁଛି ।

ଖୁଣ୍ଟରେ ବାନ୍ଧିବା – ଆୟତ୍ତରେ ରଖିବା– to control/to discipline

.. ଖୁଣ୍ଟରେ ବାନ୍ଧି କେତେଦିନ ସେମାନଙ୍କୁ ଖାଇବାକୁ ଦେବ ?

ଖୁଦ ମଳୁଖରେ ଦିନ କାଟିବା – ଅତି କଷ୍ଟରେ ବଂଚିବା– painful living/ to live on minimum sustenance

.. ଆଜିକାଲି ଖୁଦ ମଳୁଖରେ ଦିନ କାଟିବା ଭାରିକଷ୍ଟ ।

ଖୁଦ କୁଣ୍ଡା – ଅତି ସାମାନ୍ୟ ଖାଦ୍ୟ– barest food/ minimum particles of food

.. ତାଙ୍କ ଘରେ ରହିଲେ ଖୁଦ କୁଣ୍ଡା ଛଡ଼ା ଆଉ କିଛି ମିଳିବନି ।

ଖୁନ୍ ଚଢ଼ିବା – ଅତିଶୟ ରାଗିଯିବା– to get angry/ to get enraged

.. ବଦମାସ୍‌ଟାକୁ ପୁଣି ଦେଖି ତାଙ୍କ ଖୁନ୍ ଚଢ଼ିଗଲା ।

ଖୁନ ଖରାବି – ହତ୍ୟାକାଣ୍ଡ– murder

.. ସେଠାରେ ଖୁନ୍ ଖରାବି ହବା କଥା ଶୁଣି ସେ ପଳେଇ ଆସିଲେ ।

ଖୋଜ ଉଣ୍ଡିବା – ସୁଯୋଗକୁ ଅପେକ୍ଷା କରିବା– to wait for a chance

.. ଚାକିରୀ ପାଇଁ ସେ ଖୋଜ ଉଣ୍ଡି ବସିଛି ।

ଖୋବାଖୋବି ହେବା – ପରସ୍ପର ଝଗଡ଼ା କରିବା– to quarrel with each other/ mutual irritation

.. ଏ ଖୋବା ଖୋବି ହେବା ପ୍ରକୃତି ଛାଡ଼ି ପରସ୍ପର ହାତ ମିଳାଇ କାମକର ।

ଖୋଳ ପର୍ବତ ମାର ମୂଷା – ସାମାନ୍ୟ କଥା ପାଇଁ ବୃଥା ପରିଶ୍ରମ– to put up hard labour for nothing

.. ଖୋଳ ପର୍ବତ ମାର ମୂଷା, କେତେ ଦିନ ଏମିତି ଚାଲିବ ?

ଖୋଳ କରିବା – ଆତ୍ମସାତ କରିବା– to misappropriate/ to eat away

.. ଅଫିସ୍‌ର ଟଙ୍କା ପଇସା ସେ ଖୋଳ କରିଦେଇଛନ୍ତି ।

ଖୋଜ ତାଡ଼ କରିବା – ଗୁପ୍ତ ବିଷୟ ଜାଣିବାର ପ୍ରଚେଷ୍ଟା – to enquire about

.. ପୋଲିସ ଏବେ ଖୋଜତାଡ଼ କରୁଛି । ପଦାକୁ ବାହାର ନାହିଁ ।

## ଗ

ଗଇ ଖୋଳିବା – ଗୁପ୍ତକଥା ପ୍ରଘଟ କରିବା– to let the cat out of the bag/ to speak ill of others

.. ପରର ଗଇ ଖୋଳନି, ନିଜେ ବି ହଇରାଣରେ ପଡ଼ିବ ।

ଗଛରେ ପଣସ ଓଠରେ ତେଲ – କାର୍ଯ୍ୟ ଆରମ୍ଭ ପୂର୍ବରୁ ଫଳାଫଳ ଆଶା କରିବା– to count the chickens before they are hatched

ଏ ଯାଏ କିଛି ଆରମ୍ଭ ହୋଇନି । ଗଛରେ ପଣସ ଓଠରେ ତେଲ । ବ୍ୟସ୍ତ କାହିଁକି ହଉଛ ?

ଗଛ ଚଢ଼େଇବା – ଅତ୍ୟଧିକ ପ୍ରଶଂସା କରି ଉପରକୁ ଉଠେଇବା– applauding/ praising too much

.. ପିଲାଟାର ବହୁତ ସମୟ ଅଛି । କାହିଁକି ଏବେଠାରୁ ତା'କୁ ଗଛକୁ ଚଢ଼ଉଛ ?

ଗଜକଚ୍ଛପ ଯୁଦ୍ଧ – ଯୁଆନ ଲଢ଼େଇ– to fight to an end

.. ଦୁଇଭାଇଙ୍କ ଭିତରେ ଯେଉଁ ଗଜକଚ୍ଛପ ଯୁଦ୍ଧ ଚାଲିଛି ତାକୁ କିଏ ରୋକିବ ?

ଗଜର ଗଜର କରିବା – ବକବକ କରିବା– to prattle/ babbling

.. ପିଉସାରିଲା ପରେ ଗଜର ଗଜର କରିବ ନାହିଁ ତ ଆଉ କ'ଣ କରିବ ?

ଗଜା ଉଠିବା – ସୂତ୍ରପାତ ବା ସୃଷ୍ଟି କରିବା– to begin/ commence

.. ରାତା ରାତି ବସ୍ତିରେ ଘରଗୁଡ଼ିକ ଗଜା ଉଠିବା ଭଳି ଛାଇ ହୋଇଗଲେ ।

ଗଡ଼ ଜିତିବା – ଅଧିକ ଆନନ୍ଦିତ ହେବା– overwhelmed with joy

.. ପ୍ରମୋଶନ ପାଇକୁ ଏଗିଅର, ସେ ଏଇନେ ଗଡ଼ ଜିତିଛନ୍ତି ।

ଗଡ଼ ଗଡ଼ ହେବା – ଅକୃତକାର୍ଯ୍ୟ ହେବା– to have failed/ to be unsuccessful

.. ମାଟ୍ରିକ୍‌ରେ ସେ ତିନିଥର ଗଡ଼ ଗଡ଼ ହେଲେଣି ।

ଗଡ଼ଗଡ଼ କରିବା – ଖଣ୍ଡ ଖଣ୍ଡ କରି କାଟିବା, ଅନର୍ଗଳ ଭାବେ କହିବା– to cut piece by piece/ to speak fluently

.. କାଠକୁ ଏତେ ଗଡ଼ଗଡ଼ କରିବା ଠିକ୍ ନୁହେଁ ।

.. ପଦ୍ୟଟାକୁ ସେ ଗଡ଼ଗଡ଼ କରି କହିଗଲେ ।

ଗଡ୍ଡାଳିକା ପ୍ରବାହ – ଅନୁସରଣ (ଭଲମନ୍ଦ ବିଚାର ନକରି)– to follow blindly/to work routinely

.. ଗଡ୍ଡାଳିକା ପ୍ରବାହରେ ଭାସି ନଯାଇ ନିଜର ବିଚାର ବୁଦ୍ଧି ଖଟାଅ ।

ଗଡ଼ାଇବା – ପାଣି ଗଡ଼ାଇବା, ସମୟ ଗଡ଼ାଇବା– passing time/ to pour water

.. ଏଡ଼େ ପିଲାଟା, ପାଣି ଗଡ଼େଇ ପାରୁନ ?

.. ଦବାକଥା ଦିଅ, ସମୟ ଗଡ଼ାଅନି ।

ଗଡ଼ିଯିବା – ଫେଲ୍ ହେବା, ହାରିଯିବା– to be unsuccessful/ to be defeated

.. ସେ ଏ ବର୍ଷ ଗଡ଼ି ଯାଇଛି ।

.. ବେଳ ଗଡ଼ିଗଲେ କାମ ସରେ ।

ଗଣ୍ଡମୂର୍ଖ – ଅଶିକ୍ଷିତ / ବୋକା– illiterate/ stupid

.. ତା ଭଳିଆ ଗଣ୍ଡମୂର୍ଖ ତ ପୁଣି ଚାକିରୀ ପାଇଲା ।

ଗଣ୍ଡାଗଣ୍ଡା – ବହୁ ସଂଖ୍ୟକ– many

.. ଗଣ୍ଡାଗଣ୍ଡା ଆମ୍ବ ତୋଳୁଥା, ହେଲେ ଖାଆନି ।

ଗଣ୍ଡା ଚମଡ଼ା – ଟାଣ, ପୁରୁଣା, ଅଭ୍ୟସ୍ତ– habituated/ very hard

.. ତା'ର ତ ଗଣ୍ଡା ଚମଡା, ତା'କୁ କୋଉ ମାନ ଅପମାନ ବାଧିବ ?

ଗଣ୍ଡୁଷ ଜଳ ଦେବା – ତିଳ ତର୍ପଣ କରିବା– offering water to ancestors

.. ଗଙ୍ଗାରେ ଗଣ୍ଡୁଷ ଜଳ ଦେଇ, ପରେ କାଳୀ ଦର୍ଶନ କରି ଫେରିବ

ଗତର ଖଟାଇବା – ପରିଶ୍ରମ କରିବା– to labour physically

.. ଗତର ଖଟାଇଲେ ସିନା ସ୍ୱାସ୍ଥ୍ୟ ଭଲ ରହିବ ।

ଗତର ଲାଗିବା/ ଗଣ୍ଡି ଲାଗିବା – ସ୍ୱାସ୍ଥ୍ୟ ଫେରିବା, ମୋଟା ହେବା– to be healthy/ fat

.. ଏତେ ଦିନ ପରେ ତା'ଗତର ଲାଗିଛି, ମଣିଷ ଭଳିଆ ଦେଖାଯାଉଛି ।

ଗତିକରିବା – ଉପାୟ ବାହାର କରିବା, ବିହିତ କରିବା, ସତ୍କାର କରିବା– to cremate/ to plan out something

.. ମରିବା ଛଡ଼ା ତା'ର ଅନ୍ୟ ଗତି ନାହିଁ ।

.. ମଡ଼ାଟିର ଗତି ନିହାତି ଦରକାର ।

ଗଦାଗଦା – ପ୍ରଚୁର, ରାଶି ରାଶି – in heaps/ plenty

.. ଗଦା ଗଦା ବହି ଉଇ ଖାଇଗଲା

ଗଧ ଖଟଣି – ଅତ୍ୟଧିକ ପରିଶ୍ରମ– hard labour

.. ଛୋଟ ପିଲାଟି କୋଉଠୁ ଏ ଗଧଖଟଣି ଖଟିପାରିବ ?

ଗନ୍ଧ ଶୁଂଘେଇବା – ଠକିଦେବା– cheating/ deceit

.. ସେ ତାଙ୍କୁ ଗନ୍ଧ ଶୁଂଘେଇ ପଇସାପତ୍ର ନେଇ ଫେରାର ।

ଗନ୍ଧ ଶୁଂଘି ଶୁଂଘି – ଅନୁମାନ କରି– following a scent

ଡ଼କା ଯାଇନଥିଲେ ମଧ୍ୟ ଗନ୍ଧ ଶୁଂଘି ଶୁଂଘି ସେମାନେ ହାଜର ହୋଇଗଲେ ।

ଗଙ୍ଗାଲାଭ / ଗଙ୍ଗାପ୍ରାପ୍ତି – ମୃତ୍ୟୁ ବରଣ କରିବା– to pass away/ death

.. ପରନିନ୍ଦା କରି କରି ଶେଷରେ ତାଙ୍କର ଗଙ୍ଗାପ୍ରାପ୍ତି ହେଲା ।

ଗଙ୍ଗା ଯାତ୍ରା – ଗଙ୍ଗାରେ ବିସର୍ଜନ, ଗଙ୍ଗାରେ ସତ୍କାର– immersion in the Ganga/ death rituals

.. ଗଙ୍ଗା ଯାତ୍ରାରୁ ଫେରୁ ଫେରୁ ସଂଧ୍ୟା ହୋଇଗଲା ।

ଗଙ୍ଗାଜଳରେ ଗଙ୍ଗାପୂଜା – ନିଜ ଧନରେ ନିଜର ପୂଜା– ମାଛ ତେଲରେ ମାଛ ଭାଜିବା–

make a gift at owner's cost

.. ସେମାନେ ଯେତିକି ଯୌତୁକ ଦେଇଥିଲେ, ସେଇଥିରେ ସେମାନଙ୍କ ଖାଇବା ରହିବା ହେଇଗଲା, ଏଇଟା ଗଙ୍ଗାଜଳରେ ଗଙ୍ଗାପୂଜା ନୁହେଁ ତ ?

ଗଙ୍ଗା ଯମୁନା ଏକ ହେବା– ଅଧିକ କୋହ ଓ ଲୁହ ଯୋଗୁ କିଛି କହି ନ ପାରିବା– spell bound

.. ତା'ର ତ ଗଙ୍ଗା ଯମୁନା ଏକ ହେଲାଣି, ସିଏ କି ଉତ୍ତର ଦେବ ?

ଗବୁଚନ୍ଦ୍ର – ମୂର୍ଖ, ସ୍ଥୂଳବୁଦ୍ଧି ଲୋକ– foolish/ thick headed

.. ସେ ଗବୁଚନ୍ଦ୍ର ଦେହି ଏ କାମ ହବନି ।

ଗଭୀର ଗାତ – ଗଭୀର ସଂକଟ, ଗଭୀର ସମସ୍ୟା– acute problem

.. ସେ ଯେଉଁ ଗଭୀର ଗାତରେ ପଡ଼ିଛି, ସେଠି ଛଟପଟ ହେବା ହିଁ ସାରହେବ ।

ଗଭୀର ଜଳର ମାଛ – ଧୂରନ୍ଧର ଲୋକ– capable/ competent/ qualified

.. ସେ ତ ଗଭୀର ଜଳର ମାଛ, ତା' ହାବଭାବରୁ କ'ଣଟା ବୁଝିବ ?

ଗରମ କଥା – କଡ଼ା କଥା– harsh words

.. ସକାଳୁ ସକାଳୁ ଗରମ କଥା ଶୁଣିଲେ କିଏ ନ ବିଗିଡ଼ିବ !

ଗରମ ଖବର – ଉତ୍ତେଜକ ଖବର, ତଟକା ଖବର– fresh news/ hot news

.. ସମ୍ବାଦ ପତ୍ରରେ ଗରମ ଖବର ସମସ୍ତଙ୍କୁ ହତଚକିତ କରାଇଦେଉଛି ।

ଗରମାଗରମ – ସଦ୍ୟ ତଟକା, ପୁରାପୁରି ତାଜା, ମାଡ଼– recent/ fresh/ beating

.. ଘଟଣା ପରେ ତା' ଉପରେ କିଛି ଗରମାଗରମ ହୋଇଗଲା ।

ଗରମ ଦେଖେଇବା – ରାଗିକରି କଥାବାର୍ତ୍ତା କରିବା– getting angry/getting irritatated

.. ବେଶି ଗରମ ଦେଖେଇଲେ ଉତ୍ତମ ମଧ୍ୟମ ବସିଯିବ ।

ଗରମ ହେବା – ରାଗିଯିବା– to get angry

.. କଥାଟା ଶୁଣି ସେ ଏମିତି ଗରମ ହେବେ ବୋଲି କିଏ ଜାଣିଥିଲା ।

ଗରଜିଲା ମେଘ ନ ବରଷିବା – ଭଡ଼ଭଡ଼ିଆ, କୋଉ କାମର ନୁହେଁ– barking dog seldom bites/ useless

.. ତା' କଥା ଶୁଣନି, ଗରଜିଲା ମେଘ ବରଷେନି ।

ଗରଗର ହେବା – ବିରକ୍ତି ପ୍ରକାଶ କରିବା, ରାଗିବା– to be displeased/ annoyed

.. କାହିଁକି ସକାଳୁଟାରୁ ମୋ ଉପରେ ଗରଗର ହଉଛୁ ?

ଗରିବ ମାଇପ ସମସ୍ତଙ୍କ ଶାଳୀ – ଅଭାବ ଯୋଗୁ ଅନାଦୃତ– dishonoured due to paucity

.. ବିଚାରୀକୁ କିଏ କାହିଁକି ଦୟା ଦେଖେଇବ, ଗରିବ ମାଇପ ତ ସମସ୍ତଙ୍କର ଶାଳୀ !

ଗର୍ଭଯନ୍ତ୍ରଣା – ଅସହ୍ୟ କଷ୍ଟ– unbearable pain

.. ଘୋଡ଼ାମୁହାଁ ପୁଅ ଜନ୍ମ କଲେ ଗର୍ଭ ଯନ୍ତ୍ରଣା ବୃଦ୍ଧି ପାଇବ ହିଁ ପାଇବ ।

ଗଳଗ୍ରହ – କଣ୍ଟା, ବୋଝ– burden/pain in the neck

.. କେତେଦିନ ଅନ୍ୟର ଗଳଗ୍ରହ ହୋଇ ବଂଚିବ ?

ଗଳ ଗାଜିହେବା – ଚିତ୍କାର କରିବା– to shout at

.. ତମେ ଗଳ ଗାଜି ହେଲେ ଭାବିଛ ସେମାନେ ଦବିଯିବେ ?

ଗଳା ଧରିବା – ଗଳାରେ ବ୍ୟଥା ହେବା– feeling pain in the neck

.. ଗଳା ଧରିଥିବାରୁ ସେ ସ୍ପଷ୍ଟ ଭାବେ କଥାବାର୍ତ୍ତା କରିପାରୁନାହାନ୍ତି ।

ଗଳାରେ ଦଉଡ଼ି ଦେବା – ଆତ୍ମହତ୍ୟା କରିବା– committing suicide

.. ଗଳାରେ ଦଉଡ଼ି ଦେଇ ଲୋକଟି ମରିଛି ।

ଗଳାକାଟିବା – ଡକାୟତି କରିବା, ପ୍ରତାରଣା କରିବା– cheating

.. ଏ ଗଳାକାଟିବା ଧନ୍ଦା ଛାଡ଼ି ପରିଶ୍ରମ କରି ବଂଚିବାକୁ ଚେଷ୍ଟାକର ।

ଗଳାଖଙ୍କାରିବା – ଉପସ୍ଥିତି ଜଣାଇବା– to prove one's presence

.. ଠିକଣା ବେଳେ ସେ ଗଳାଖଙ୍କାରି ଆସି ପହଂଚିବ ।

ଗଳା ଝାଡ଼ିବା – ସ୍ୱରର ଚଢ଼ାଉତରା– to clear one's throat

.. ଗଳା ଝାଡ଼ି ସେ ଗୀତ ଅଭ୍ୟାସ କରୁଛନ୍ତି ।

ଗଳା ଧକ୍କା ଖାଇବା – ଅପମାନିତ ହୋଇ ବିତାଡ଼ିତ ହେବା– to be insulted and driven away

.. ନ ଜଣେଇ ଘରେ ପ୍ରବେଶ କରିଥିବାରୁ ଗଳା ଧକ୍କା ଖାଇ ସେ ବିଦାହେଲା ।

ଗଳାରେ ଗାମୁଛା ବାନ୍ଧିବା – ଜବରଦସ୍ତି କରାଇବା– by hook or crook

.. ଗଳାରେ ଗାମୁଛା ବାନ୍ଧି ସେ ତା'ଙ୍କର ଟଙ୍କା ଆଦାୟ କରିବେ ।

ଗଳାରେ ପାଦ ଦେବା – ପୀଡ଼ା ଦେବା– giving pain/ putting in trouble

.. ଗରିବ ଗଳାରେ ପାଦ ଦେଇ ଉପରକୁ ଉଠିବା ମୋର ଦରକାର ନାହିଁ ।

ଗଳାଗଳି – ଘନିଷ୍ଠତା– closeness

.. ସେ ଦୁହିଙ୍କ ଗଳାଗଳି ଭାବ କଥା କିଏ ନ ଜାଣେ !

ଗଳାର ହାର – ମୂଲ୍ୟବାନ, ଅଧିକ ଆଦରର ବସ୍ତୁ– valuable/very dear

.. ନାତିଟି ଥିଲା ବୃଦ୍ଧଙ୍କର ଗଳାର ହାର ।

ଗହମ ଗୋଟି ଗଣିତା – ବଳିବାର ପ୍ରଶ୍ନ ଉଠୁନି– to live by limited means

.. ଗହମ ତ ଗୋଟିଗଣିତା, ସେଥିରୁ ବଳିବ ବୋଲି କେମିତି ଭାବୁଛ ?

ଗାଁ ପରିମଳ ଧୋବାଠୁଠରୁ – ଗୋଟିଏ ଉଦାହରଣରୁ ସବୁ ସ୍ପଷ୍ଟ– to clarify by a

single illustration

∴ ତାଙ୍କ ବଂଶର ସମସ୍ତେ ସେଇଆ, କହିବ କାହାକୁ ? ଗାଁ ପରିମଳ ଧୋବାଠୁଠୁ ।

ଗାଁ କନିଆ ସିଂଘାଣିନାକୀ – ନିଜ ଜିନିଷର ହତାଦର– a wise man in his own place, is never given to rise/ familiarity breeds contempt

.. ଏତେଦିନ ପରେ ଗାଁକୁ ଫେରିଲା । ଗାଁ କନିଆ ସିଂଘାଣିନାକୀ, କିଏ କାହିଁକି ପଚାରିବ ?

ଗାଡ଼ି ମାଡ଼ିବା – ଗାଡ଼ି ତଳେ ଚାପା ପଡ଼ିବା– to be run over by a vehicle

.. ଚାରିଜଣଙ୍କୁ ଗାଡ଼ି ମାଡ଼ିଦେଲା ।

ଗାଡ଼ି ଧରିବା – ଗାଡ଼ିରେ ବସିବା– to catch the train

.. ଗାଡ଼ି ଧରୁ ଧରୁ ସଂଧ୍ୟା ହୋଇଗଲା ।

ଗାଡ଼ି ଚଢ଼େଇବା – ଗାଡ଼ିରେ ବସାଇବା– to see some one off

.. ତାଙ୍କୁ ଗାଡ଼ି ଚଢ଼େଇବାକୁ ମୁଁ କଟକ ଯିବି ।

ଗାତର କମ୍ପ – ଅତ୍ୟନ୍ତ ଭୟ– overwhelmed with fear/ panic stricken

.. ତା' କଥା ଶୁଣିଲେ ଯେ କୌଣସି ଲୋକର ଗାତର କମ୍ପ ହେବ ।

ଗାତ୍ରଦାହ ହେବା – ଭୀଷଣ ରାଗିଯିବା, ଭିତରେ ଭିତରେ ଜଳିବା, ଘୃଣା କରିବା– to hate/ burn with rage

.. ମୋ କଥାଶୁଣି ତା'ଙ୍କ ଗାତ୍ର ଦାହ ହେଉଥିଲା ।

ଗାତୁଆ ମୂଷା – ବୁଡ଼ି ବୁଡ଼ି ପାଣି ପିଇଲା ଲୋକ– to act under cover

.. ସେ ତ ଗାତୁଆ ମୂଷା । ତାକୁ ପୁଣି ତମେ ଟକ୍କର ଦେବ ?

ଗାୟେ ମୋଟ କରିବା – ମିଶାଇବା, ଏକଜୁଟ କରିବା– to mix together

.. ସବୁ ଗୁଡ଼ାକ ଗାୟେ ମୋଟ କଲେ କେତେ ହଉଛି ?

ଗାଲ୍ ଗପ – ମନଗଢ଼ା କାହାଣୀ– fictitious story/ idle talk

.. କେତେଦିନ ଏ ଗାଲଗପ କହି ଲୋକଙ୍କୁ ଭୂଆଁ ବୁଲେଇବ ?

ଗାଲ ଟିପିଲେ ଦୁଧ ବାହାରିବା – ଅବୋଧ ଶିଶୁ– infant

.. ହଇରେ ତୋ ଗାଲ ଟିପିଲେ ଦୁଧ ବାହାରିବ, ତୁ ଆସିଛୁ ମୋ ସାଙ୍ଗେ ମୁକାବିଲା କରିବାକୁ ?

ଗାଲ ଫଟେଇବା – ମାରିବା (ଗାଲ)– beating to / strike hard

.. ବେଶି ଭଡ଼ଭଡ଼ ହେଲେ ଗାଲ ଫଟେଇଦେବି ।

ଗାଲରେ ହାତଦେବା – ବିସ୍ମୟ ବା ଦୁଃଖରେ ହତବାକ ହେବା, ଚିନ୍ତିତ ହେବା– to be much afflicted/ to be amazed

.. ଏଇ କଥାରେ ଗାଲରେ ହାତ ଦେଇ ବସିଛୁ ? ପରିସ୍ଥିତିର ସାମନା କର । ଉପାୟ ମିଳିଯିବ ।

ଗାଲୁପେଲିବା – ବାହସ୍ଫୋଟ୍ ମାରିବା, ମିଛରେ ବଡ଼ବଡ଼ କଥା କହିବା– to boast/ to assert a false thing as true

.. କେତେଦିନ ଏମିତି ଗାଲୁ ପେଲିକରି ବଂଚିବୁ ? ସତ୍ୟର ସାମନା କର ।

ଗାଲୁଆଙ୍କ ବାରବାଟୀ ଚାଷ – ବାହାସ୍ଫୋଟ୍ ମାରିବା– false exaggerated talks

.. ସେ ଗାଲୁଆଙ୍କ ବାରବାଟୀ ଚାଷ କଲାବାଲା, ତାକୁ ପୁଣି ତମେ ବୁଦ୍ଧି ଶିଖେଇବ ?

ଗାଲେଇଦେବା – ଉପେକ୍ଷା କରିବା– impudence/ to avoid

.. କେତେଦିନ ଆମ କଥା ଗାଲେଇ ଦେଇ ଚାଲିବୁ, ଚାଲ ।

ଗୀତ ବାନ୍ଧିବା – ଗୀତ ରଚନା କରିବା– shaping a song

.. ଆଦିବାସୀମାନେ ମନକୁ ମନ ଗୀତ ବାନ୍ଧି ଗାଇଥାନ୍ତି ।

ଗୁଜରାଣ ମେଣ୍ଟାଇବା – ଖର୍ଚ୍ଚ ତୁଲାଇବା– to make both ends meet

.. ଦରମା ଟଙ୍କାରେ ଗୁଜରାଣ ମେଣ୍ଟାଇବା ଭାରି କଷ୍ଟ ।

ଗୁଣ ଗାଇବା – ପ୍ରଶଂସା କରିବା– to praise/ to applaude

.. ବେଶି ଗୁଣ ଗାଇଲେ, ସେ କୋଉ କୁଳର ହେବନାହିଁ ।

ଗୁଣସାଗର – ଗୁଣବାନ୍, ଗୁଣହୀନ (ବ୍ୟଙ୍ଗ)– talented/ worthless

.. ପିଲାଟି ଗୁଣସାଗର । ସେ ଗୁଣସାଗର କଥା କହୁନି, ବଦମାସ୍‌ଟାଏ ।

ଗୁଣଗାଇବା ଅଖା ଧୋଇବା – ଦୁଷ୍ଟ ପ୍ରୀତି କ୍ଷତି କାରକ– to be put in unsavoury work

.. ତା' ସାଙ୍ଗରେ ସାଙ୍ଗ ହଉଥା, ଗୁଣ ଗାଉଥିବ ଅଖା ଧୋଉଥିବ ।

ଗୁଣ ଚିହ୍ନେ ଗୁଣିଆ – ପ୍ରତିଭାର ଯଥାର୍ଥ ଆଦର– a talented man can recognize another talented man

.. ଦେଖିଲ, ସେମାନେ କେମିତି ଆଦର କଲେ । ଅସଲ କଥା ହେଲା, ଗୁଣ ଚିହ୍ନେ ଗୁଣିଆ ।

ଗୁଣି ହେବା – ମନେ ପକାଇବା– to call to one's mind/ to recall/ remind oneself

.. ସଦାବେଳେ ସେ ତା' ମା' କଥା ଗୁଣି ହେଉଛି ।

ଗୁମ୍ ମାରିଯିବା – ନିର୍ବାକ ହୋଇଯିବା, ଗମ୍ଭୀର ହୋଇ ଉଠିବା– to be grave/ to be silent/ to lose speech

.. ବଡ଼ ପୁଅର ମୃତ୍ୟୁରେ ସେ ଗୁମ୍ ମାରି ବସିଗଲେ ।

ଗୁମର ଫିଟିଯିବା – ଗୁପ୍ତକଥା ଜଣାପଡ଼ିବା– to let the cat out of the bag/ to know the secrets

.. ତିନିବର୍ଷ ପରେ ତାଙ୍କ ପରିବାରର ଗୁମର ଫିଟିଯିବାରୁ ଲୋକେ ଅସଲ କଥା ଜାଣିଲେ ।

ଗୁରୁମରା ବିଦ୍ୟା – ଗୁରୁଙ୍କ ପାଠ ତାଙ୍କରି ଉପରେ ପ୍ରୟୋଗ କରିବା– to be deceitful to one's own master

.. ଏ ଗୁରୁମରା ବିଦ୍ୟା ତା'ଙ୍କ ଗୁରୁ ତା'ଙ୍କୁ ଶିଖାଇଛନ୍ତି । ସେ କ'ଣ ମନଗ୍ରୁ କରୁଛନ୍ତି ?

ଗୁହକୁ ମାରିଲେ ମୁହଁକୁ ପଡ଼େ – ଆପଣା ଛିଦ୍ର ଖୋଳିଲେ ନିଜକୁ ବାଧେ– to spit against wind is to spit at oneself

.. କାହିଁକି ସେଗୁଡ଼ାକ ଦୋହରଉଛ ? ଗୁହକୁ ମାରିଲେ ମୁହଁକୁ ପଡ଼େ ।

ଗୁହମୁତରେ ଘାଣ୍ଟିହେବା – ଅଧିକ ଅସୁସ୍ଥ ହୋଇପଡ଼ିବା– to be very ill

.. ସେ ତ ଗୁହମୁତରେ ଘାଣ୍ଟିହଉଛି, କେତେବେଳେ ଖସିଯିବ, କହି ହଉନି ।

ଗୁଲି ମାରିବା – ମନଗଢ଼ା କଥା କହିବା– boasting/ speaking fictictious words

.. ସେ ତ ଗୁଲିମାରିବା ଲୋକ, ତାଙ୍କୁ କ'ଣ ବିଶ୍ୱାସ କରିବ ?

ଗୋଇଠା ମାରି ବିଷ୍ଣୁ ସ୍ମରଣ – ଅପମାନ ଦେଇ କ୍ଷମା ମାଗିବା– to insult first and then beg pardon

.. ଗୋଇଠା ମାରି କାହିଁକି ଆଉ ବିଷ୍ଣୁ ସ୍ମରଣ କରୁଛ ? ହଜିଗଲା ଜିନିଷ କ'ଣ ଆଉ ଫେରିଆସିବ ?

ଗୋଇଠା ମାରି ପଣସ ପଚାଇବା – ଜୋର କରି କାର୍ଯ୍ୟ କରାଇବା– do a thing by force

.. ସେ ଗୋଇଠା ମାରି ପଣସ ପଚେଇବା ଲୋକ । ସେ ତମକୁ ସହଜେ ଛାଡ଼ିଦେବ ?

ଗୋଟାପଣେ ତୁଳସୀ – ନିଜକୁ ନିର୍ଦ୍ଦୋଷ କହୁଥିବା ବ୍ୟକ୍ତିକୁ ଆକ୍ଷେପ– a completely innocent man/ a man who poses to be innocent

.. ସେ ତ ଗୋଟାପଣେ ତୁଳସୀ, ବୁଦ୍ଧି ବତେଇବନି କାହିଁକି ?

ଗୋଟିଏ ହାତରେ ତାଳି ବାଜେନା – ଝଗଡ଼ା ପାଇଁ ଉଭୟ ପକ୍ଷ ଦାୟୀ– two parties make a quarrel

.. ଗୋଟିଏ ହାତରେ କେବେ ତାଳି ବାଜେନା, ଜଣେ ନିଶ୍ଚୟ କିଛି ନା କିଛି କରିଥିବ ।

ଗୋଟିଏ ଢେଲାରେ ଦୁଇଟା ଆମ୍ବ – ଗୋଟିଏ ଚେଷ୍ଟାରେ ଦୁଇଟି କାର୍ଯ୍ୟ ସାଧନ– double achievement with one attempt

.. ସେ ପକ୍କା ଶିକାରୀ, ଗୋଟିଏ ଢେଲାରେ ଦୁଇଟା ଆମ୍ବ ଝଡାଇଲା ଲୋକ ।

ଗୋଟିଏ ଚାଉଳରେ ଗଢ଼ା – ଅତି ସୁନ୍ଦର– flawless beauty

.. ପିଲାଟି ଗୋଟିଏ ଚାଉଳରେ ଗଢ଼ା, ତାକୁ କିଏ ବାରିବ ?

ଗୋଠ ଖଣ୍ଡିଆ – ଗୋଷ୍ଠୀରୁ ବାହାରି ଯାଇଥିବା ଲୋକ, ଏକୁଟିଆ ବାଆଁରା– out caste/ outside the tribe/ single man

.. ଆରେ ସେ ତ ଗୋଠ ଖଣ୍ଡିଆ ଲୋକ, ସେ କ'ଣ ସାଇ ଭାଇଙ୍କ ସାଙ୍ଗରେ ବସିବେ ?

ଗୋଠ ମାତିଲେ ଖଣ୍ଡିଆ ମାତେ – ଗୋଷ୍ଠୀ ପ୍ରଭାବରେ ଦୁର୍ବଳ ଜାଗି ଉଠିବା– to find strength in unity/ unity brings strength to the weak

.. ତା' ଦେହରେ ଏବେ ମାଉଁସ ଲାଗିଛି, ନିଶ୍ଚୟ ଉଡ଼ିବ । ଏତିକି ଜାଣିନ, ଗୋଠ ମାତିଲେ ଖଣ୍ଡିଆ ମାତନ୍ତି !

ଗୋଡ଼ ପକେଇବା – ଉପସ୍ଥିତ ହେବା– to be present

.. ତା'ଙ୍କ କଥା ଶୁଣି କିଏ ତା'ଙ୍କ ଘରେ ଗୋଡ଼ ପକେଇବ ?

ଗୋଡ଼ ହାତ ବୋଲ କରିବା – ଅତି ଚଞ୍ଚଳ– fickle/restless

.. ଦୁଷ୍ଟ ପିଲାଟାର ଗୋଡ଼ହାତ ବୋଲ କରୁଛି ।

ଗୋଡ଼ ଟାଣିବା – କ୍ଷତି କରିବା– to put one in distress/ harmful

.. ଏ ଗୋଡ଼ ଟାଣିବା ପ୍ରକୃତି ଛାଡ଼ ।

ଗୋଡ଼ ଟେକି ବସିବା – ବ୍ୟଗ୍ର ହେବା– to wait excitedly to do something

.. ବାପଘର ଯିବା ପାଇଁ ସେ ଗୋଡ଼ ଟେକି ବସିଛି ।

ଗୋଡ଼ରେ ହାତ ମାରିବା – ଗୋଡ଼ ମୋଡ଼ିବା, ସେବା କରିବା– to serve/ to massage

.. ବୋହୂ ଶଶୁରଙ୍କ ଗୋଡ଼ରେ ହାତ ମାରୁଛି ।

ଗୋଡ଼ରୁ ପାଣି ମରିବା – ହାଲିଆ ହୋଇପଡ଼ିବା– to be tired

.. ଟଙ୍କା କେଇଟା ପାଇଁ ଦଉଡ଼ି ଦଉଡ଼ି ତାଙ୍କ ଗୋଡ଼ରୁ ପାଣି ମଲାଣି ।

ଗୋଡ଼ ହାତ ନ ପାଇବା – ସମର୍ଥ ନ ହେବା– not being capable

.. ତାଙ୍କ ଘରକୁ ଆମ ଗୋଡ଼ ହାତ ପାଇବନି । କାହିଁକି କଥା ପକେଇବା ?

ଗୋଡ଼ ତଳର ଲୋକ – ନ୍ୟୂନ ଲୋକ– man of low status

.. ସେ ଆମ ଗୋଡ଼ ତଳର ଲୋକ । ତା' ସାଙ୍ଗରେ କ'ଣ ବନ୍ଧୁ ବାନ୍ଧିବ ?

ଗୋଡ଼ ଧରିବା – ବିଶେଷ ଅନୁରୋଧ କରିବା– special request to someone

.. ଗୋଡ଼ ଧରିବାରୁ ମହାଜନ ତାକୁ ଛାଡ଼ିଦେଲା ।

ଗୋଡ଼ତଳେ ନ ଲାଗିବା – ଆନନ୍ଦରେ ଆତ୍ମହରା ହେବା– overwhelmed with joy

.. ଚାକିରୀ ପାଇଥିବାରୁ ତା' ଗୋଡ଼ ଆଉ ତଳେ ଲାଗୁନି ।

ଗୋଡ଼ ଲମ୍ବେଇବା – ଆହୁରି ଅଧିକ ସୁବିଧା ଚାହିଁବା– delaying practice

.. ଯେତେ ଗୋଡ଼ ଲମ୍ବେଇଲେ, ଆଉ ଅଧିକ ଧନ ମିଳିବାର ନାହିଁ ।

ଗୋଡ଼ ତଳେ ପଡ଼ିବା – କ୍ଷମା ମାଗିବା, ଭୁଲ୍ ସ୍ୱୀକାର କରିବା– to pray for mercy

.. ଗୋଡ଼ ତଳେ ପଡ଼ିବା ଛଡା ଅନ୍ୟ ଉପାୟ ତା'ଙ୍କ ପାଖରେ ନଥିଲା ।

ଗୋଡ଼ ଟାଣ କରିବା – ଦମ୍ଭ ଧରିବା– be able/ be patient

.. ଗୋଡ଼ ଟାଣ କର, ଝଡ଼ ତା' ବାଟରେ ଚାଲିଯିବ ।

ଗୋଡ଼ ଭାଂଗି ଠିଆହେବା – ଦବିଯିବା, ନଇଁ ଯିବା– to bend down/ to surrender

.. ଗୋଡ଼ ଭାଂଗି ଠିଆ ହେଲେ ଜମିଦାର ସାହେବ ନିଶ୍ଚୟ କିଛି ଦେବେ ।

ଗୋଡରେ କୁରାଢୀ ମାରିବା – to cause one's own ruin

ଗୋଡ଼ ହାତ କଥା କହିବା – ଅତି ଦୁଷ୍ଟ– naughty/ wicked

.. ପିଲାଟାର ଗୋଡ଼ ହାତ ସଦାବେଳେ କଥା କହେ, ତା'କୁ ବାଟକୁ ଆଣିବା ଭାରିକଷ୍ଟ ।

ଗୋତ୍ର ସୁମରି ଉଡ଼ିଯିବା – ନିଜ ଦଳରେ ସାମିଲ ହେବା– support one's own group

.. ଯେଉଁଠି ଲୁଚାଇଲେ ବି ସେ ରହିବନି, ଆପଣା ଗୋତ୍ର ସୁମରି ଉଡ଼ିଯିବ ।

ଗୋତ୍ରମରା ଡାହୁକ – ନିଜ ପକ୍ଷର ଭେଦ ଶତ୍ରୁକୁ କହିବା– to leak out secrecy before enemy/ betrayer

.. ସେ ହଉଛି ଗୋତ୍ରମରା ଡାହୁକ । ତାକୁ ବିଶ୍ୱାସ କରୁଛ ?

ଗୋଦର ଗୋଡ଼ରେ ମାଉଁସ ଲାଗିବା – ଅଧିକ ଅରୁଚିକର ହୋଇପଡ଼ିବା– appearance of health wrong way

.. ଯେତେ ନିଜକୁ ସଜେଇଲେ କ'ଣଟା ହେବ ? ଗୋଦର ଗୋଡ଼ରେ ମାଉଁସ ଲାଗିଲେ ଯାହା ହେବା କଥା ହିଁ ହେବ ।

ଗୋଦର ଗୋଡ଼କୁ ଫୁଲ ଚନ୍ଦନ – ଅପାତ୍ରରେ ଦାନ– respect to an unworthy person

.. କାହିଁକି ଗୋଦର ଗୋଡ଼ରେ ଫୁଲ ଚନ୍ଦନ ଢାଳୁଛ ? ସେ କ'ଣ ତା' ମହତ ବୁଝିବ ?

ଗୋଦରା କୋଡ଼େ ଯେତେ ମାଡ଼େ ସେତେ – ନିରର୍ଥକ କାମରେ ଲାଭ କ୍ଷତି ସମାନ– no profit no loss in a baseless work

.. କ୍ଷତି ହେଲା ବୋଲି କାହିଁକି କହୁଛ ? ଗୋଦରା କୋଡ଼େ ଯେତେ ମାଡ଼େ ସେତେ ।

ଗୋଦାମ ରଦ୍ଦି – ବଳକା ପଦାର୍ଥ, ବ୍ୟବହାରର ଅଯୋଗ୍ୟ– shop soiled/unused things

.. ଗୋଦାମ ରଦ୍ଦି ଖାଇଲେ ଦେହ ନିଶ୍ଚୟ ଖରାପ ହେବ ।

ଗୋପରେ ବଢ଼ିବା – ନିଶ୍ଚିନ୍ତରେ ରହିବା– be free from care/ to be brought up easily

.. ସେ ତ ଗୋପରେ ବଢୁଛି, ଟଙ୍କା କୋଉଠୁ ଆସୁଛି ସେ କେମିତି ଜାଣିବ ?

ଗୋବର ଗଦାରେ କଇଁ ଫୁଟିବା – ଅସମ୍ଭବ କଥା ଘଟିବା– musk in a kennel/lotus blooming in a dung hill

.. ଗୋବର ଗଦାରେ କଇଁ ଫୁଟିବା ଭଳି କୃଷ୍ଣ ଆମ ପରିବାରକୁ ଆସିଥିଲା ।

ଗୋବର ଗଣେଶ – କୋଉ କାମର ନୁହଁ, ଗଜମୂର୍ଖ– foolish / stupid

.. ସେ ତ ଗୋବର ଗଣେଶ । ସେ ପୁଣି କି ବୁଦ୍ଧି ବତେଇବ ?

ଗୋବରା ଚଢ଼େଇ କି ପାଚିଲା କଦଳୀ – ଅପାତ୍ରରେ ଦାୟିତ୍ୱ ଦେବା – ill adjustment/ incongruous

.. ମୋଚି କରିବ ଚଣ୍ଡୀପାଠ ? କ'ଣ କହୁଛ ? ଗୋବରା ଚଢ଼େଇ କି ପାଚିଲା କଦଳୀ !

ଗୋରୁ ମାରି ଜୋତାଦାନ – ନୀଚକାମ କରି ନାମମାତ୍ର ସତ୍ କାର୍ଯ୍ୟ ଦ୍ୱାରା ଅପରାଧ ଘୋଡ଼ାଇବା– to rub Peter and pay Paul

.. ଆରେ ଭାଇ, ସେ ଗୋରୁ ମାରି ଜୋତାଦାନ କଲା ଲୋକ, ସେ ପୁଣି ମନ୍ଦିର ଗଢ଼ିବେ ?

ଗୋରୁମୁଣ୍ଡ ଥାପି କପା ତୋଳିବା – ଜଣକ ନାଁରେ ସୁବିଧା ମାରିବା– to get benefit through an able

.. ତା' ବଡ଼ଭାଇ ହାକିମ । ସେ ଗୋରୁମୁଣ୍ଡ ଥାପି କପା ତୋଳିବ ନି ତ ଆଉ କିଏ ତୋଳିବ ?

ଗୃହଭେଦୀ ବିଭୀଷଣ – ଘରଶତ୍ରୁ– insider enemy

.. ବିଶ୍ୱାସୀ ଲୋକଙ୍କୁ କହିପାର, ହେଲେ ଗୃହଭେଦୀ ବିଭୀଷଣଙ୍କୁ ନୁହେଁ ।

## ଘ

ଘର ନିଆଁ – ଘରର ଦୋଷ ଦୁର୍ବଳତା– family secrets

.. ଘର ନିଆଁ ପର କେମିତି ଜାଣିଲେ ?

ଘର ଆଲୁଅ କରିବା – ଘରର ସୌଭାଗ୍ୟ ଉଦୟ ହେବା, ଗୌରବ ବୃଦ୍ଧି କରିବା– to get glory to the family

.. ସାନ ପୁଅ ହିଁ ତାଙ୍କ ଘରକୁ ଆଲୁଅ କରିଛି ।

ଘର ପୋଡ଼ିରୁ କୁଟାଖିଏ – ଧ୍ୱଂସ ଭିତରୁ କିଛିଟା ଉଦ୍ଧାର – minimal saving from total destruction

.. ଭୂମିକମ୍ପରେ ସବୁ ଯାଇଛି । ଯାହା ଅଛି, ସେତକ ଘର ପୋଡ଼ିରୁ କୁଟାଖିଏ ଭଳି ।

ଘରବୁଡ଼ି ପାଣି ଆଣ୍ଠୁଏ – ଅବସ୍ଥା ଅଣାୟତ୍ତ ହେବା– extremely hazardous situation

.. ତାଙ୍କର ଘରବୁଡ଼ି ପାଣି ଆଣ୍ଠୁଏ । କୋଉ ଭାଇ ତାଙ୍କୁ ରକ୍ଷା କରିବ ?

ଘର କରିବା – ସଂସାର କରିବା– to have a family

.. ଘର କଲେ ସେ ଜାଣିବ ସଂସାରଟା କ'ଣ ।

ଘର ଧରିବା – ନିଜର ଦାୟିତ୍ୱ ବିଷୟରେ ସଚେତନ ହେବା – to be aware of one's responsibility

.. ତାର ମନ ଘର ଧରିଯାଇଛି । ଆଉ ଆଣିବନି ।

ଘର ଭିତରେ ଦାରୀନାଚ – ପରିବାର ଭିତରେ ଅନୀତି ବା ଅନାଚାର– inappropriate things done in a family

.. ଏ ଘର ଭିତରେ ଯେମିତି ଦାରୀନାଚ ଚାଲିଲାଣି, କାହାକୁ ମୁହଁ ଦେଖେଇ ହେବନାହିଁ ।

ଘର ବସେଇବା – ବସବାସ କରିବା– to settle down/ to rehabilitate

.. ସେମାନଙ୍କ ନୂଆ ଘରବସେଇବା ଆସି ତିନି ମାସ ହୋଇଗଲାଣି ।

ଘର ବୁଡ଼େଇବା – ବିଘ୍ନ ସୃଷ୍ଟି କରିବା– to ruin

.. ତା'ଙ୍କ ଘର ବୁଡ଼େଇ କି ଲାଭ ପାଇଲ ?

ଘର ପୋଡ଼ି ବେଳେ କୂଅ ଖୋଳା – ବିପଦ ଆଗରୁ ପ୍ରସ୍ତୁତ ନ ହେବା – not to be ready before a disaster

.. ଘର ପୋଡ଼ି ବେଳେ କୂଅ ଖୋଳି ବସିଲେ କି ଲାଭ ହେବ ?

ଘରଭଙ୍ଗା – ଗଣ୍ଡଗୋଳକାରୀ– troublesome

.. ସେ ଗୋଟାଏ ଘରଭଙ୍ଗା ଲୋକ ।

ଘର କୋଣରେ ରହିବା – ଅଲଗା ହୋଇ ରହିବା– to avoid company

.. ଘର କୋଣରେ ରହିବା ହେତୁ ସେ କାହା ସାଙ୍ଗରେ ମିଶିପାରୁନାହାନ୍ତି ।

ଘର ଦିଅଁ ଛାଡ଼ି ପର ଦିଅଁ – ନିଜର ସଂସ୍କୃତିକୁ ଅବହେଳା କରି ଅନ୍ୟ ସଂସ୍କୃତି ପଛରେ ଧାଇଁବା – to praise others at the cost of oneself

.. କିଛି ପାଉଛି, ନହଲେ ଘର ଦିଅଁ ଛାଡ଼ି ପର ଦିଅଁ ପଛରେ ଗୋଡ଼ାନ୍ତା ।

ଘର ଢଳେଇବା – ବିଶୃଙ୍ଖଳା ସୃଷ୍ଟିକରିବା– to create disturbances

.. ତା'ଙ୍କ ଘର ଢଳେଇବାରେ ନେତିର ହାତ ରହିଛି ।

ଘରକରଣା – ଘରର କାମ– household works

.. ଘର କରଣା କରୁ କରୁ ତା'ଙ୍କର ସବୁ ସମୟ ଚାଲିଯାଉଛି ।

ଘରୁଆ ମଣିଷ – ଆଭିଜାତ୍ୟ ସଂପନ୍ନ– born of a respectable family

.. ବଳବନ୍ତରାୟ ହେଉଛନ୍ତି ଘରୁଆ ମଣିଷ ।

ଘର ଭାଂଗିବା – ପରିବାରରେ କଳି ଲଗେଇବା, କୁପରାମର୍ଶ– to ruin one's family

.. ଅନ୍ୟର ଘର ଭାଂଗିବା ହେଉଛି ତା'ର ସହଜାତ ପ୍ରବୃତ୍ତି ।

ଘରେ ବସିବା – କାମଧନ୍ଦା ନ କରିବା– to be idle

.. ଘରେ ବସିବା ଛାଡ଼ି କିଛି ନା କିଛି କର ।

ଘର ଢିଙ୍କି କୁମ୍ଭୀର – ନିଜ ଲୋକ ଶତ୍ରୁ– false friend/enemy within

.. ଘର ଢିଙ୍କି ତ କୁମ୍ଭୀର । କହିବ କାହାକୁ ?

ଘର କାଟିବା –ନକ୍‌ସା ବା ଚିହ୍ନ ଦେବା– marking boundary

.. ଦାଣ୍ଡରେ ପିଲାଏ ଘର କାଟି ଖେଳୁଛନ୍ତି ।

ଘର ଘର – ପ୍ରତେକ ଘର- ପ୍ରତିଟି ପରିବାର– every houses

.. ଗାଁର ଘର ଘର ଖୋଜିଛି, ହେଲେ ତାଙ୍କୁ ପାଇଲିନି ।

ଘର ଛାଡ଼ିବା – ଗୃହ ତ୍ୟାଗୀ ହେବା– to be away from worldly affairs

.. ଘର ଛାଡ଼ି ୧୪ ବର୍ଷ ପାଇଁ ସେ ବନକୁ ଯାଇଥିଲେ ।

ଘରଦ୍ୱାର – ଘର ଏବଂ ଘରର ସବୁଜାଗା– household area

.. ପ୍ରତିଦିନ ସେ ଚାରିଥର ଘରଦ୍ୱାର ପରିଷ୍କାର କରେ ।

ଘର ବର – ଘର ଓ ବରର ପରିବାର ବା ବଂଶ ଆଭିଜାତ୍ୟ– the bridegroom and his family

.. ସବୁ ଝିଅର ବାପା ଘର ବର ଦେଖି ଝିଅକୁ ବାହା ଦେଇଥାନ୍ତି ।

ଘରମୁଖା – ଘର ପ୍ରତି ଆସକ୍ତି– growing attachment for the family

.. ସେ ଘରମୁଖା ହେଲାଣି, ତା'କୁ କିଏ ଅଟକାଇବ ?

ଘର କଥା – ସଂସାର ବା ପରିବାରର ଗୋପନକଥା– family secrets

.. ଘରକଥା ବାହାରେ ପ୍ରକାଶ କରିବା ଉଚିତ ନୁହେଁ ।

ଘର ଶତ୍ରୁ ବିଭୀଷଣ – ନିଜ ପରିବାର ବା ଦଳର ଶତ୍ରୁ– the enemy within the family

.. ତା'କୁ କିଛି କୁହନାହିଁ, ସେ ହେଉଛି ଘରଶତ୍ରୁ ବିଭୀଷଣ ।

ଘରୁ ଖାଇ ଘୋଡ଼ା ଆଗରେ ନାଚିବା – ପକେଟ୍‌ରୁ ଖର୍ଚ୍ଚକରି ଅନ୍ୟକୁ ଆନନ୍ଦଦେବା, ବିନା ମୂଲ୍ୟରେ ପରିଶ୍ରମ କରିବା– to make merry at one's own cost

.. କେତେ ଦିନ ଘରୁ ଖାଇ ଏମିତି ଘୋଡ଼ା ଆଗରେ ନାଚୁଥିବ ? ଅନ୍ୟ କିଛି କାମ କର ।

ଘରେ ନିଆଁ ଲଗେଇବା – ପରିବାରରେ ବିବାଦ ସୃଷ୍ଟି କରିବା– to put discord in the family

.. ମହାନ୍ତି ଘରେ ନିଆଁ ଲଗେଇ କି ଲାଭ ପାଇଲ ?

ଘରେଇ କଥା – ପରିବାର କଥା– family affairs

.. ବୟସ ହେଲାଣି, ଏଣିକି ଘରେଇ କଥାରେ ମୁଣ୍ଡ ଖେଳାଅ ।

ଘରେ ନ ପଶୁଣୁ ମୁଣ୍ଡରେ ଚାଳ ବାଜିବା – କାମ ଆରମ୍ଭ ହେବା ପୂର୍ବରୁ ବାଧା– inauspicious beginning

.. ବୋହୂ ଆଣିଲ ଭଲକଲ । ଘରେ ନ ପଶୁଣୁ ମୁଣ୍ଡରେ ଚାଳ ବାଜିଲାଣି, ଆଉ ତ ଅଛି ।

ଘଡ଼ିକେ ଘୋଡ଼ା ଛୁଟିବା – ଘନ ଘନ ପରିବର୍ତ୍ତନ ହେବା– quick change of colours

.. ଆଜି କାଲିକା ନେତାଙ୍କ ଘଡ଼ିକେ ଘୋଡ଼ା ଛୁଟୁଛି ।

ଘଣ୍ଟା ଚାଲିବା – ଘଣ୍ଟା କାର୍ଯ୍ୟ କରିବା– working condition of a clock

.. କାନ୍ଥ ଘଣ୍ଟା ଚାଲିଛି ନା' ବନ୍ଦ ହେଇଛି ?

ଘଣ୍ଟ ଘୋଡ଼ାଇବା – ଜାଣିଶୁଣି ଦୋଷ ଲୁଚାଇବା– to cover up a crime

.. ସେ ଘଣ୍ଟ ଘୋଡ଼େଇବାରୁ ତମେ ରକ୍ଷା ପାଇଗଲ ।

ଘଣ୍ଟି ବାଜିବା – ଶେଷ ଅବସ୍ଥା – the eleventh hour

.. ଘଣ୍ଟି ବାଜିବା ଆଉ କେତେ ଦୂର କି ? ଆଖି ପିଛୁଳାକେ ।

ଘଡ଼ିକର ହାକିମ – ସ୍ୱଳ୍ପ କାଳର ବଡ଼ିମା– king for a moment

.. ସେ ତ ଘଡ଼ିକର ହାକିମ । ସେ କ'ଣଟା ସାହାଯ୍ୟ କରିପାରିବେ ?

ଘା'ଆ ଧରିବା – ମନ୍ତ୍ର ଦ୍ୱାରା କ୍ଷତକୁ ବଢ଼ାଇବା– irritating one's wound by tantra

.. ଘା' ଧରିବା ହେତୁ ସେଇଟା ଆଉ ଭଲ ହେଉନାହିଁ ।

ଘାଇ ହେବା – ବନ୍ଧ ଭାଂଗିବା– breach in a river

.. ଶାଳିଆ ବନ୍ଧରେ ତିନୋଟି ଘାଇ ହୋଇଛି ।

ଘାଇ ମୁହଁରେ ଯିବା – ଅଯଥା ଅପବ୍ୟୟ– unnecessary expenditure

.. ସେ ଯାହା କମଉଛନ୍ତି, ସବୁ ଘାଇ ମୁହଁରେ ଯାଉଛି ।

ଘାଇ ମୁହଁକୁ ପାଳବିଣ୍ଡା – ବଡ଼ ବିପଦ ପାଇଁ ସାମାନ୍ୟ ପ୍ରତିକାର– marginal resistance for a calamity

.. ଇନ୍ଦିରା ଆବାସ ଘର କେଇଟା କରିଦେଲେ କ'ଣ ବାତ୍ୟାର ପ୍ରତିକାର ହୋଇଗଲା ! ଏ ତ ଘାଇମୁହଁକୁ ପାଳବିଣ୍ଡା ସମାନ ।

ଘାଉଁରି ଖାଇବା – ବୁଦ୍ଧି ହଜିଯିବା,ମଥା ଘୁରିବା– to lose one's wit

.. ହଠାତ୍ ବାପାଙ୍କ ମୃତ୍ୟୁ ଖବର ପାଇ ସେ ଘାଉଁରି ଖାଇଗଲେ ।

ଘାଟ କଉଡ଼ି – ନଦୀପାରିହେବାର ଡଙ୍ଗାଭଡ଼ା– ferry charge

.. ଘାଟ କଉଡ଼ି ନ ଦେଇ କୁଆଡ଼େ ଯାଉଛ ?

ଘାଟ ଖରଚ – ଶବ ଦାହ ଖରଚ– expenses for cremation

.. ଘାଟ ଖରଚ ବାବଦକୁ ପାଞ୍ଚଶହ ଟଙ୍କା ଲାଗିବ ।

ଘାଟ ସମ୍ଭାଳିବା – ଘର ଚଳେଇବା– to maintain a family

.. ବାପ ହାତରେ ଟଙ୍କା ନାହିଁ । ଘାଟ ସମ୍ଭାଳିବା ଦାୟିତ୍ୱ ପୁଅ ଉପରେ ।

ଘାଟାହେବା – କ୍ଷତି ସହିବା– to bear the loss

.. ଏ ବର୍ଷ ବ୍ୟବସାୟରେ ତାଙ୍କର ବହୁତ ଘାଟା ହେଇଛି ।

ଘାଟି ଯିବା – ବିପଦ କଟିଯିବା– out of danger

.. ତା'ଙ୍କର ତିନିଟା ଘାଟି ଗଲାଣି, ଆଉ ଭୟ ନାହିଁ ।

ଘାଣ୍ଟି ହେବା – ହଇରାଣ ହରକତ ହେବା, ଯନ୍ତ୍ରଣା ଭୋଗିବା– to be troubled/harassed

.. ବୁଢ଼ାଟା ବହୁତ ଘାଣ୍ଟି ହେଲାଣି, ଏଥର ଖସିଯିବ ।

ଘାସ କଟେଇବା – ତଳିତଳାନ୍ତ କରିବା– to see that one is ruined

.. ମୁଁ ଯଦି ତା'କୁ ଘାସ ନ କଟେଇଛି, ମୋ ନାଁ ରାମ ନୁହଁ ।

ଘାସ କାଟିବା – କ୍ଷତି ସହିବା– to be reduced to penury

.. ତା' ସହିତ ବେପାର କରିଥିଲେ । ଏବେ ଘାସ କାଟୁଛନ୍ତି ।

ଘାସ କାଟି ଯାଇ ପରିଚ୍ଛା ପଣ – ଅନଧିକାର ଚର୍ଚ୍ଚା– undue interference

.. ଆମ ଘରେ ଏ ସବୁ ଚଳିବନି । ଘାସ କାଟି ଯାଇ ପରିଚ୍ଛା ପଣ ଦେଖେଇବ ନିଜ ଘରେ ।

ଘାସକୁ ମୋଟ ଗଛକୁ ଛୋଟ – ଉଚିତ ଭାବେ ଖାପ ନ ଖାଇବା– not properly adjusted

.. ଯେତିକି କନା ଆଣିଛ, ସେ ଘାସକୁ ମୋଟ ଗଛକୁ ଛୋଟ । ପାଇବ କୋଉଠୁ ?

ଘିଅ ବସିବା – ଘିଅ କଠିନ ଅବସ୍ଥାକୁ ଆସିବା– to settle down

.. ଘିଅ ବସିଗଲାଣି । ଏଥର ନିଗାଡ଼ି ଦିଅ ।

ଘିଅ ବାହାର କରିବା – ମଜା ବାହାର କରିବା– to put one into trouble

.. ଦଉଡ଼େଇ ଦଉଡ଼େଇ ସେ ପିଲାଟାର ଘିଅ ବାହାର କରି ଦେଲେଣି ।

ଘିଅ ମାରିବା – ଘିଅ ତିଆରି କରିବା– to make ghee

.. ପଲେ ଗାଈ ରଖିଛନ୍ତି । ଘିଅ ମାରିବାରୁ ବି ଭଲ ପଇସା ହଉଛି ।

ଘିଅ ଘଡ଼ି ପିମ୍ପୁଡ଼ି ଖାଇବା – କାମ ମାରା ହେବା– spoilt work

.. ରୁହ, ସଂଧ୍ୟାବେଳକୁ ଯିବ । ନ ଗଲେ କ'ଣ ଘିଅ ଘଡ଼ି ପିମ୍ପୁଡ଼ି ଖାଇଯାଉଛି !

ଘୁଙ୍ଗା ସପନ – ମୂଲ୍ୟହୀନ କାର୍ଯ୍ୟ– useless work

.. ଘୁଙ୍ଗାସପନରେ ପେଟ ପୁରିଲାଣି ନା' ପୁରିବ ?

ଘୁଙ୍ଗୁଡ଼ି ମାରିବା – ଗଭୀର ନିଦ୍ରାରେ ଶୋଇବା– to snore/ to sleep soundly

.. ସେ ଘୁଙ୍ଗୁଡ଼ି ମାରିଲେ ତାଙ୍କ ପାଖେ କେହି ଶୋଇ ପାରିବେନି ।

ଘୁମେଇ ପଡ଼ିବା – ନିଦ୍ରା ଯିବା– to doze

.. କଥା ଶୁଣୁ ଶୁଣୁ ସେ ଘୁମେଇ ପଡ଼ିଲେ ।

ଘୁରେଇ ଫେରେଇ – ବୁଲେଇ ବଙ୍କେଇ, ବାରବାର– by changing course/ repeatedly

.. ସେଇ ଗୋଟିଏ କଥାକୁ କେତେବାର ଘୁରେଇ ଫେରେଇ କହୁଥିବ ?

ଘୁଷ୍ ଖାଇବା – ଲାଞ୍ଚ ଗ୍ରହଣ କରିବା– to take bribe

.. ଘୁଷ୍ ଖାଇ ଖାଇ ତାଙ୍କ ଅଭ୍ୟାସ ବଢ଼ିଗଲାଣି ।

ଘୁଷ୍ ଖୋର – ଲାଞ୍ଚୁଆ– corrupt/briber

.. ସେ ଘୁଷ୍‌ଖୋର ଲୋକଟାକୁ ସାବଧାନ ଥିବ ।

ଘୁଷୁରୀକି ପାଚିଲା କଦଳୀ/ ଘୁଷୁରୀ ପାଟିରେ ଘିଅ – ଯାହା ପାଇଁ ଯିଏ ନୁହଁ– misfit

.. ବିଧର୍ମୀଟାଏ ! ସିଏ କି ଜାଣିବ ମହାପ୍ରସାଦର ମହତ ? କହନ୍ତିନି, ଘୁଷୁରୀ କି ପାଚିଲା କଦଳୀ !

ଘୁଷୁରୀ ପେଟରୁ ମାଣିକ – ଅଯାଗାରେ ମୂଲ୍ୟବାନ ପଦାର୍ଥ – a jewel from a wrong place

.. ନୀଚ ଜାତି ହେଉ ପଛେ, ଦେଶର ତ ନାଁ ରଖିଲା । ସେ ଘୁଷୁରୀ ପେଟରୁ ମାଣିକ ଟି !

ଘେନା ଘେନି – ପରସ୍ପର ସହିତ ଜଡିତ ହେବା – to be intimate

.. ସେ ଦୁହିଁଙ୍କ ଘେନାଘେନି ପ୍ରୀତି କଥା କିଏ ନ ଜାଣେ !

ଘୋଡ଼ା ଡ଼ିମ୍ବ – ମୂଲ୍ୟହୀନ, କିଛି ନୁହେଁ, ଅବାସ୍ତବ ବସ୍ତୁ– nothing/ worthless/ an unreal thing

.. ତାଙ୍କ ପଛେ ପଛେ ଯାଉଥା । ଘୋଡ଼ା ଡ଼ିମ୍ବ ମିଳିବ ।

ଘୋଡ଼ା ପରି ହସିବା – ନିର୍ଲଜ୍ଜ ଭଳି ହସିବା– to laugh shamelessly

.. ସଦାବେଳେ ଘୋଡ଼ା ପରି ହସୁଛ କାହିଁକି ?

ଘୋଡ଼ା ଦୌଡ଼ – ହଇରାଣ– continuing work

.. ସକାଳ ପହରୁ ତା'ଙ୍କର ଘୋଡ଼ା ଦୌଡ଼ ଲାଗିରହିଛି, ସରୁନି ।

ଘୋଡ଼ା ଛ'ଟଙ୍କାକୁ ଦାନା ନ'ଟଙ୍କା – ଅଳ୍ପ ଲାଭରେ ଅଧିକ ଖର୍ଚ୍ଚ କରିବା– to incur expenditure disproportionate to the benefits

.. ଦରଦାମ୍ ବଢ଼ିଗଲାଣି । ଘୋଡ଼ା ଛ'ଟଙ୍କାକୁ ଦାନା ନ'ଟଙ୍କା । ଚଳିବ କେମିତି ?

ଘୋଡ଼ା ମୁହାଁ – ଅଶୁଭ ଲୋକ, ଅପଦଶା– inauspicious man

.. ସେ ଘୋଡ଼ା ମୁହାଁଟାକୁ କିଏ କାହିଁକି ସମର୍ଥନ କରିବ ?

ଘୋଡ଼ା ଦେଇ ସରା – ଦାମୀ ଜିନିଷ ଦେଇ ସାମାନ୍ୟ ବସ୍ତୁ ଆଣିବା– marginal benefit at a high cost

.. ନିଜେ ତ ଘୋଡ଼ା ଦେଇ ସରା ଆଣିଛ । କହୁଛ କାହାକୁ ?

ଘୋଡ଼ା ଘାସ କାଟିବା – ଅସମ୍ମାନ କାର୍ଯ୍ୟ – to do heinous work

.. ମୁଁ କ'ଣ ତମ ଘରେ ରହିଛି ଘୋଡ଼ା ଘାସ କାଟିବା ପାଇଁ ?

ଘୋର କଳି – ଅନର୍ଥ କାଳ, ଅଧର୍ମର ଯୁଗ– darkest hour/ most irreligious time

.. ଘୋର କଳି, ଆଉ ଏ ଯୁଗରେ ଚଳିହେବନି ।

ଘୋଷା ବଳଦ – ଅର୍ଥ ନବୁଝି ପରିଶ୍ରମ କରିବା– to do something by mote

.. ପିଲାଟା ତ ଘୋଷା ବଳଦ । କେମିତି ସେ ପାଶ୍ କରିବ ?

# ଚ

ଚଉଆଖିଆ ହେବା – ଚାରିଆଡ଼କୁ ନଜର ରଖିବା– to be cautious/ to be alert

.. ବେଙ୍କକାଳ ଭଲ ନୁହେଁ । ଟିକିଏ ଚଉଆଖିଆ ହୁଅ ।

ଚଉକା ଦେବା – ଲିପିବା– sweeping with cowdung

.. ଗୁରୁବାର ସକାଳେ ଚଉକା ଦିଆଯାଏ ।

ଚଉଦ ଭୁବନ ଦେଖାଇବା – କଷ୍ଟ ଭିତରକୁ ଠେଲିଦେବା– to put into trouble

.. ତା' ସାଥିରେ ସାଙ୍ଗ ହଉଥା, ଚଉଦ ଭୁବନ ଦେଖେଇ ଦବ ।

ଚକର କାଟିବା – ବୁଲାଚଲା କରିବା– movement with a purpose

.. ଚକର କାଟିଲେ କ'ଣ ତା' ଭେଟ ପାଇଯିବ ?

ଚକର ଖାଇବା – ଘୂରାଇବା– reeling

.. କଥାଟା ଶୁଣି ତା' ମୁଣ୍ଡଟା ଚକର ଖାଇଗଲା ।

ଚକର ଦେବା – ଘୂରିବା– whirling round

.. ଉଡ଼ାଜାହାଜ ମୁଣ୍ଡ ଉପରେ ଚକର ଦେଉଛି ।

ଚକେଗଲେ ବାରହାତ – ବାହାନା ଦେଖେଇ ଖସିଯବା, ଦୃଷ୍ଟିରୁ ଅନ୍ତରହେବା– to escape with an excuse

.. ଚକେଗଲେ ବାରହାତ, ତା'ଙ୍କ ଦେଖା ସହଜେ ମିଳିବ !

ଚଖାଟାଏ – ବାଛୁଥିବା ଲୋକ– choosy

.. ସେଇଟାତ ଚଖାଟାଏ ! ତା'କୁ କ'ଣ ଝିଅ ଦେବ ?

ଚଟୁ କି ଜାଣେ ଅଲଣା ଲୁଣ – ବେରସିକ ସ୍ୱାଦର ମହତ୍ୱ ଜାଣେନି– to be insensitive

.. ଆପାତ୍ରରେ କାହିଁକି ସେତକ ଦଉଛ ? ଚଟୁକି ଜାଣେ ଅଲଣା ଲୁଣ !

ଚଟୁ ବୁଲେଇବା – ଭଲଲୋକ ଦେଖେଇହବା–

.. ଆମ ଘର କଥାରେ ତମେ କାହିଁକି ଚଟୁ ବୁଲଉଛ ?

ଚମ୍ପଟ ମାରିବା – ଠକିକରି ପଳାଇଯିବା– to abscond

.. ତମେ କାହାକୁ ଜଗିଛ ? ସେ ତ ଚମ୍ପଟ ମାରିଲାଣି ।

ଚଢ଼ା ବଜାର – ଦର ବଢ଼ିବା– high price/ increasing price

.. ଚଢ଼ା ବଜାର ଯେମିତି ହେଇଛି, ଶହେ ଟଙ୍କାରେ କି ପରିବା ଆଣିବ ?

ଚଢ଼ା କଥା – ରକ୍ଷ କଥା– harsh words

.. ଏମିତି ଚଢ଼ା କଥା ନ କହି ମିଠା କଥାରେ ତା'କୁ ବୁଝେଇଦିଅ ।

ଚଢ଼ା ଗଳା – ରାଗିବା, କର୍କଶ ବା ଉଗ୍ର ସ୍ୱର– harsh tone/ angry mood

.. ଭଦ୍ରଲୋକ ସାଙ୍ଗରେ ଚଢ଼ା ଗଳାରେ କଥାବାର୍ତ୍ତା କରନି ।

ଚଢ଼ା-ଉତରା – ପାଲାର ପ୍ରଶ୍ନ ଉତ୍ତର– argument

.. ଦୁଇ ଗାୟକଙ୍କର ଚଢ଼ା-ଉତରା ବେଶ୍ ଜମିଲା ।

ଚଢ଼ଉ କରିବା – ଆକ୍ରମଣ କରିବା– to attack

.. ରାତିରେ ଚଢ଼ଉ କଲେ ବୋଲି ସେମାନେ ଜିତିଗଲେ ।

ଚଢେ଼ଇ ଚିରଗୁଣୀ ପେଟକୁ ଚିହ୍ନିବା – ମନର କଥା ଜାଣିବା– to be knowledgeable about others

.. ସେ ଚଢେଇ ରିରଗୁଣୀ ପେଟ ଚିହ୍ନିଲା ଲୋକ । ତା'ଙ୍କ ପାଖକୁ ଯାଅ, ନିଶ୍ଚୟ ସାହାଯ୍ୟ ମିଳିବ ।

ଚତୁର୍ଭୂଜ ହେବା – ଉତ୍ଫୁଲ୍ଲ ହେବା– to be cheerful

.. ସଭାରେ ନିଜର ପ୍ରଶଂସା ଶୁଣି ବନ୍ଧୁଜଣକ ଯେମିତି ଚତୁର୍ଭୂଜ ହେଲେ ତା' ଦେଖିବା କଥା ।

ଚମ ଉଠେଇବା – ମାଡ଼ ଦେବା– to beat severely

.. ଟଙ୍କା ନଦେଲେ ସେ ଚମ ଉଠେଇଦେବେ ।

ଚର ଲଗେଇବା – ଗୁପ୍ତଚରକୁ କାର୍ଯ୍ୟରେ ଲଗେଇବା– to employ a spy

.. ଚର ଲଗାଇଛନ୍ତି, ନିଶ୍ଚୟ ଅପରାଧୀ ଧରାପଡ଼ିବ ।

ଚର୍ବିତ ଚର୍ବଣ – ବାରମ୍ବାର ଆଲୋଚିତ ବିଷୟର ପୁଣି ଆଲୋଚନା– to analyse a matter repeatedly

.. କିଛି ନୂଆ କଥା କୁହନ୍ତୁ । ସେ ଚର୍ବିତଚର୍ବଣ କଥା ଆଉ ପକାନ୍ତୁନି ।

ଚର୍ବି ଲାଗିବା – ଧନ ଗର୍ବ, ହୃଷ୍ଟପୁଷ୍ଟ ଦେଖାଯିବା– to be healthy/ pride of wealth

.. ତା' ଦେହରେ ଚର୍ବି ଲାଗିଯିବାରୁ ସେ ଏମିତି ବେଖାତିର କରୁଛି ।

ଚର୍ବି ମୁଣ୍ଡକୁ ଉଠିବା – ରାଗି ଯିବା– to get angry

.. ଏଇନେ ଚର୍ବି ତା' ମୁଣ୍ଡକୁ ଉଠିଛି । ତାକୁ କିଛି କୁହନି ।

ଚଳୁକରିବା – ଆତ୍ମସାତ କରିବା– to misappropriate

କଲେଜ ପାଣ୍ଠିକୁ ସେ ପୁରାପୁରି ଚଳୁ କରିସାରିଛନ୍ତି ।

ଚଷା ଭୂଷା – ଗାଁର ଚାଷୀ ତଥା ଅଶିକ୍ଷିତ ଲୋକ– rustic

.. ଚଷାଭୂଷା ଲୋକ ସିଏ । ଆଇନ କଥା କେମିତି ବୁଝିବ ?

ଚକ୍ଷୁ ଲଜ୍ଜା – ଅନ୍ୟର ଉପସ୍ଥିତିରେ କିଛି କରିବାକୁ କୁଣ୍ଠାବୋଧ କରିବା– scruple/feeling of shame in presence of others

.. ତା'ର କ'ଣ ଚକ୍ଷୁଲଜ୍ଜା ନାହିଁ ? କେମିତି ଏତେ ଲୋକଙ୍କ ଆଗରେ ସେ କହିବ ?

ଚକ୍ଷୁସ୍ଥିର ହେବା – ଭୟ ବା ବିସ୍ମୟରେ ହତବାକ୍ ହେବା– be dumb-founded/ frightened

.. ଘର ଦୁଆରେ କଟାମୁଣ୍ଡ ଦେଖି ତାଙ୍କ ଚକ୍ଷୁସ୍ଥିର ହୋଇଗଲା ।

ଚକ୍ଷୁଦାନ ଦେବା – ଜ୍ଞାନ ଦେବା– to be enlighted

.. ଗୁରୁ ଚକ୍ଷୁଦାନ ଦେବାରୁ ମୂଢ଼ ମହାପୁରୁଷରେ ପରିଣତ ହେଲା ।

ଚକ୍ଷୁରୁ ପରଦା ହଟିବା – ଭୁଲ ବୁଝି ପାରିବା– understand one's own mistake

.. କଥାଟା ଶୁଣିବା ପରେ ତାଙ୍କ ଚକ୍ଷୁରୁ ପରଦା ହଟିଗଲା ।

ଚକ୍ଷୁ ଲେଉଟିବା – ମୃତ୍ୟୁ ଆସନ୍ନ ହେବା– nearer to death

.. ଚକ୍ଷୁ ଲେଉଟିଲାଣି, ଆଉ ବେଶି ସମୟ ନାହିଁ । ଯୋଗାଡ଼ କର ।

ଚକ୍ଷୁ କପାଳକୁ ଉଠିଯିବା – ବିସ୍ମିତ କିମ୍ବା ଭୟଭୀତ ହେବା– be astonished/ be frightened

.. ଆଖି ଆଗରେ ଚାରି ଲୋକଙ୍କ ମୃତ୍ୟୁ ଦେଖି ତାଙ୍କ ଚକ୍ଷୁ କପାଳକୁ ଉଠିଯାଇଥିଲା ।

ଚକ୍ଷୁକର୍ଣ୍ଣ ଖୋଲା ରଖିବା – ସଜାଗ ବା ସତର୍କ ରହିବା– be alert

.. ଆଜି ରାତିଟା ଚକ୍ଷୁକର୍ଣ୍ଣ ଖୋଲା ରଖିବ । କେତେବେଳେ କ'ଣ ଘଟିପାରେ !

ଚକ୍ଷୁକର୍ଣ୍ଣବନ୍ଦ କରିବା – ନିର୍ଲିପ୍ତ ରହିବା– to be calm and quite/ to be silent

.. ଯାହାକିଛି ଘଟୁଛି ଘଟୁ । ତମେ ଚକ୍ଷୁ କର୍ଣ୍ଣ ବନ୍ଦ କରି ସାଧନା କର ।

ଚକ୍ଷୁ ଖୋଲିଯିବା – ହୃଦ୍ ବୋଧ ହେବା, ଜ୍ଞାତ ହେବା– becoming alive to the reality

.. ପୁରା ଘଟଣାଟି ଶୁଣି ସାରିଲା ପରେ ତା'ଙ୍କର ଚକ୍ଷୁ ଖୋଲିଗଲା ।

ଚକ୍ଷୁ ଛଳ ଛଳ ହେବା – ଆଖିରେ ଲୁହ ଆସିବା– make eyes tearful

.. ମୃତ୍ୟୁ ଖବର ପାଇବା ପରେ ତା'ଙ୍କ ଚକ୍ଷୁ ଛଳ ଛଳ ହୋଇଉଠିଲା ।

ଚକ୍ଷୁ ଝଲସିବା – ବିସ୍ଫାରିତ ହେବା, ଉତ୍‌ଫୁଲ୍ଲିତ ହେବା– eyes blooming with joy

.. ଝିଅଟିର ରୂପ ଦେଖି ତା'ର ଚକ୍ଷୁ ଝଲସି ଉଠିଲା ।

ଚକ୍ଷୁ ଫିଟେଇ ଦେବା – ସଚେତନ କରିବା– to be conscious

.. ଦୀର୍ଘଦିନ ଧରି ସେ ଅନ୍ଧାରରେ ଥିଲେ । ଆଜି ବୋହୂଟା ତାଙ୍କ ଚକ୍ଷୁ ଫିଟେଇଦେଲା ।

ଚକ୍ଷୁ ବୁଜି ରହିବା – ନିର୍ଲିପ୍ତ ରହିବା– to be silent/ unmoved

.. ଚକ୍ଷୁବୁଜି ରହିଲେ ଦୁନିଆଟାକୁ ଚିହ୍ନିବ କେମିତି ?

ଚକ୍ଷୁମାରିବା – ଅଶ୍ଳୀଳ ଇଂଗିତ ଦେବା– eve teasing

.. ଚକ୍ଷୁମାରିଥିବାରୁ ଅଧ୍ୟକ୍ଷ ଛାତ୍ରଟିକୁ ହଜାର ଟଙ୍କା ଜୋରିମାନା କରିଛନ୍ତି ।

ଚକ୍ଷୁରୁ ଜୁଳୁ ଜୁଳିଆ ବାହାରିବା – କ'ଣ କରିବ କିଛି ବୁଝି ନ ପାରିବା– to be nonplussed by grave problems

.. ବାବାର ମୃତ୍ୟୁରେ ପୁଅର ଚକ୍ଷୁରୁ ଜୁଳୁଜୁଳିଆ ବାହାରିଗଲା ।

ଚକ୍ଷୁଦେଖା – ପ୍ରମାଣ ସହିତ– standing proof

.. ଚକ୍ଷୁଦେଖା କଥା ନିଶ୍ଚୟ ବିଶ୍ୱାସ ଯୋଗ୍ୟ ।

ଚାଖିହେବା – ଅତି ବାଛିବା– too much choosy

.. ଏତେ ଚାଖି ହଉଛ କ'ଣ ? ଜଣକୁ ତ ସମର୍ଥନ କରିବ ।

ଚାଟଘର ପୁଅ ଚାଟ – ବୃତ୍ତିକୁ ନେଇ ଆଗେଇବା– to honour one's profession

.. ସେ ଢ଼େର ଉନ୍ନତି କରିବ । କଥାରେ କହିଛି, ଚାଟ ଘର ପୁଅ ଚାଟ ।

ଚାନ୍ଦ ହାତରେ ପାଇବା – ଦୁର୍ଲ୍ଲଭ ଜିନିଷ ମିଳିବା– getting rare things

.. ବାରବର୍ଷ ପରେ ପୁଅ ହେଲାନି ଯେ ସେ ଚାନ୍ଦ ହାତରେ ପାଇଲେ ।

ଚାନ୍ଦ ମୁହଁା – ସୁନ୍ଦର ମୁଖ, ସୁନ୍ଦରୀ– beautiful woman/ nice face

.. କନ୍ୟାଟି ଚାନ୍ଦମୁହାଁ, କିଏ ତା'କୁ ବାରିବ !

ଚାନ୍ଦା ଉଠେଇବା – ମୋଫତ ଖାଇବା– eat without labour

.. ସେ ଅନ୍ୟ ଉପରୁ ଚାନ୍ଦା ଉଠେଇବା ଲୋକ । ତା'କୁ ଖଟିବାକୁ କହୁଛ ?

ଚାପା ପଡ଼ିବା – ଦବିଯିବା– be suppressed

.. ତା'ଙ୍କ କେଶ୍‌ଟା ଯାହା ହେଉ ଚାପା ପଡ଼ିଗଲା ।

ଚାପା ପଡ଼ିବା – ଆଲୋଚନାର ବାହାରେ ରହିବା– out side the discussion

.. ଦି'ଜଣଙ୍କ ଝଗଡ଼ାରେ ମୋ କଥାଟା ଚାପା ପଡ଼ିଗଲା ।

ଚାପାଚାପି – ଗୋପନ– keeping secret

ଏ ଘଟଣାରେ ଏତେ ଚାପାଚାପି କରିବାଟା ଠିକ ନୁହେଁ ।

ଚାପିଦେବା – ଗୋପନ ରଖିବା– to suppress

.. ସବୁ ଶୁଣିବା ପରେ ମଧ୍ୟ ପୋଲିସ ଘଟଣାକୁ ଚାପିଦେଲା ।

ଚାରା ନ ପାଇବା – ଉପାୟ ନ ପାଇବା, ଗତି ନ ପାଇବା– getting no plea

.. ହଠାତ୍ ଆଖି ଆଗରେ ଶିକ୍ଷକଙ୍କୁ ଦେଖି ଦୁଷ୍ଟ ପିଲାଟି କେମିତି ଖସିବ ବୋଲି ଚାରା ପାଇଲାନି ।

ଚାରି ଦଉଡ଼ି କଟା – ବିଶୃଙ୍ଖଳ, ଦାୟିତ୍ୱ ହୀନ– a vagabond/ an irresponsible

.. ସେ ତ ଗୋଟଏ ଚାରି ଦଉଡ଼ି କଟା, ତା'କୁ ଏତେ ଦାୟିତ୍ୱ ଦିଅନି ।

ଚାରିଚକ୍ଷୁର ମିଳନ ହେବା – ପ୍ରଥମ ଦର୍ଶନରେ ପ୍ରେମ– love at first sight

.. ଚାରିଚକ୍ଷୁର ମିଳନ ପୂର୍ବରୁ ହୋଇ ସାରିଥିଲା । ଏବେ ଖାଲି ହାତଗଣ୍ଠି ପଡୁଛି ।

ଚାରିହାତରେ ଖାଇବା – ପ୍ରଚୁର ପରିମାଣରେ ଖାଇବା – eating too much/ taking bribe

.. ଭୋଜିରେ ସେ ଯେମିତି ଚାରି ହାତରେ ଖାଇଲେ ଦେଖିବା କଥା ।

ଚାରେଣୀକୁ ଅଧୁଲି – ଟିକିନିଖି ହିସାବ ରଖିବା– keeping upto date account

.. ଚାରେଣୀକୁ ଅଧୁଲି, କେହି କାହାକୁ ପଇସାଟିଏ ଛାଡ଼ିବା ଲୋକ ନୁହଁନ୍ତି ।

ଚାଳିଶା ଧରିବା – ଦୃଷ୍ଟି ଶକ୍ତି କ୍ଷୀଣ ହେବା– less of eye power

.. ଚାଳିଶି ଟପିଲାଣୀ, ନିଶ୍ଚୟ ଚାଳିଶା ଧରିବ ।

ଚାଷ ତରତର ବଣିଜ ମଠ – ବୁଝି ସୁଝି ଆଗେଇବା– improve slowly

.. ଯାହା କିଛି କରିବ ବୁଦ୍ଧି ବିଚାରି କର । ହଁ, ମନେରଖିବ, ଚାଷ ତରତର ବଣିଜ ମଠ । କାମରେ ଆସିବ ।

ଚାଷବାସ କରିବା – କୃଷିକର୍ମ କରି ବଂଚିବା– depend on farming

.. ଗ୍ରାମରେ ରହିଲେ ଚାଷବାସ କରିବାକୁ ହିଁ ପଡ଼ିବ ।

ଚାଲ ମାରିବା – ବଢ଼େଇ କରିବା– playing tactics

.. ସେ ଯେମିତି ଚାଲ ମାରି ଚାଲିଛି, କେହି ତା'ର ଟେର ପାଉନାହାନ୍ତି ।

ଚାଲ ଚଲେଇବା – ଫନ୍ଦି ଫିକର କରିବା– stratagem/ febricating plot

.. ତମେ ଏକା ଚାଲ ଚଳେଇ ଜାଣ ! ମତେ କ'ଣ ବୋକା ପାଇଲେ ? ମୁଁ ବୁଝି ପାରିବିନି ?

ଚାଲି ନ ଜାଣି ବାଟର ଦୋଷ – ନିଜର ଅଜ୍ଞତାକୁ ଘୋଡ଼ାଇବାକୁ ଯାଇ ଅନ୍ୟଉପରେ ଦୋଷ ଲଦିବା– to shift blame for one's own fault

.. ପ୍ରଥମେ ନିଜକୁ ସଂଶୋଧନ କର । ଚାଲି ନଜାଣି ବାଟର ଦୋଷ ଦିଅନି ।

ଚାଲିଲା ଶଗଡ଼ରେ ହାତଦେବା – ଅତି ଦୁଷ୍ଟ– very naughty

.. ତା'କୁ ସମ୍ଭାଳି ହବନି । ସେ ଚାଲିଲା ଶଗଡ଼ରେ ହାତ ଦେବା ପିଲା ।

ଚିକଣିଆ ଭଣ୍ଡାରୀ – ମଧୁର କଥା କହି ପଛରେ ଅନିଷ୍ଟ କରୁଥିବା ବ୍ୟକ୍ତି – to be a conman

.. ଚିକଣିଆ ଭଣ୍ଡାରୀ ସିଏ ! ଦେଖି ଚାହିଁ ତା'ସାଙ୍ଗରେ ମିଶିବୁ ।

ଚିଙ୍ଗୁଡ଼ି ଚିପିଲେ ମୁଣ୍ଡରେ ପିତ୍ତ – ଦୁର୍ବଳ– weak/ innocent

.. ଚିଙ୍ଗୁଡ଼ି ଚିପିଲେ ମୁଣ୍ଡରେ ପିତ୍ତ । ତା'ପାଠ ମୁଁ ଜାଣିନି ?

ଚିତାକାଟିବା – ଠକିବା– to cheat, to play one false

.. ମ୍ୟାନେଜର ଲକ୍ଷେ ଟଙ୍କା ଧରି ମାଲିକକୁ ଚିତାକାଟି ଫେରାର ।

ଚିତ୍ ପଟାଙ୍ଗ – ଧରାଶାୟୀ, ଧ୍ୱଂସ– defeated/ destroyed

.. ଏଇ ବାକ୍ ବୁଦ୍ଧିରେ ତମେ ଚିତ୍‌ପଟାଙ୍ଗ ମାରିଗଲ ?

ଚିତ୍ରଗୁପ୍ତର ପାନ୍‌ଜି – ଜନ୍ମ-ମରଣ ହିସାବ ଖାତା– life and death register/ account

.. ଚିତ୍ରଗୁପ୍ତର ପାନ୍‌ଜିରେ ତମ ନାଁଟା ଚଢ଼ିଯାଇଛି ।

ଚିନିବୁହା ବଳଦ – ଫଳଲାଭ ଆଶା ନ ରଖି କେବଳ କାମ କରିବା– to work beautifully without expecting rewards or returns

.. ସେ ତ ଗୋଟାଏ ଚିନିବୁହା ବଳଦ । ସେ କେମିତି ଜାଣିବ, ତା'କୁ କାହିଁକି ଏ ଦାୟିତ୍ୱ ଦିଆଯାଇଛି ।

ଚିନି କଣ୍ଢେଇ – ପରିଶ୍ରମ କରି ନ ପାରିବା– imaginary shape/ soft

.. ଏତିକି ପରିଶ୍ରମ କରି ପାରିବୁନି ? ତୋ ଦେହଟା କ'ଣ ଚିନି କଣ୍ଢେଇ !

ଚିହ୍ନା ପଡ଼ିବା – ଧରା ପଡ଼ିବା– recognised/ specified

.. ଅଯଥାଟାରେ ଆପଣ ଚିହ୍ନା ପଡ଼ିଲେ, ଅଥଚ ଅନ୍ୟମାନେ ଟଙ୍କା ନେଲେ !

ଚିହ୍ନାଜଣା – ପରସ୍ପର ଜଣାଶୁଣା, ପରିଚୟ ଆଳାପ– familiar

.. ସେ ଦୁହିଁଙ୍କର ଚିହ୍ନାଜଣା ଅଛି, କିଛି ଅସୁବିଧା ହବନି ।

ଚୁଗୁଲି କରିବା – କୁତ୍ସାରଟନା କରିବା– to blame

.. ଚୁଗୁଲି କରିବା ହେଉଛି ତା'ଙ୍କର ଗୋଟାଏ ବଦଭ୍ୟାସ ।

ଚୁଗୁଲିଖୋର – ମହାକପଟୀ – backbiter/ slanderer

.. ସେଇଟା ଚୁଗୁଲିଖୋରଟାଏ । ତା'କୁ କ'ଣ ବିଶ୍ୱାସ କରିବ ?

ଚୁଟ୍‌କି ମାରି ଉଡ଼ାଇବା – ବେଖାତିର କରିବା– to be careless/ paying no heed

.. ତା'କୁ କହି କିଛି ଲାଭ ହେବନି । ସେ ଚୁଟ୍‌କି ମାରି ଉଡ଼େଇଦବ ।

ଚୁଟି ଧରାଧରି – ଅଧିକ ଯୁକ୍ତି କରିବା, ପରସ୍ପରକୁ ଦୋଷାରୋପ– pointout each other's fault

.. ଟଙ୍କା ବହୁତ ମିଳୁଛି । ନିଶ୍ଚୟ ସେମାନେ ଚୁଟି ଧରାଧରି ହେବେ ।

ଚୁଟି ଦେଖିବାକୁ ନ ମିଳିବା – ଚହ୍ନ ବର୍ଣ୍ଣ ନ ପାଇବା– getting no mark/clue

.. ଯାହାର ଚୁଟି ଦେଖିବାକୁ ମିଳୁନି, ତା'କୁ କ'ଣ ଧରିବ ?

ଚୁଟି ଧରିବା – ଅଡ଼ି ବସିବା– demanding

.. ସେ ଠିକଣା ବେଳେ ଚୁଟି ଧରିବେ । ଛାଡ଼ିବା ଲୋକ ନୁହଁନ୍ତି ।

ଚୁଟି କାଟିବା – କ୍ଷତି କାରକ– put someone into trouble

.. ସେ ଚୁଟି କାଟିବା ଲୋକ । ତା'କୁ ବିଶ୍ୱାସ କରିବ ?

ଚୂନକାଳି ବୋଳିବା – କଳଙ୍କ ରଟନା କରିବା– put a person to shame

.. ଝିଅଟା ଘର ଛାଡ଼ିଲାନି ଯେ ବାପା ମା'ଙ୍କ ମୁହଁରେ ଚୂନକାଳି ବୋଳି ଦେଇଗଲା ।

ଚୁପ୍ ଚାପ୍ – ନିଶ୍ଚେଷ୍ଟ, ହାତ ବାନ୍ଧି ବସିବା– doing nothing/ being idle

.. ଚୁପ୍ ଚାପ୍ ହୋଇ ବସିବାକୁ କାହିଁକି ଆସିଛ ?

ଚୁପ୍ କରାଇବା – ନୀରବ କରାଇବା– keep silent/ not to proceed

.. ଅନ୍ୟକୁ ଜୋର୍ କରି ଚୁପ୍ କରାଇବା ହେଉଛି ତା'ଙ୍କର ପ୍ରକୃତି ।

ଚୂରମାର ହେବା – ଭାଙ୍ଗିଯିବା, ଧ୍ୱଂସ ହେବା– pulverised/ broken

.. ହାତରୁ କାଚ ଗ୍ଲାସଟା ପଡ଼ି ଚୂରମାର ହେଇଗଲା ।

ଚୁଲବୁଲ୍ – ସୁନ୍ଦର, ସ୍ୱାସ୍ଥ୍ୟବାନ– healthy/ handsome

.. ପିଲାଟାର କି ଚୁଲବୁଲ ଚେହେରା !

ଚୁଲିରେ ଯିବା – ନଷ୍ଟହେବା, ବେକାର ହେବା– spoiled/ not to speak of

.. ଫେଲ ହେବାରୁ ତା'ଙ୍କର ସବୁ ପରିଶ୍ରମ ଚୁଲିରେ ଗଲା ।

ଚୁଲି ମୁଣ୍ଡକୁ ଆଶ୍ରାକରିବା – remain at a place only for getting a meal

.. ଚୁଲି ମୁଣ୍ଡକୁ ଆଶ୍ରା କରିବା ଛଡା ତାଙ୍କର ଅନ୍ୟଗତି ନାହିଁ ।

ଚୁଲି ଫୁଙ୍କିବା– ରାନ୍ଧିବା–cook food

.. ଚୁଲି ଫୁଙ୍କି ଫୁଙ୍କି ତା'ର ଦିନ ଯାଉଛି ।

ଚୁଲି ଚାଳରେ ବାସ ପାଇବା – get shelter anyhow somewhere

.. ଆଗ ସେ ଚୁଲିଚାଳରେ ବାସ ପାଉ, ତା'ପରେ କହିବ ।

ଚୁଲି ଚାଳଯିବା – ସବୁ ଧ୍ୱଂସ ପାଇବା– destroyed

.. ଘର ପୋଡ଼ିରେ ତା'ଙ୍କର ଚୁଲି ଚାଳ ଯାଇଛି ।

ଚୁଲି ଚାଳ – ଖେତବାଡ଼ି ଏବଂ ଖାଦ୍ୟ ସଂସ୍ଥାନ– food and shelter

.. ତା'ର ନିଜର ତ ଚୁଲି ଚାଳ ନାହିଁ, ସେ ତମକୁ କେମିତି ଘରେ ରଖେଇବ ।

ଚେଇଁ ଶୋଇବ ଯିଏ ତା'କୁ ଉଠେଇବ କିଏ – ଜାଣି ଅଜଣା ହେବା– to avoid/ to pretend

.. ସିଏ ସବୁ ଜାଣେ, ତା'କୁ କାହିଁକି ପଚାରୁଛ ? କଥାରେ କହନ୍ତିନି, ଚେଇଁ ଶୋଇଥିବ ଯିଏ, ତା'କୁ ଉଠେଇବ କିଏ !

ଚେଇଁ ଉଠିବା – ଜାଗ୍ରତ ହେବା– to awake/ be alert

.. ସେନାପତିଙ୍କ ରଣହୁଙ୍କାରରେ ସୈନିକମାନେ ଚେଇଁ ଉଠିଲେ ।

ଚେତା ହଜିବା – ମୂର୍ଚ୍ଛା ହେବା– become senseless/ faint

.. ଦ୍ୱାର ମୁହଁରେ ଶବଟାକୁ ଦେଖି ତା'ଙ୍କର ଚେତା ହଜିଗଲା ।

ଚେତା ପଶିବା – ସତର୍କ ହେବା, ଜ୍ଞାନ ଉଦୟହେବା– to be alert/ aware of

.. ପୁଅର ଜେଲ୍ ପରଠୁଁ ବାପା ମା'ଙ୍କ ଚେତା ପଶିଲା ।

ଚେତା ଫେରିବା – ଜ୍ଞାନ ଫେରିବା– become conscious

.. ତିନି ଘଣ୍ଟା ଅଚେତ ରହିବା ପରେ ଏବେ ତା'ଙ୍କର ଚେତା ଫେରିଛି ।

ଚେରେଇଯିବା – ସ୍ୱାସ୍ଥ୍ୟର ଉନ୍ନତି– become healthy/ gain strength

.. ଚାକିରୀ ମିଳିବା ପରଠୁଁ ସେ ଭଲ ଚେରେଇ ଗଲାଣି ।

ଚେର କାଟିବା – ଭିତରେ ଭିତରେ କ୍ଷତି କରିବା– cause ruin

.. ତା'କୁ ବିଶ୍ୱାସ କରନି । ସେ ଚେର କାଟିବା ଲୋକ ।

ଚୋଖା ଚୋଖା କଥା – ମର୍ମଭେଦୀ କଥା– heart touching

.. ସେ ଏମିତି ଚୋଖା ଚୋଖା କଥା କହିଲା, ମୁଁ ପଳେଇ ଆସିବାକୁ ବାଟ ପାଇଲିନି ।

ଚୋରକୁ ମାନ କରିବା – ଅବିବେକୀ ଉପରେ ଅଭିମାନ– to place faith on the undeserving

.. ଯାହାତ ହେବାର ହେଲାଣି । ଆଉ କାହିଁକି ଧରୁଛ ? ଚୋରକୁ ମାନ କରି କ'ଣ ଖପରାରେ ଖାଇବ ।

ଚୋର ଧରିବା – ଚୋରର ସନ୍ଧାନ କରିବା– to search the thief

.. ଚୋର ଧରିବା ପାଇଁ କୁକୁର ପଠାଯାଇଛି ।

ଚୋରଗଲା ପୋଲିସ ଆସିଲା – ବିଳମ୍ବରେ ପ୍ରତିକାର ଚିନ୍ତା– to lock the stable when stead is stolen

.. ଚୋର ଗଲା, ପୋଲିସ ଆସିଲା - ଏ କଥା କିଏ ନ ଜାଣେ ? ତମ ଡ଼େରି ପାଇଁ ଏତିକି ଘଟିଲା ।

ଚୋର ମନ ଚୋର ଗଣ୍ଠିରେ – ଚରିତ୍ର ବଦଳିବା ଅସମ୍ଭବ– a guilty mind is always suspicious

.. କାହିଁକି ତା'କୁ ଧର୍ମବାଣୀ ଶୁଣଉଛ ? ଚୋରମନ ତ ଚୋର ଗଣ୍ଠିରେ । ସୁଯୋଗ ପାଇଲେ ସେ ଛାଡ଼ିବନି ।

ଚୋର ଘର ସବୁଦିନ ଅନ୍ଧାର ନ ଥାଏ – ସବୁଦିନ ଏକାଭଳିଆ ଯାଏନି– all days are not equal

.. ବ୍ୟସ୍ତ କାହିଁକି ହଉଛ ? ଚୋର ଘର ସବୁଦିନ ଅନ୍ଧାର ନଥାଏ । ସେ ଧରା ପଡ଼ିବ । ତମ ଜିନିଷ ତମେ ପାଇବ ।

ଚୋର ହେଇ ଚୋରିକରିବା, ଜଗୁଆଳି ହେଇ ଜଗିବା – ମାରାତ୍ମକ ପ୍ରକୃତିର, ଉଭୟ ପଟେ ଭଲେଇହବା– dangerous man/ similar approach to both side

.. ତା'ଙ୍କୁ କ'ଣ ନୂଆ ଦେଖୁଛ ? ସେ ଚୋର ହେଇ ଚୋରି କରନ୍ତି, ପୁଣି ଜଗୁଆଳି ହେଇ ଜଗନ୍ତି ।

ଚୋରା କାରବାର – ବେଆଇନ କାମ– blackmarketing/ lawless work

.. ଚୋରା କାରବାର କଥା ପୋଲିସ ଜାଣିପାରିଛି ।

ଚୋରା ପ୍ୟାକେଟ – ଗୁପ୍ତ ପ୍ୟାକେଟ– secret packet/ secret deal

.. ଚୋରା ପ୍ୟାକେଟରେ ସେ ଟଙ୍କା ରଖିଛି ।

ଚୋରା ଗଳି – ଅନ୍ଧକାର ଗଳି– unhygienic situation

.. ଚୋରା ଗଳିରେ ଲୋକଟାକୁ ଧରିବା କଷ୍ଟକର ।

ଚୋରାପଥ – ଗୋପନ ରାସ୍ତା– crevice/ blackmarketing

.. ଚୋରାପଥରେ ସବୁତକ ଟଙ୍କା ତା'ଙ୍କର ଆସୁଛି ।

ଚୋରାବାଲି – ବିପଦପୂର୍ଣ୍ଣ ସ୍ଥାନ– dangerous situation/ quick sand

.. ଚୋରାବାଲିରୁ ବିର୍ତ୍ତିଗଲେ ଆଉ କିଛି ଅସୁବିଧା ନାହିଁ ।

ଚୋର ମା' କାନ୍ଦିବା – ଅପରାଧକୁ ସ୍ୱୀକାର କରିବା– admit one's fault

.. ଚୋର ମା' କାନ୍ଦିବାରୁ ବୁଝି ପାରିଲନି ? ସେ ଟଙ୍କା ହଡ଼ପ କରିଛି ।

ଚୋରି ଚମାରି – ଚୋରି ଏବଂ ସେହି ଧରଣର ନୀଚ କାମ– theft/ mean work

.. ଚୋରି ଚମାରି କରି କେତେଦିନ ଚଳିବ ? ଏବେଠୁଁ ଚିନ୍ତାକର ।

ଚୌକାଠ ମାଡ଼ିବା – ପଦାର୍ପଣ କରିବା– to be present

.. ଆଜିଯାଏ ସେ ଆମ ଘର ଚୌକାଠ ମାଡ଼ିନି ।

ଚୌଦ ପୁରୁଷ ଉଦ୍ଧାର କରିବା – ଗାଳି ଦେବା– to blame/ reproach

ସ୍ତ୍ରୀ ଲୋକଟା ମହାଜନଙ୍କ ଚଉଦ ପୁରୁଷ ଉଦ୍ଧାର କରିଦେଲା ।

ଚୌଦ ପୁରୁଷ ଭାଗ୍ୟ – ମହା ସୌଭାଗ୍ୟ– good luck/ good fortune

.. ଏମିତି ବୋହୂ ପାଇବା ହଉଛି ଚୌଦ ପୁରୁଷର ଭାଗ୍ୟ ।

ଚଷୁକୁଟିବା – ଅସାର କଥାରେ ମନଦେବା– fruitless work

.. କାହିଁକି ସେଥିରେ ଚଷୁ କୁଟୁଛ ? କିଛି ଲାଭ ହେବନି !

## ଛ

ଛଇ ଛଟକ – ଆତ୍ମବଡ଼ିମା ପ୍ରଦର୍ଶନ– show one's highness/ pride

.. କଥା କଥାକେ ଛଇ ଛଇଟ ଦେଖାଇବା ତା'ର ଗୋଟାଏ ବଦଭ୍ୟାସ ।

ଛଇ ଦେଖେଇବା – ଛଳନା କରିବା– pretending

.. ଛଇ ନ ଦେଖେଇ ସିଧା ସଳଖ ଯାହା କହିବା କଥା କହ ।

ଛଇଳର ଗାଈ ଦୁହାଁଳ – ଅତିଟା ଦେଖେଇହେବା– too much showy

.. କିଛି ମିଳି ଯାଉଛି, ଦେଖଇ ହବନି କାହିଁକି ? ଛଇଳର ଗାଈ ଦୁହାଁଳ ପଡ଼ିଛି ।

ଛଉକା ବଳଦ – ଠକ, ହୁସିଆର– clever/ cheat

.. ଆରେ ସେ ତ ଛଉକା ବଳଦ । ତୁ କ'ଣ ପାଠ ପଢ଼େଇବୁ ?

ଛ'କୁ ନ' ନ'କୁ ଛ' କରିବା – ଅପଚୟ କରିବା– to spoil/to waste/ squander away

.. ପଇସାଟିଏ ରୋଜଗାର କରିବାର କ୍ଷମତା ନାହିଁ, ହେଲେ ଛ'କୁ ନ' ନ'କୁ ଛ'କରି ଜାଣେ ।

ଛକ କାଟିବା – ନକ୍ସା ଆଙ୍କିବା– to design

.. ଛକ କାଟି ସେ ଦେଖାଇଦେଲେ ତା'ଙ୍କର କେତେ ଜାଗା ।

ଛକା ପନ୍ଝା – ବଢ଼େଇ କରିବା– boasting/ cleverness

.. ସେ ମୁହଁରେ ଛକା ପନ୍ଝା ଖେଳିଲେ ବି କାର୍ଯ୍ୟ କ୍ଷେତ୍ରରେ ସେଇଆ ନୁହଁ ।

ଛକି ମାରିବା – ନିର୍ଦ୍ଦିଷ୍ଟ କରିବା, ଭୁଲ ଦେଖାଇବା– to mark/ to show one's fault

.. ଛକି ମାରିବା ପ୍ରକୃତି ଛାଡ଼ି କ୍ଷେତ୍ର ଉପରକୁ ଆସ ।

ଛଙ୍କା କଥା – ଖାଣ୍ଟି କଥା, ଠିକ୍ କଥା– true fact/ naked truth

.. ଛଙ୍କା କଥା ବୋଲିବାରେ ସେ ଧୂରନ୍ଧର ।

ଛଟପଟ ହେବା – ଅସ୍ଥିର ହେବା, ଆକୁଳ ହେବା– to be impatient or restless/ to be anxious

.. ଠିକ୍ ଜିନିଷଟା ନ ଜାଣିବା ପର୍ଯ୍ୟନ୍ତ ସେ ଛଟ ପଟ ହେଉଥିବେ ।

ଛଡ଼ାଛଡ଼ି – ବ୍ୟବଧାନ, ସମାଧାନ– solving/ to differentiate

.. ଭଦ୍ରଲୋକ ଛଡ଼ାଛଡ଼ି କରିବାରୁ କଥାଟା ଚଳିଗଲା ।

ଛଡ଼ା ଛଡ଼ା – ଫାଙ୍କା ଫାଙ୍କା, ଆନ୍ତରିକତା ହୀନ– heartless emotion/ no intimacy

.. ତା'ଭିତରେ କେମିତି ଗୋଟାଏ ଛଡ଼ାଛଡ଼ା ଭାବ ମୁଁ ଲକ୍ଷ୍ୟ କରୁଛି ।

ଛଣାଛଣି କଥା – କପଟ କଥା, ପ୍ୟାଚ ପକା କଥା – hypocricy/ deceitfulness

.. ସେ ଛଣାଛଣି କଥା କହିବା ଅଭ୍ୟାସ ଛାଡ଼ ।

ଛତରଖିଆ – ବାରବୁଲା– wandering beggar

.. ଛତରଖିଆମାନଙ୍କୁ ଥରେ ଘରେ ପୁରେଇଲେ ବସି କାନ୍ଦିବା ହିଁ ସାରହେବ ।

ଛତରରେ ପଶିବା – ଜାତି ହରେଇବା, ଅନ୍ନଛତ୍ରରେ ପଶିବା– attend public kitchen/ lose of caste

.. ସେ ଛତରରେ ପଶିଛି । ତା'କୁ କିଏ ଝିଅ ଦେବ ?

ଛତା ଧରିବା – ସାହାଯ୍ୟ କରିବା– to help/ to take care

.. ବିପଦ ଆପଦରେ ଛତା ଧରିବା ପାଇଁ ତା'ନିକଟରେ କେହିନାହିଁ ।

ଛତୁ ଉଠେଇବା – ଶେଷ କରିଦେବା– to spoil/ to rain/ to annihilate

.. ସେ ଲୁଗାଟା ପିନ୍ଧି ପିନ୍ଧି ସେଥିରୁ ଛତୁ ଉଠେଇ ସାରିଲାଣି । ତା'କୁ ନେଇ ତମେ କ'ଣ କରିବ ?

ଛତୁ ଉଠା କାଠ – ଅଦରକାରୀ– unused material

.. ଛତୁ ଉଠା କାଠରେ ଘର ହେଲାଣି ନା' ହେବ ?

ଛପର ଫାଡ଼ି – ଆଶାତୀତ ଭାବେ– immensely

.. ଏ ଘର ବାଡ଼ି ବ୍ୟାଙ୍କ ବାଲାନ୍‌ସ ସବୁ ଆଲ୍ଲା ଛପର ଫାଡ଼ି ଦେଇଛନ୍ତି ।

ଛାଇଦେବା – ଗଦା କରିବା, ମଣ୍ଡନ କରିବା, ମହଜୁଦ କରିବା– to deposite/ to cover

.. ଗହଣାରେ ତା' ମା' ତା'କୁ ଛାଇ ଦେଇଛି ।

ଛାଇକୁ ଛତା – ବିଧି ଅନୁକୂଳ କାର୍ଯ୍ୟ– do as per requirement

.. ଛାଇକୁ ଛତା, ଯୋଗ ପଡ଼ିଲା ବୋଲି ସେ ତା'ଙ୍କ ହାତ ଧରିଲେ ।

ଛାଇ ନ ମାଡ଼ିବା – ପାଖକୁ ନ ଯିବା – not to be nearer/ closer

.. ମାଡ଼କୁ ଡ଼ରି ପିଲାଟି ବାପାଙ୍କ ଛାଇ ମାଡ଼େନି ।

ଛାଇ ଲେଉଟାଣି ବେଳ – ଗୋଧୂଳି, ସଂଧ୍ୟାର ପୂର୍ବ ମୁହୂର୍ତ୍ତ– dust

.. ଛାଇ ଲେଉଟାଣି ବେଳକୁ ଆସିଲେ ବାବୁଙ୍କ ସହିତ ଦେଖାହବ ।

ଛାଇ ପଡ଼ିଲେ ନାହି ଡେଇଁବା – ଈର୍ଷା କରିବା– to be at daggers drawn

.. ତା'ଙ୍କୁ ମୁଁ କହିବିନି କାରଣ ମୋ ଛାଇ ପଡ଼ିଲେ ତା'ଙ୍କ ନାହି ଡିଏଁ ।

ଛାଇକି ଛ'ଘା ମାରିବା – କାରଣ ନ ଥାଇ କଳି କରିବା– quarrel without any reason

.. ଦାମାଟା ଛାଇକି ଛ'ଘା ମାରିବା ଲୋକ, ତା'ସାଙ୍ଗରେ କ'ଣ ସାଙ୍ଗ ହଉଛୁ ?

ଛାତି ଦକ ଦକ ହେବା– ଭୟଭୀତ ହେବ- anxiety resulting from fear/ suspence

.. ଆଗରେ ବାଘ ଦେଖିଲେ କାହାର ଛାତି ଦକଦକ ନ ହେବ !

ଛାତି ଉପରେ ଠିଆ ହେବା – ଅବଜ୍ଞା କରିବା/ ହଇରାଣ କରିବା - harass a person

.. ଗରିବ ଛାତି ଉପରେ ଠିଆ ହୋଇ କି ଲାଭ ପାଇଲ ?

ଛାତି ଉପରେ ବସିବା – କାବୁ କରିବା

.. ଯେମିତି ଭାବରେ ସେ ଛାତି ଉପରେ ବସିବା ଆରମ୍ଭ କଲାଣି, କାହାକୁ ମାନିବନି ।

ଛାତିରେ ପଥର ପକାଇବା – ଆଖିବୁଜି ସହିଯିବା - endure pain patiently

.. ଛାତିରେ ପଥର ପକେଇ ସବୁ ଗାଳିମନ୍ଦ ସେ ସହିଛନ୍ତି ।

ଛାତି ପତେଇବା – ସମ୍ମୁଖିନ ହେବା– to face/ to challenge

.. ବିପଦରେ ଛାତି ପତେଇଲେନି ଯେ ବୁଦ୍ଧି ଶିଖିଲେ ।

ଛାତି ପଥର କରିବା – ସବୁ ସହିଯିବା– to tolerate everything how painful it is/ bear patiently

.. ସେ ହିଁ ପ୍ରକୃତ ବଡ଼, ଯେ ଛାତିକୁ ପଥର କରି ବିପଦର ମୁକାବିଲା କରେ ।

ଛାତିକି ଛାତି – ସହଯୋଗପୂର୍ବକ– with full cooperation

.. ବିପଦ ଆପଦରେ ସମସ୍ତେ ଛାତିକି ଛାତି ଲଗେଇ ଆଗେଇ ଆସିବା ଉଚିତ ।

ଛାତି ଫୁଲେଇବା – ଆସ୍ଫାଳନ କରିବା– to show proudness/ swelling of heart with joy

.. ଧନ ପାଇଁ ସେ ଛାତି ଫୁଲେଇ ଚାଲିଛନ୍ତି ।

ଛାତି ଫାଟିଯିବା – ଆକୁଳ ହେବା– lose one's patience

.. ବାବାଙ୍କ ମୃତ୍ୟୁ ଖବର ପାଇଲା ପରେ ତା'ଙ୍କ ଛାତି ଫାଟିଗଲା ।

ଛାତିଫଟା – ଯନ୍ତ୍ରଣା ଦାୟକ– heart rending

.. ଏ ଛାତିଫଟା ଦୃଶ୍ୟ ଦେଖି ତମେ କେମିତି ଧୈର୍ଯ୍ୟ ଧରୁଛ ?

ଛାର କପାଳ – ଦୁର୍ଭାଗ୍ୟ, ପୋଡ଼ା କପାଳ– ill luck/ misfortune

.. ତା'ର ଛାର କପାଳରେ ସୁଖ କୋଉଠୁ ଆସିବ ?

ଛାରଖାର ହେବା – ଧ୍ୱଂସ ହେବା– to be ruined

.. ତା'ଙ୍କ ସୁନା ସଂସାରଟା ପୁରାପୁରି ଛାରଖାର ହୋଇଗଲା ।

ଛାଲ ଉଠେଇବା – ନିସ୍ତୁକ ମାଡ଼ଦେବା– to beat severely

.. ମାରିମାରି କ'ଣ ତା'ର ଛାଲ ଉଠେଇ ଦବ ?

ଛି ଛି କରିବା – ନିନ୍ଦା କରିବା, ଧିକ୍କାର କରିବା– to blame/ call bad names

.. ତା'ର କାମକୁ ସମସ୍ତେ ଛି ଛି କରୁଛନ୍ତି ।

ଛିଙ୍କି ଉଠିବା – ଅନୁକୂଳ ବିଗାଡ଼ିଦେବା– to make a bad start

.. ଧର୍ମ କାମରେ ସେ ବାହାରିଛନ୍ତି । ଏତିକିବେଳେ ଛିଙ୍କି ଉଠିବାର ଥିଲା ?

ଛିଟା ଲାଗିବା – ଦୋଷ ଦୁଷ୍ଟ ହେବା– scandalised/ defamed/ spotted

.. ଚରିତ୍ରରେ ଛିଟା ଲାଗିବାରୁ ସେ ଚାକିରୀ ଛାଡ଼ି ଦେଲେ ।

ଛିଦ୍ର କାଢ଼ିବା – ଦୋଷ ବାଛିବା– to slander/ lookout one's flow

.. ଅନ୍ୟର ଛିଦ୍ର କାଢ଼ିବା ତା'ଙ୍କର ଗୋଟାଏ ନିତି ଦିନିଆ ଅଭ୍ୟାସ ।

ଛୁଟି କରିବା – ବରଖାସ୍ତ କରିବା – to dismiss

.. ଲୋକଟାକୁ ଛୁଟି କରିବାରୁ ତା' ଚାକିରୀଟା ସେ ପାଇଲେ ।

ଛୁଟି ଯିବା – ଦୌଡ଼ିବା– to run away

.. ଛୁଟି ଯାଅ, ନଚେତ୍ ବର୍ଷାରେ ଓଦା ହୋଇଯିବ ।

ଛୁଟି ହେବା – ମୃତ୍ୟୁ ବରଣ କରିବା– to die/ pass away

.. ସମସ୍ତଙ୍କୁ ଦିନେ ନା ଦିନେ ଛୁଟି ହେବାକୁ ପଡ଼ିବ ।

ଛୁଞ୍ଚି ମାରିବା – ଉଖାରିବା, ମର୍ମଭେଦୀ କଥା କହିବା– to irritate/ heart rending words

.. ପୁରୁଣା କଥାଟାକୁ ଛୁଞ୍ଚିମାରି କ'ଣଟା ଲାଭ ପାଇଲ ?

ଛୁଞ୍ଚି ମାରି ପରୀକ୍ଷାକରିବା – ସାବଧାନ ହୋଇ ବିଚାର କରିବା– judgement with care

.. ଏ କଥା ଶୁଣି ଭାଇମାନେ କେବେ ଚୁପ୍ ରହିବେନି, କାରଣ ସେମାନେ ଛୁଞ୍ଚି ମାରି ପରୀକ୍ଷା କରିବାବାଲା ଲୋକ ।

ଛୁଞ୍ଚି ପୋଡ଼ା – ଟାଣ ଟାଣ, ଚୋଖା ଚୋଖା– hot words/ to the point

.. ଏମିତି ଛୁଞ୍ଚି ପୋଡ଼ା କଥା ଶୁଣିଲେ କିଏ ନ ରାଗିବ ଯେ !

ଛୁଞ୍ଚି ମାରି ନାଁ କମେଇବା – ସାମାନ୍ୟ ଲାଭ ପାଇଁ ଦୁର୍ନାମ ଅର୍ଜନ କରିବା – blamed for a little interest

.. ମାରିବ ତ ଭଲ ରକମ ମାରିବ, ଏମିତି ଛୁଞ୍ଚି ମାରି ନାଁ କମେଇବ କାହିଁକି ?

ଛୁରି ଚଳେଇବା – ଅନିଷ୍ଟ କରିବା– be harmful

.. ଛୁରି ଚଳେଇବା ପ୍ରକୃତି ଛାଡ଼ି ଭଲ ମଣିଷ ହେବାକୁ ଚେଷ୍ଟା କର ।

ଛୁରି ମାରିବା – ସର୍ବନାଶ କରିବା– to rain

.. କାହିଁକି ତା'ଙ୍କ ସଂସାରକୁ ଛୁରି ମାରିଲ ?

ଛେନାରୁ ଚୋପା ଛଡ଼ାଇବା – ସଦାବେଳେ ଦୋଷ ବାଛିବା– pick to pieces/ cause a loss

.. ଯଦି ମଣିଷ ହେବାକୁ ଚାହୁଁଛ, ଏ ଛେନାରୁ ଚୋପା ଛଡ଼ାଇବା ପ୍ରକୃତି ଛାଡ଼ ।

ଛେଳି ବେକରେ କଦଳୀ କାନ୍ଧି – ଖାଦକ ହାତରେ ଖାଦ୍ୟକୁ ଅର୍ପଣ– offering eatable to eater

.. ଛେଳି ବେକରେ କଦଳୀ କାନ୍ଧି ବାନ୍ଧିଛୁ । ସେଥିରୁ ବଳିବ, ତୁ ଖାଇବୁ !

ଛେଳି ଗୋଡ଼ରେ ଧାନ ମଳିବା – ଅଯଥା ପରିଶ୍ରମ– rolling stone gathers no moss/ vague labour

.. ତା' ଭାଇମାନଙ୍କୁ ମୁଁ ଠିକ୍ ଜାଣିଛି । କିଛି କରିପାରିବେନି । ଛେଳି ଗୋଡ଼ରେ ଧାନ ମଳିବା ହେଲାଣି ନା'ହେବ ।

ଛୋଟ କଥା – ସାମାନ୍ୟ କଥା, ଖରାପ କଥା– bad remarks/ ordinary things

ଏମିତିକା ଛୋଟକଥା ଧରିଲେ ଚଳିବ ? ମା'କୁ ଏମିତି ଛୋଟ କଥା କହିବାଟା ଠିକ୍ ହେଲାନି ।

ଛୋଟ କାମ – ହୀନ କାମ, ନୀଚ କାମ– mean work/ insignificant matter

.. ଏମିତିକା ଛୋଟ କାମ କରିବାକୁ ମତେ ଆଉ କେବେ କହିବନି ।

ଛୋଟ ଘର – ନୀଚ ବଂଶ, ଗରିବ ପରିବାର– wretched family/ poor family

.. ଛୋଟ ଘରେ ସେ ଝିଅ ଦେବାକୁ ଲୋକଠୋକ୍ ମନା କରିଦେଲେ ।

ଛୋଟ ନଜର – ଛୋଟ ମନ, ନୀଚା ଦୃଷ୍ଟି– meanminded/ lower views

.. ତା'ଙ୍କମରୁ ଛୋଟ ନଜରର ପରିଚୟ ପାଇସାରିଛି । ଆଉ କ'ଣ ଚାହଁ ?

ଛୋଟ ମୁଖେ ବଡ଼ କଥା – ସାମାନ୍ୟ ଲୋକର ମୁହଁରେ ବଡ଼ ଲୋକର ନିନ୍ଦା– to be big mouthed

.. ତା'କୁ ସମାଲୋଚନା କଲେ ଛୋଟ ମୁଖରେ ବଡ଼ କଥା କହିଲା ଭଳିଆ ହେବ ।

ଛୋଟ ମୋଟ – କ୍ଷୁଦ୍ର– small / anyhow

.. ଛୋଟ ମୋଟ ଯାହା କାମ ମିଳିଗଲେ ମୋର ଚଳିଯିବ ।

ଛୋପରୀର ଛାଡ଼ଖାଇ – ଜୀବନଯାକ ଆମିଷ ଖାଇ ଲୋକ ଦେଖାଣିଆକୁ ଛାଡ଼ଖାଇ ପାଳନ କରିବା– opportunist

.. କାହିଁକି ହାଲ୍ଲା କରୁଛ ? ଛୋପରୀର ଛାଡ଼ଖାଇରୁ ତମକୁ କ'ଣ ମିଳିବ ?

## ଜ

ଜଗତି ଉପରେ ହନୁ – ସବୁ ଦେଖୁଥିବା ମଣିଷ, ଉଚ୍ଚ ଆସନର ମଣିଷ– high ranked man/ omniscient

.. ଜଗତି ଉପରେ ହନୁ ବସିଛି, ନିଶ୍ଚୟ ତମକୁ ନ୍ୟାୟ ମିଳିବ ।

ଜଗତି ଉପରେ କୁଆ ବସିବା – ଉଚ୍ଚ ସ୍ଥାନକୁ ନୀଚ ଲୋକ ଆସିଯିବା– lower man on a high status

.. ଜଗତି ଉପରେ କୁଆ ବସିଛି ମାନେ ନିଶ୍ଚୟ କିଛି ଅଘଟଣ ଘଟିବ ।

ଜଗା ଖେଚୁଡ଼ି – ବିଭିନ୍ନ ଜିନିଷର ମିଶ୍ରଣ– mixture of various things

.. ଘଟଣାଟା ଯେମିତି ଜଗା ଖେଚୁଡ଼ି ହେଇଛି, କିଏ କ'ଣ ବୁଝିବ ଯେ !

ଜଗା ହାତରେ ପଘା – ଆୟତ୍ତ କରିବାର ସାମର୍ଥ୍ୟ– who have controlling power

.. ଜଗା ହାତରେ ପଘା ପଡ଼ିଛି । ଡରୁଛୁ କାହିଁକି ? ସେ ସମ୍ଭାଳି ନେବ ।

ଜଡ଼ ଭରତ – ବୋକା, ଜଡ଼ ବୁଦ୍ଧି– foolish/idiot

.. ସେ ତ ଜଡ଼ ଭରତ । ତମକୁ କି ବୁଦ୍ଧି ସେ ବତେଇବ ?

ଜଡ଼ ସଡ଼ – ଲଜ୍ଜାରେ ସଂକୁଚିତ– ashamed/ inerted/ covered

.. ବାହାଘର କଥା ପଡ଼ିବାରୁ ଝିଅଟା, ଜଡ଼ ସଡ଼ ହେଇ ଘର ଭିତରକୁ ପଳେଇଲା ।

ଜଡ଼ାତେଲ ମେଣ୍ଟାବାଳ – ଅତି ନିବିଡ଼ ସଂପର୍କ– close intimacy/ very nearer

.. ଜଡ଼ାତେଲ ମେଣ୍ଟାବାଳ ଭଳି ସେମାନଙ୍କ ବନ୍ଧୁତା । ଦେଖାଯାଉ କେତେଦିନ ଟେକୁଛି !

ଜଣା ଶୁଣା – ରାଷ୍ଟ୍ର ହେବା, ପ୍ରଘଟ ହେବା– be disclosed/ proclaimed

.. କଥାଟା ଜଣା ଶୁଣା ନ ହେଇଥିଲେ ଭଲ ହୋଇଥାନ୍ତା ।

ଜପାମାଳି – ବାରମ୍ବାର ମନେ ପକେଇବା– cherishing once and again

.. ସେଇକଥାକୁ କେତେଦିନ ଜପା ମାଳି କରି ବସିଥିବ ?

ଜମି ଧରିବା – ଭାଗରେ ଜମି ଚାଷ କରିବା– cultivation of land by paying a part of the produce

.. ସେ ଭାଗରେ ତିନି ବର୍ଷ ପାଇଁ ଜମି ଧରିଛନ୍ତି ।

ଜମିକି ମାଡ଼ିବା – ଅନ୍ୟର ଜମି ଅଧିକାର କରିବା– to encroach other's land

.. ଅଧ ଏକର ସରକାରୀ ଜମିକି ସେ ମାଡ଼ି ବସିଛନ୍ତି ।

ଜମିବାଡ଼ି ଦେଖିବା – କ୍ଷେତ ଦେଖାରଖା କରିବା– take care of landed property

.. ଗାଁରେ ଦୁଇଜଣ ଲୋକ ଅଛନ୍ତି ଖାସ୍ ଜମିବାଡ଼ି ଦେଖିବାକୁ ।

ଜରଦଗବ – ଅପଦାର୍ଥ– good for nothing/ useless

.. ସେଇଟା ତ ଜରଦ୍‌ଗବ । ସେ କୋଉଠୁ ପରିଶ୍ରମ କରି ଖାଇବ ?

ଜଳ ଗ୍ରହଣ ନ କରିବା – ସଂପର୍କ ନ ରଖିବା– cut off relation

.. ଆଜିଠାରୁ ତମ ଘରେ ମୁଁ ଜଳ ଗ୍ରହଣ କରିବି ନାହିଁ, ଏଇଟା ମୋ ଶପଥ ।

ଜଳ ଦେବା – ମୁମୂର୍ଷ ବ୍ୟକ୍ତିର ମୁହଁରେ ଗଙ୍ଗାଜଳ ଦେବା– pay holywater to a dyeing

.. ମୃତ୍ୟୁବେଳକୁ ତା'ଙ୍କ ମୁହଁରେ ଜଳଦେବାକୁ କେହି ନଥିଲେ ।

ଜଳଯୋଗ – ହାଲକା ଖାଦ୍ୟ– light snacks

.. ମୋ ଘରୁ ଜଳଯୋଗ କରି ନ ଗଲେ ମନ ଦୁଃଖ ହେବ ।

ଜଳଖିଆ କରିବା – ଖାଇବା– taking snacks

.. ତମେ ଜଳଖିଆ କରି ସାରିଲଣି ?

ଜଳନ୍ତା ନିଆଁରେ କୁଟା ପକାଇବା – କଥା ବଢ଼ାଇବା– quible/ to induce

.. କିଛି ନିଷ୍ପତ୍ତି ନ କରି କାହିଁକି ଜଳନ୍ତା ନିଆଁରେ କୁଟା ପକାଉଛ ?

ଜଳାଂଜଳି ଦେବା – ବିସର୍ଜନ ଦେବା, ପରିତ୍ୟାଗ କରିବା– to give up/ to abandon

.. ଘର ଦ୍ୱାର ଜଳାଂଜଳି ଦେଇ ସାରିବା ପରେ ପୁଣି କାହିଁକି ଲୋଭ କରୁଛ ?

ଜଳି ଉଠିବା – ଭୟଙ୍କର ହେବା– get angry/ break out into fire

.. ଘଟଣା ଶୁଣିବା ମାତ୍ରେ ସେ ରାଗରେ ଜଳି ଉଠିଲେ ।

ଜହ୍ନି ଫୁଲର ଆୟୁଷ – କ୍ଷଣ ସ୍ଥାୟୀ – shortlived/ momentary

.. ଜହ୍ନି ଫୁଲର ଆୟୁଷ ନେଇ ସେ ଆସିଥିଲା । ତା'ପାଇଁ ଲୁହ ଢାଳି ଲାଭ ନାହିଁ ।

ଜାତରା ଦେଖା କଦଳୀ ବିକା – ଏକ ସାଥିରେ ଦୁଇଟି କାମ କରିବା– finish two works at a time

.. ସେ ନିଶ୍ଚୟ ମେଳାକୁ ଯିବେ । ସେଠି ତା'ଙ୍କର ଜାତରା ଦେଖାକୁ କଦଳୀ ବିକା ।

ଜାତି ଯିବା ପେଟ ନ ପୁରିବା – ମାନ ମହତ ଗଲା, କିନ୍ତୁ ଆଶା ପୂରଣ ହେଲାନି– to forego one's principles and still not be able to help the cause

.. ଝିଅଟାକୁ ତା'ଙ୍କ ଘରେ ଦେଇ କ'ଣଟା ପାଇଲ ? ଜାତି ଗଲା ହେଲେ ପେଟ ପୁରିଲାନି ।

ଜାତିଆ ମଣିଷ – ବିଚାରବନ୍ତ, ଭଲ ମଣିଷ– good soul/ noble nature

.. ଜାତିଆ ମଣିଷ ସାଙ୍ଗରେ ମିଶିଲେ ବହୁତ କଥା ଶିଖି ପାରିବ ।

ଜାଲ୍ କରିବା – ଠକିବା, ପ୍ରତାରଣା କରିବା– to cheat/ to mislead

.. କାଗଜ ପତ୍ର ଜାଲ୍ କରିଥିବାରୁ ସେ ଜେଲ୍ ଗଲେ ।

ଜାଲ ଗୋଟେଇବା – ଲକ୍ଷ୍ୟ ପୂରଣ କରିବା– fulfill the desire

.. ଏଥର ଜାଲ ଗୋଟାଇବା କଥା, କାମ ତ ଫଳବତୀ ହେଇଛି ।

ଜାଲ ବିଛେଇବା/ ଜାଲ ପାତିବା – ଫାନ୍ଦ– snare/ to capture

.. ସେ ଯେଉଁ ଜାଲ ପାତିଛନ୍ତି, ସେଥିରୁ ସହଜେ ମୁକ୍ତି ମିଳିବନି ।

ଜାଲରେ ପଡ଼ିବା – ଧରା ପଡ଼ିବା– to be captured/ to be caught

.. ଜାଲରେ ନ ପଡ଼ି ତା'ଙ୍କର ଚାରା ନାହିଁ ।

ଜାଲ ପକେଇବା – କୌଶଳରେ ଧରିବା– to control cleverly/ to win over

.. ସେ ତା'କୁ ଜାଲରେ ପକେଇ ସାରିଲେଣି, ମୁକ୍ତି ପାଇବା ଅସମ୍ଭବ ।

ଜିଦ୍ ଧରିବା – ଅତ୍ୟଧିକ ଆଗ୍ରହ ପ୍ରକାଶ କରିବା– very anxious

.. ସାନ ପିଲାଟି ଆମ ସହିତ ଯିବାକୁ ଜିଦ୍ ଧରିଛି ।

ଜିଦାଜିଦି – ଝଗଡ଼ା, ପରିସ୍ପର ଜିଦ୍– rivalry/ importunity

.. ସେମାନଙ୍କ ଜିଦାଜିଦି ପାଇଁ କିଛି କାମ ଆଜି ହୋଇ ପାରିଲାନାହିଁ ।

ଜିନିଷ ପତ୍ର କଟିବା – ଭଲ ବିକ୍ରିହେବା– good sale

.. ଏ ବର୍ଷ ମେଳାରେ ଜିନିଷପତ୍ର ଭଲ କଟିଛି ।

ଜିଭ ଲେଉଟିବା – ନିଜ ଲୋକକୁ ଅପମାନ ଦେବା– dare to insult

.. ପୁଅଟାକୁ ଏମିତି କହିବାକୁ କେମିତି ତମ ଜିଭ ଲେଉଟିଲା ?

ଜିଭରୁ ଲାଳ ଗଡ଼ିବା – ଅତ୍ୟଧିକ ଆସକ୍ତ ହୋଇ ପଡ଼ିବା, ଲୋଭାସକ୍ତ ହେବା– be tempted/ addicted to

.. ଭଲ ଖାଦ୍ୟ ଦେଖିଲେ କାହା ଜିଭରୁ ଲାଳ ନ ଗଡ଼ିବ !

ଜିଭ କାମୁଡ଼ିବା – ଦୋଷ ସ୍ୱୀକାର କରିବାର ସୂଚନା– admitting own fault

.. ନିଜେ ତ ଅର୍ଜିଛନ୍ତି । ଏବେ ଜିଭ କାମୁଡ଼ିଲେ କ'ଣ ହେବ !

ଜିଭ ଲଡ଼ବଡ଼ କରିବା – କହିବାକୁ ବ୍ୟଗ୍ର, ଲାଳସା– ardent desire/ hankering/ vary anxious

.. ତା'ଜିଭ ଲଡ଼ବଡ଼ ହେଲାଣି । ସେ ନିଶ୍ଚୟ କହିଦେବ !

ଜିଭ କାଟିବା – ଲଜ୍ଜାରେ ଦାନ୍ତରେ ଜିଭକୁ ଚାପିଧରିବା– suppress the desire

.. ଝିଅ ତ ତା'ବାଟରେ ଗଲାଣି । ଏବେ ଅଯଥାରେ ଜିଭ କାଟିଲେ କ'ଣ ହେବ ?

ଜିଭ ଚଳେଇବା – ଚଳୁ କରିବା, ଶେଷ କରିଦେବା– to pocket/ to finish/ to misappropriate

.. ଅଫିସ ଟଙ୍କାକୁ ବି ସେ ଜିଭ ଚଳେଇଦେଲେ ।

ଜିଭ ସିଲେଇ କରିବା – କଥାବାର୍ତ୍ତା ବନ୍ଦ କରାଇବା– to make one speechless

.. ବେଶି ବକିଲେ ଜିଭ ସିଲେଇ କରିଦେବି ।

ଜିରା ଫୁଟିଲେ ବାସ୍ନା – କଥା ସହଜରେ ପ୍ରଘଟ ହେବା– made public

.. ଜିରା ଫୁଟିଲେ ବାସ୍ନା, କେତେ ଦିନ କଥା ଲୁଚିଥାନ୍ତା ?

ଜିରାରୁ ଶିରା କାଢ଼ିବା – ଛିଦ୍ର ବାହାର କରିବା, ନପସନ୍ଦ କରିବା– to underestimate/ to find fault

.. ତା'ଙ୍କୁ କିଛି କୁହନି । ସେ ହଉଛନ୍ତି ଜିରାରୁ ଶିରା କାଢ଼ିବା ଲୋକ ।

ଜୀଇଥିଲେ ପାଇ – ଜୀବନର ନଶ୍ୱରତା, ବଞ୍ଚିବା ଉପରେ ଗୁରୁତ୍ୱ – matter of longivity/ momentary

.. ଏତେବେଳୁ କାହିଁକି ବୀତସ୍ପୃହ ହେଉଛ ? ଜୀଇଥିଲେ ନିଶ୍ଚୟ ପାଇବ ।

ଜୀବନ ମୂର୍ଚ୍ଛା – ଆପ୍ରାଣ ଉଦ୍ୟମ– trial one's best

.. ଲକ୍ଷ୍ୟ ସ୍ଥଳରେ ପହଂଚିବା ପାଇଁ ସେ ଜୀବନ ମୂର୍ଚ୍ଛା ଲାଗି ପଡ଼ିଛନ୍ତି ।

ଜୀବନକୁ ପାଣି ଛଡ଼ାଇବା – ମୃତ୍ୟୁ ମୁହଁକୁ ଠେଲିଦେବା– to jostle one into death

.. ଜୀବନକୁ ପାଣି ଛଡ଼ାଇ ସେ ଏ କାମରେ ହାତ ଦେଇଛନ୍ତି ।

ଜୁଆଚୋର – ପ୍ରବଞ୍ଚକ– cheat/ swindler/ deceitful

.. ରାଜ୍ୟରେ ଜୁଆଚୋରଙ୍କ ସଂଖ୍ୟା ବଢ଼ି ଚାଲିଛି ।

ଜୁଆର ଉଠିବା – ଆନନ୍ଦରେ ବୁରୁଳି ଉଠିବା– overwhelmed with joy

.. ତା'ଙ୍କ ସୁଖ ସଂସାରରେ ଏବେ ଜୁଆର ଉଠିଛି ।

ଜୁଇକୁ ଡେଇଁବା – ବିପଦ ମୁହଁରେ ଧରାଦେବା– putting into trouble

.. ତା'ଙ୍କ କୁକର୍ମ ପାଇଁ ସେ ଜୁଇକୁ ଡେଇଁବାକୁ ବାଧ୍ୟହେଲେ ।

ଜୁଳୁଜୁଳୁ କରି ଚାହିଁବା – ଆକୁଳ ଭାବେ ଚାହିଁବା– distressed stage/ last stage

.. ଆଉ କେଇ ମିନିଟର କଥା । ଖାଲି ଜୁଳୁଜୁଳୁ କରି ସେ ଚାହିଁଛନ୍ତି ।

ଜୁଳୁଜୁଳିଆ ବାହାରିଯିବା – ପ୍ରାଣାନ୍ତକ ହେବା– perplexed/ bewildered

.. ଯେମିତି ମାଡ଼ ହେଲା, ତା'ଆଖିରୁ ଜୁଳୁଜୁଳିଆ ବାହାରିଗଲା ।

ଜେଲ ଖଟିବା – ବନ୍ଦୀହେବା– be imprisoned

.. ଚାରିଥର ଜେଲ ଖଟିଲା ପରେ ତା'ର ଜେଲ୍‌କୁ ଆଉ ଭୟ ନାହିଁ ।

ଜୋଇଁ ଆଦର – ପ୍ରଚୁର ଯତ୍ନ– proper respect

.. ତା'ଙ୍କ ଘରେ ବେଶିଦିନ ରହିଲେ ଜୋଇଁ ଆଦର କୋଉଠୁ ମିଳିବ ?

ଜୋକପରି ଲାଗି ରହିବା – କାର୍ଯ୍ୟ ହାସଲ ପାଇଁ ଯତ୍ନ କରିବା– very careful for selfish motiff

.. ଟଙ୍କା ନ ପାଇବା ଯାଏ ସେ ଜୋକପରି ପଛରେ ଲାଗି ରହିଥିବେ ।

ଜୋକ ମୁହଁରେ ଲୁଣ – ଟାଣ ଭାଂଗିବା– depressed/ ashamed

.. ଅସଲ କଥାଟା ସମସ୍ତେ ଜାଣିଯିବାରୁ ଜୋକ ମୁହଁରେ ଲୁଣ ଦେବାପରି ସେ ଚୁପ୍‌ଚାପ ରହିଛନ୍ତି ।

ଜୋଗାଡ଼ିଆ – ରୋଷେଇର ସହାୟକ– helper to cook

.. ଭୋଜିପାଇଁ ତିନିଜଣ ଜୋଗାଡ଼ିଆ ହେଲେ ଚଳିଯିବ ।

ଜୋଗାଡ଼ଯନ୍ତ୍ର – ଆୟୋଜନ, ସଂଗ୍ରହ– arrangement/ collection

.. ବାହାଘର ମାସେ ରହିଲା । ସବୁକିଛି ଜୋଗାଡ଼ଯନ୍ତ୍ର କରିବାକୁ ପଡ଼ିବ ।

ଜୋତା ଖାଇବା – ଅପମାନିତ ହେବା– to be insulted

.. ଯେମିତି କାମ କଲେ, ଜୋତା ଖାଇବା ଛଡ଼ା ତା'ଙ୍କର ଅନ୍ୟ ଉପାୟ ନଥିଲା ।

ଜୋତା ମାଫିକ – ପସନ୍ଦ ମୁତାବକ, ଉପଯୁକ୍ତ– according to satisfaction/ worthy

.. ସେ ଏବାର ଜୋତା ମାଫିକ ଖେଳି ପାରିଲେନି ।

ଜୋତା ମାରିବା – ଅଧିକ ଅପମାନ ଦେବା– to insult much

.. ଜୋତା ମାରି ପଛରେ ଠାକୁରଙ୍କୁ ଡାକିଲେ କ'ଣ ହେବ ।

ଜୋତା ସିଲେଇଠାରୁ ଚଣ୍ଡୀପାଠ – ସବୁ ପ୍ରକାର କାମ– all kind of works

.. ଘରର ଯାବତୀୟ କାମ, ଜୋତା ସିଲେଇଠାରୁ ଚଣ୍ଡୀପାଠ ପର୍ଯ୍ୟନ୍ତ ସେ ନିଜେ କରନ୍ତି ।

ଜୋର ଯାହାର ମୂଲକ ତା'ହାର – ବଳ ପ୍ରୟୋଗ ଫଳରେ ଲକ୍ଷ୍ୟ ହାସଲ– achieved forcibly/ might is right

.. ଜୋର ଯାହାର ମୂଲକ ତା'ହାର ନୀତି ଆଜି କାଲି ଆଉ କାମ ଦବନି । ଗଣତନ୍ତ୍ରରେ ସମସ୍ତେ ସମାନ ।

ଜୋର କରିବା – ଚାପଦେବା, ବଳ ପ୍ରୟୋଗ କରିବା– to pressurise

.. ଏ ଘଟଣାରେ ମୁଁ ତା'ଙ୍କୁ ଜୋର କରିବାକୁ ଚାହୁଁନି ।

ଜୋର ଜବରଦସ୍ତି – କଷ୍ଟଦେଇ, ବଳ ପ୍ରୟୋଗ କରି– by force/ by hook or crook

.. ଜୋର ଜବରଦସ୍ତି ଟଙ୍କାର ଆଦାୟ ବାଟ ଛାଡ଼ ।

ଜ୍ଞାନଦେବା – ପାନେଦେବା, ଅପ୍ରିୟ କଥା କହିବା– to make some one in trouble

.. ସେ ତା'କୁ ଏମିତି ଜ୍ଞାନ ଦେଇଛି ଆଉ ଦିନେ ପାଖ ମାଡ଼ିବନି ।

ଜ୍ଞାନ ନଥିବା – ଖିଆଲ ବା ଧାରଣା ନ ଥିବା– no idea/ less knowledge

.. ଇଆଡୁ ସିଆଡୁ କ'ଣ କହୁଛ ? ଏ ବିଷୟରେ ତମର କ'ଣ ଜ୍ଞାନ ନାହିଁ ?

ଜ୍ଞାନପାଇବା – ସଦ୍‌ବୁଦ୍ଧି ଉଦୟ ହେବା– come to light

.. ଡେରିରେ ହେଉପଛେ ସେ ଜ୍ଞାନ ପାଇଛନ୍ତି, ଆଉ ଏମିତି କରିବେନି ।

ଜ୍ଞାନ ଫେରିବା – ସଜ୍ଞା ଫେରିବା– regain consciousness

.. ଆଠ ଘଣ୍ଟା ଅଚେତ ରହିବା ପରେ ତା'ଙ୍କର ଜ୍ଞାନ ଫେରିଛି ।

ଜ୍ୱାଳା ଯନ୍ତ୍ରଣା – ମାନସିକ ବେଦନା– mental torture/ agony

.. ଈଶ୍ୱର କରନ୍ତୁ, ସେ ଜ୍ୱାଳା ଯନ୍ତ୍ରଣାରୁ ମୁକ୍ତି ପାଆନ୍ତୁ ।

## ଝ

ଝଟ୍‌କା ଦେବା – ମଥା ଘୁରାଇବା– head reeling

.. ତା'ଙ୍କୁ ତିନିଥର ଝଟ୍‌କା ଦେଲାଣି । କାହିଁକି ଏତେ ଭାଂଗ ଖାଉଥିଲା ।

ଝଡ଼ ସୃଷ୍ଟି କରିବା – ଗଣ୍ଡଗୋଳ ସୃଷ୍ଟିକରିବା– creating disturbance

.. ଶାନ୍ତ ପରିବାର ଭିତରେ ଝଡ଼ ସୃଷ୍ଟିକରି କି ଲାଭ ପାଇଲ ?

ଝଡ଼ ବହିଯିବା – ବିପଦ ପଡ଼ିବା– involved in danger/ distressed

.. ତା'ଙ୍କ ଉପରେ ଏତେ ଝଡ଼ ବହିଗଲାଣି, ତଥାପି ସେ ନିଷ୍କଳ ରହିଛନ୍ତି ।

ଝଡ଼କୁ ପିଠି କରିବା – ମୁକାବିଲା କରିବା– to challenge/ confront

.. ଝଡ଼କୁ ପିଠି କରି ଠିଆହେଲେ ସାହସ ବଢ଼େ ।

ଝଡ଼ା ଝଡ଼ି – ମନ୍ତ୍ର ତନ୍ତ୍ର ଦ୍ୱାରା ଶୋଧନ– purified by mantras

ଗୁଣିଆ ଝଡ଼ା ଝଡ଼ି କରିବାରୁ ଆତ୍ମାଟା ତା' ଦେହରୁ ବାହାରିଗଲା ।

ଝଡ଼ି ଯିବା – ମରିଯିବା, ସ୍ୱାସ୍ଥ୍ୟ କମିଯିବା– become weak/ passing away

.. ଏଡ଼େ ପିଲାଟା ଅକାଳରେ ଝଡ଼ିଗଲା । .. ତା' ଚେହେରା ବହୁତ ଝଡ଼ି ଯାଇଛି ।

ଝଞ୍ଜା ବାତୁଅ – ଦୁଷ୍ଟ ଲୋକ– wicked/ mischievous

.. ଝନ୍‌ଜା ବାତୁଅ ହୋଇ କେତେଦିନ ବୁଲିବୁ ? ନିଜକୁ ବୁଝିବାକୁ ଚେଷ୍ଟାକର ।

ଝାଙ୍କ ଛଡ଼ାଇବା – ନିଜ ଜିଦରେ ଅଟଳ ରହିବା– firm in decision

.. ସିଏ ଆମ ଝାଙ୍କ ଛଡ଼େଇ ଦେଲାଣି, ଆଉ କେମିତି ବୁଝେଇବ !

ଝାଟିମାଟି ହେବା – ମାଟି ସହିତ ମାଟିହେବା, କଠିନ ପରିଶ୍ରମ– labour hard/ be reduced to dust

.. ନିଜେ ଝାଟିମାଟି ନ ହେଇଥିଲେ ଏଡ଼ବଡ଼ ଘର ଠିଆ ହୋଇ ପାରିଥାନ୍ତା ?

ଝାଟି ମାଟି ଏକାଠି କରିବା – ସବୁ ଆୟ ଗୋଟିଏ ଉଦ୍ଦେଶ୍ୟରେ ବ୍ୟୟ କରିବା– spending life and leisure

.. ସେ ଝାଟି ମାଟି ଏକାଠି କରି ତା'କୁ ପଢ଼େଇଛନ୍ତି, ଆଇ.ଏ.ଏସ. ପାଇବନି ?

ଝାଡୁ ମାରିବା – ଅପମାନିତ କରିବା, ଆଘାତ କରିବା– to insult/ to strike

.. ତା'ଙ୍କ କଥାବାର୍ତ୍ତା ଝାଡୁମାରିବା ଭଳି ଲାଗୁଛି ।

ଝାମ୍ପଦେବା – ଆଗପଛ ନ ବିଚାରି ଆଗେଇଯିବା– to jump without proper decision

.. ସାଙ୍ଗମାନଙ୍କ କଥାରେ ସେ ବ୍ୟବସାୟକୁ ଝାମ୍ପ ଦେଇଛି । ଲାଭକ୍ଷତି କ'ଣ ଜାଣେନି ।

ଝାଳନାଳ ହେବା – କାମ କରି କରି କ୍ଳାନ୍ତ ହୋଇଯିବା– being tired

.. ସେତ ଝାଳ ନାଳ ହେଇଗଲାଣି, ଆଉ କି ପରିଶ୍ରମ କରିବ !

ଝାଳବୁହା ଧନ – କଷ୍ଟ ଉପାର୍ଜିତ ଧନ– fruit of hard labour

.. ତା'ର ଝାଳବୁହା ଧନ, କେବେ ନଷ୍ଟ ହେବନି ।

ଝିଅ ଘିଅ – ପ୍ରତି ପଦରେ ବିପଦ– danger at every step

.. ଝିଅ ଘିଅ, କେତେଦିନ ଧରି ବସିଥିବ ?

ଝିଅ ଜନମ ପରଘରକୁ – ଯାହା ପାଇଁ ନିର୍ଦ୍ଦିଷ୍ଟ– which is made for each other

.. କାହିଁକି କାନ୍ଦୁଛ ? ଝିଅ ଜନମ ତ ପରଘରକୁ ।

ଝିକମିକ ବେଳା – ଗୋଧୂଳି ସମୟ– dusk

.. ଝିକମିକ ବେଳାକୁ ଅପେକ୍ଷା କର । ଗାଈପଲ ସହିତ ସେ ନିଶ୍ଚୟ ଫେରିବ ।

ଝିଣ୍ଟିକା ମାରି ବଣି ପୋଷିବା – ଧନୀର ସ୍ୱାର୍ଥ ପାଇଁ ଗରିବ ବଳି ପଡ଼ିବା– kill the weaker

and help the stronger person

.. ଏ ଝିଙ୍କିକା ମାରି ବଣି ପୋଷିବା ନୀତି ଝାଡ଼ । ସେ ଲୋକଟାକୁ ସମର୍ଥନ କରି କ'ଣଟା ପାଇବ ତମେ ?

ଝିମିଟି ଖେଳରୁ ମହାଭାରତ – ଛୋଟ କଥାରୁ ବିରାଟ କାଣ୍ଡ ଘଟିବା– small thing causes a hovoc

.. କଥାଟା ସେତିକିରେ ଛିଡ଼ିଯାଉ, ନଇଲେ ଝିମିଟି ଖେଳରୁ ମହାଭାରତ ସୃଷ୍ଟି ହେଲାପରି ସମସ୍ତେ ଧ୍ୱଂସ ହେବ ।

ଝୁଲଣରେ ଝୁଲିବା – ସୁଖ ସମୃଦ୍ଧି– happiness and comfort

.. ସେ ତ ଝୁଲଣରେ ଝୁଲୁଛି, ତା'କୁ ମାଗ । ନିଶ୍ଚୟ କିଛି ଦେବ ।

ଝୁଲି ଝୁଲି ଆସିବା – ହଲି ହଲି ଆସିବା, ଧିରେ ଧିରେ ପଦଚାଳନା କରିବା– walk slowly

.. ଝୁଲି ଝୁଲି ଆସୁଛି କାଳିଆ ରଥ ଉପରକୁ ।

ଝୁଲି ଧରିବା – ଭିକ୍ଷାବୃତ୍ତି ଗ୍ରହଣ କରିବା– begging

.. ସବୁ ଯାଇଛି । ଝୁଲା ଧରିବା ଛଡ଼ା ତା'ଙ୍କର ଅନ୍ୟ ଉପାୟ ନାହିଁ ।

ଝୁଲିଯିବା – ଅବନ୍ନତି ଘଟିବା– degrading/ be dissatisfied

.. ନାଟକଟା ଶେଷ ଆଡ଼କୁ କିଛିଟା ଝୁଲିଗଲା ।

ଝୋଲା ମାରିବା – ମୂର୍ଚ୍ଛାପ୍ରାୟ ହୋଇଯିବା– be fainted/senseless

.. ଖରାଟାରେ ଏତେ ପରିଶ୍ରମ କଲ, ଦେହ ହାତ ଝୋଳା ମାରିବନି !

## ଟ

ଟକ୍ ଟକ୍ କରିବା – ଗାଢ଼ ଲାଲ ହେଇଯିବା– to be deep red

.. ଶାଢ଼ୀଟା ଦେଖୁଛ କେମିତି ଟକ୍ ଟକ୍ କରୁଛି ।

ଟକ୍କର ଖାଇବା – ଠୋକର ଖାଇବା– stumble/ be obstructed

.. ମଥାରେ ବେଶ୍ କିଛିଟା ଟକ୍କର ଖାଇଛି ।

ଟକ୍କର ଦେବା - ମୁକାବିଲା ମନୋଭାବ– to compete/ to challenge

.. ସେ ଟକ୍କର ଦେଇଛି ମାନେ ନିଶ୍ଚୟ ଜିତିବ ।

ଟଙ୍କା ଉଡ଼େଇବା – ଅପବ୍ୟୟ କରିବା– squander away/ waste money

.. ପିତାଙ୍କ ମୃତ୍ୟୁପରେ ପୁଅଟା ମନ ଇଛା ଟଙ୍କା ଉଡ଼େଇ ଚାଲିଛି ।

ଟଙ୍କା କରିବା – ସଞ୍ଚୟ କରିବା, ରୋଜଗାର କରିବା– to save/ earn

.. ବ୍ୟବସାୟରୁ ସେ କମ୍ ଟଙ୍କା କରୁନି !

ଟଙ୍କା ଖାଇବା – ଲାଞ୍ଚ ନେବା– to take bribe

.. ସେ ଯେମିତି ଟଙ୍କା ଖାଉଛି, ନିଶ୍ଚୟ ଧରା ପଡ଼ିବ ।

ଟଙ୍କା ମାରିବା – ଆତ୍ମସାତ କରିବା– to misappropriate

.. ଟ୍ରେଜେରୀ ଟଙ୍କା ମାରି ସେ ଏ କୋଠାଟା କରିଛନ୍ତି ।

ଟଙ୍କାର ପାହାଡ଼ – ପ୍ରଚୁର ଟଙ୍କା– much cash/ man of crores

.. ସେ ଟଙ୍କାର ପାହାଡ଼ ଉପରେ ବସିଛି ।

ଟଙ୍କାର ଗରମ – ଐଶ୍ୱର୍ଯ୍ୟର ଅହଂକାର, ଧନଗର୍ବ– pride of wealth

.. ଟଙ୍କାର ଗରମ ଯୋଗୁ ସେ ମଣିଷକୁ ପଶୁ ଭଳି ବ୍ୟବହାର କରିଚାଲିଛନ୍ତି ।

ଟଙ୍କାର ମୁହଁ ଦେଖିବା – ଟଙ୍କା ଉପାର୍ଜନ ଆରମ୍ଭ କରିବା– earn money/ blessed with wealth

.. ଦୀର୍ଘଦିନ ଅପେକ୍ଷା କଲାପରେ ସେ ଆଜି ଟଙ୍କାର ମୁହଁ ଦେଖିଛନ୍ତି ।

ଟଙ୍କାର ଶ୍ରାଦ୍ଧ – ଟଙ୍କା ଅପବ୍ୟୟ– spending aimlessly

.. ସେ ଯେମିତି ଭାବେ ଟଙ୍କା ଶ୍ରାଦ୍ଧ କରି ଚାଲିଛନ୍ତି, କାଙ୍ଗାଳ ହୋଇଯିବେ ।

ଟଙ୍କା ଚଳିବା – କାରବାର– currency/ use of

.. ଆଜିକାଲି ବାଘମାର୍କା ଟଙ୍କା ଚଳିବା କଷ୍ଟକର ।

ଟଙ୍ଗ ଟଙ୍ଗ ହେବା – ଏପଟ ସେପଟ ହେବା (ଉଦ୍ଦେଶ୍ୟହୀନ ଭାବରେ)– loitering/ striding

.. ସାରା ଦିନଟା କେଉଁଠି ଟଙ୍ଗ ଟଙ୍ଗ ହେଉଥିଲ ?

ଟଣାଟଣି ବେଳ – ଅଭାବ ସମୟ– want/ non-existence

.. ଏ ଟଣାଟଣି ବେଳରେ କିଏ କାହାକୁ ସାହାଯ୍ୟ କରିବ !

ଟଳମଳ ହେବା – ଉଛୁଳି ପଡ଼ିବା, ପତନର ଭାବ– tottering/ restless/ rise up

.. ଅଧାକଟା ଗଛଟା ଟଳମଳ ହେଉଛି, ଯେ କୌଣସି ସମୟରେ ପଡ଼ିପାରେ ।

ଟଳି ପଡ଼ିବା – ମରିଯିବା– passing away

.. ସେ ଭାଷଣ ଦେଉଦେଉ ସେଇଠି ଟଳି ପଡିଲେ ।

ଟାକି ବସିବା – ଆଗ୍ରହର ସହିତ ଅପେକ୍ଷା– eagerly look out for

.. ମୋ ହାତକୁ ଟାକି ବସିଲେ, ମୁଁ କୋଉଠୁ ଏତେ ଟଙ୍କା ପାଇବି ?

ଟାଙ୍କ ଭାଙ୍ଗିବା – ଅକର୍ମଣ୍ୟ କରିଦେବା– beat severely

.. ସେ ଏମିତି ଟାଙ୍କ ଭାଙ୍ଗିଛନ୍ତି, ପୁଅ ତିନି ମାସଯାଏ ଉଠିପାରିବନି ।

ଟାଣ ଭାଙ୍ଗିବା – ଦମ୍ଭ ଭାଙ୍ଗିବା– becoming weak

.. ମା'ର ମୃତ୍ୟୁ ପରଠୁଁ ତା'ର ଟାଣ ଭାଙ୍ଗିଛି ।

ଟାଣିଟୁଣି – କଷ୍ଟେ ମଷ୍ଟେ– hardly/ anyhow

.. କୌଣସି ପ୍ରକାରେ ଟାଣିଟୁଣି ହୋଇ ସେ ଚଳିଯାଉଛି ।

ଟାଳଟୁଳ କରିବା – ସମୟ ଗଡ଼ାଇବା, ଛଳନା କରିବା– delaying/ pretending

.. ତାଙ୍କୁ ବିଦାକରିବା ପାଇଁ ସେ ଟାଳଟୁଳ କଲେ ।

ଟାଳିଦେବା – ଦାୟିତ୍ୱ ଖସାଇ ଦେବା, ଦୂରେଇଦବା– delaying/ removing

.. କୌଣସି ପ୍ରକାରେ କଥାଟା ଟାଳିଦେଲେ କାମଶେଷ ।

ଟିକ୍‌ଟିକ୍ କରିବା – ଘଣ୍ଟାଶବ୍ଦ– sound of clock

.. ଘଣ୍ଟା ଏମିତି ଟିକ୍‌ଟିକ୍ କରୁଛି, ଶୋଇ ହେବନି ।

ଟିଙ୍କପରି ଲାଗି ରହିବା – ପାଖେ ପାଖେ ଲାଗି ରହିବା– flow closely

.. ସେ ଯେମିତି ତା'ଙ୍କ ସାଙ୍ଗରେ ଟିଙ୍କ ପରି ଲାଗି ରହିଛନ୍ତି, କୋଉଠୁ ମଉକା ମିଳିବ ଯେ ତୁ କହିବୁ ?

ଟିଙ୍ଗ ଟିଙ୍ଗ ହେବା – ବିରକ୍ତ ହେବା– be displeased/ be vexed

.. କାହିଁକି ସଦାବେଳେ ପିଲାଟା ଉପରେ ଟିଙ୍ଗ ଟିଙ୍ଗ ହଉଛ ?

ଟିଣ ଟିଣ ବାଜିବା – ଦେଖେଇ ହବା– give one's self airs

.. ପଇସା ପତ୍ର ଅଛିତ, ସେଥିଲାଗି ଟିଣ ଟିଣ ହେଉଛି ।

ଟୁପ୍‌ଟାପ ହେବା – ପଛରେ କହିବା, କାନରେ କହିବା– whispering

.. ଝିଅ ଫେରାର ହେବାନେଇ ସମସ୍ତେ ଟୁପଟାପ ହେଉଛନ୍ତି ।

ଟେକା ଟେକି କରିବା – ମିଥ୍ୟା ପ୍ରଶଂସା, ଚାଟୁକଥା– flattering / false praise

.. ଟେକାଟେକି କରିଦେଲେ ସେ ଆମ କଥାରେ ନିଶ୍ଚୟ ରାଜି ହେଇଯିବେ ।

ଟେକା ହାତରୁ ଖସିବା – ସୁଯୋଗ ହାତ ଛଡ଼ା ହେବା– loss of chance

.. ଥରେ ଟେକା ହାତରୁ ଖସିଗଲେ ଆଉ ତା'କୁ ଅଟକେଇ ହବନି । ସେ ତା'କରାମତି ଦେଖାଇବ ।

ଟେର୍ ପାଇବା – ସୂଚନା ମିଳିବା, ବୁଝି ପାରିବା– follow the clue/ to understand

.. ବୁଲେଇ ବଙ୍କେଇ ଯେମିତି ସେ କଥାବାର୍ତ୍ତା କରୁଛନ୍ତି, ତା'ଙ୍କ କଥାର ଟେର ପାଇବା ସହଜ ନୁହଁ ।

ଟେରି ଭାଙ୍ଗିବା – ଯତ୍ନ କରି ଚୂଳ ସଜାଡ଼ିବା– dress the hair

.. ଟେରି ଭାଙ୍ଗି ବାସନା ତେଲ ମାରି ବାବୁ ଚାଲିଲେ ଆଖଡ଼ାକୁ ।

ଟେଳା ପକେଇବା – ଭାଂଗର ଗୁଳା, ନିଶା ମୋଦକ ଖାଇବା– small amount/ to be addicted

.. ପୁଅ ତିନିଟେଳା ପକେଇଛନ୍ତି, କାଲି ସକାଳଯାଏ ନିଶା ଛାଡ଼ିବନି ।



'ଠ' ବୁଲିଯିବା – ସର୍ବସ୍ୱାନ୍ତ ହୋଇଯିବା– totally ruined

.. ତମେ ଯେମିତି କଲଣି, ବିଚରାର 'ଠ' ବୁଲିଯିବ ।

ଠ ଠା ଠି – ଦାରିଦ୍ର୍ୟର ଚରମାସୀମା– poorest condition

.. ତାଙ୍କ ଘରେ ତ ଠ ଠା ଠି । ସେ କ'ଣ ତମକୁ ସାହାଯ୍ୟ କରିବେ !

ଠକ୍ ଠକ୍ – ଶୀତରେ କଂପିବା– shivering/ trembling in cold

.. ବିଚରା ପିଲାଟା ଶୀତରେ ଠକ୍ ଠକ୍ ହେଉଛି ।

ଠକଙ୍କ ଗୁରୁ – ବଡ଼ ଠକ– cheat/ idle

.. ସେ ତ ଠକଙ୍କ ଗୁରୁ । ସେ ତମକୁ କି ଉପଦେଶ ଦେବ ?

ଠଣ ଠଣ ମଦନଗୋପାଳ – pennyless person

.. ସେ ତ ଠଣ ଠଣ ମଦନ ଗୋପାଳ, ସେ କ'ଣ ତମକୁ ଦବ ?

ଠାକୁ ଠାକୁ ହେବା – ଥରିବା– trembling

.. ଦେଖୁଛ, ଥଣ୍ଡାରେ ତା'ଦେହ କେମିତି ଠାକୁ ଠାକୁ ହେଉଛି ।

ଠାକୁର ଖାଇ ଖଟୁଲି ଖାଇବା – ମୂଳ, ଲାଭ ସବୁ ଖାଇ ଶେଷ କରିବା– totally misappropriate

.. ସେ ଠାକୁରା ଖାଇ ଖଟୁଲି ଖାଇ ସାରିଲାଣି, ଆଉ କେତେଦିନ ଯାଏ ସାହାଯ୍ୟ କରୁଥିବ ?

ଠାସ୍‌କୁ ମାରିବା – ବାହାସ୍ପଟ ମାରିବା– guessing

.. ଠାସକୁ ମାରି କେତେଦିନ ଚଳିବ ? ବେଳ ପଡ଼ିଲେ ଠିକିବ ।

ଠିକ୍ କରିବା – ଜବତ କରିବା– bring under control/ sum up

.. ମୁଁ ତା'କୁ ଠିକ୍ କରିଦେବି । ତମେ ତା'କୁ କିଛି କୁହନି ।

ଠିକ୍ ଠିକଣା – ସ୍ଥିରତା, ସନ୍ଧାନ– certainity/ arrangement

.. ସେ ଏଠି କ'ଣ କରିବ, ତା'ର କ'ଣ କିଛି ଠିକ୍ ଠିକଣା ଅଛି ?

ଠିକଣା ଧରାଇବା – ହଇରାଣରେ ପକାଇବା– put into trouble

.. ତା'କୁ ଏମିତି ଠିକଣା ଧରାଇଲେ, ଆଉ ଦିନେ ସେ ଆମଘର ମାଡ଼ିବନି ।

ଠିକାଦେବା – ଢିରାଦେବା – to ram

.. କେତେଦିନ ଠିକା ଦେଇ କାନ୍ଥଟାକୁ ରଖିବ ?

ଠିକା ଧରିବା – ନିଲାମ ଦେବା– undertake a work on contract

.. କୋଠାକାମ କେତେରେ ଠିକା ଧରିଲେ ?

ଠିକିଲେ ଶିଖିବା – ଅଭ୍ୟାସରୁ ଜ୍ଞାନ ଉଦୟ– practice makes someone perfect

.. ତା'କୁ କହିବା ଦରକାର ନାହିଁ । ସେ ଠିକିଲେ ଶିଖିଯିବ ।

ଠୁଳ କରିବା – heap up/ add up/ gather up

.. କୋଠାକାମ କେତେରେ ଠିକା ଧରିଲେ ?

ଠେସ୍ ଦେଇ କଥା କହିବା – ବ୍ୟଙ୍ଗୋକ୍ତି ବା ବକ୍ରୋକ୍ତି – satirically/ cleverly

.. ସେ ଯେମିତି ଠେସ୍‌ଦେଇ କଥା କହୁଛି, କିଏ ତା'କୁ ବିଶ୍ୱାସ କରିବ ?

ଠୋ ଠା ହେବା – die in quick succession

.. କୋଠାକାମ କେତେରେ ଠିକା ଧରିଲେ ?

ଠୋକର ଖାଇବା – ଆଘାତ ପାଇବା– be obstructed/ stumbled

.. ଜୀବନରେ ସେ ବହୁବାର ଠୋକର ଖାଇଲେଣି । ଆଉ ହଇରାଣ କରନି ।

ଠୋସ୍ ଖବର – ପକ୍କା ଖବର– true facts/ perfect news

.. ସେ ଯାହା କହିବେ, ସେଇଟା ହଉଛି ପୁରାପୁରି ଠୋସ୍ ଖବର ।

## ଡ

ଡକା ପଡ଼ିବା – ସଗର୍ବେ ଘୋଷିତ ହେବା– highlighted/ made public

.. କଳିଙ୍ଗ ପାର୍ଟି ବଡ଼ ଜାତରା ପାର୍ଟି ବୋଲି ଚାରିଆଡ଼େ ଡକା ପଡ଼ିଛି ।

ଡକା ପକେଇବା – ଜୋରରେ କାନ୍ଦିବା– utter a loud cry

.. ମା' ମରିଯାଇଥିବାରୁ ସାନ ପିଲାଟି ଡକା ପକାଉଛି ।

ଡଙ୍କି ମାରିବା – ଅଳ୍ପ ଅଳ୍ପ ପରିବେଷଣ କରିବା– serve a small quantity

.. ଦେଖୁଛ ତ ଡାଲି ନାହିଁ , ଡଙ୍କି ମାରି କାମ ଚଳେଇ ଦିଅ ।

ଡମପାଖେ ଢମ ଦେଖାଇବା – ଦୁର୍ବଳକୁ ବଡ଼ିମା ଦେଖେଇବା– talk big before a weak

.. ଯଦି ତାକତ ଅଛି ମୋ ପାଖକୁ ଆ । ଆଉ ଡମ ପାଖେ ଢମ ଦେଖାଇ ଲାଭ କ'ଣ

ଡହଳ ବିକଳ – ଅନ୍ୟର ଶ୍ରୀ ଦେଖି ହାଇଁ ପାଇଁ ହେବା– be restless to see other's wealth

.. ରାମବାବୁଙ୍କ ନୂଆ ଟି.ଭି. ଦେଖି ନେତ୍ରମଣି ଡହଳ ବିକଳ ହଉଛି ।

ଡାଆଣୀ ଲାଗିବା – ଅଶରୀରୀ ଶକ୍ତିର ବଶହେବା– possession by evil spirits

.. ବୋହୂଟାକୁ ଡାଆଣୀ ଲାଗିଛି । ଭାରି ଉପଦ୍ରବ କରୁଛି ।

ଡାଆଣିଆ ଖରା – ସଂଧ୍ୟା ପୂର୍ବର ଲୋଭନୀୟ ଖରା ଯେଉଁଥିରେ ଡାଆଣି ବାହାରେ–

slanting rays of sun just before it sets down

.. ଡାଆଣିଆ ଖରା ପଡ଼ିଛି । କାହିଁକି ଛୋଟ ଛୁଆଟାକୁ ବାହାରକୁ ନେଉଛ ?

ଡାଆଣୀ ହେଇ ଲାଗିବା ଗୁଣିଆ ହେଇ ଝାଡ଼ିବା – ଏ ଘର ମାଉସୀ ସେ ଘର ପିଉସୀ– a man of two sides of a coin

.. ତା'କଥା କାହିଁକି ଉଠାଉଛ ? ସେ ଡାଆଣୀ ହେଇ ଲାଗେ ପୁଣି ଗୁଣିଆ ହେଇ ଝାଡ଼େ ।

ଡାଆଣୀ ଆଗରେ ପୁଅ ଜନମ କରିବା – ଜାଣିଶୁଣି ବିପଦ ବରଣ କରିବା– invite danger knowingly

.. ବୁଢ଼ାକାଳେ ଯୁବତୀ ସ୍ତ୍ରୀ ଲାଭ, ଡାଆଣୀ ଆଗରେ ପୁଅ ଜନମ କରିବା ସଙ୍ଗେ ସମାନ ।

ଡାକ ଛାଡ଼ିବା – ଚିତ୍କାର କରିବା, ଡାକଗାଡ଼ି ଚାଲିଯିବା– making noise/ departure of mail return of mail van/ train

.. ପିଲାଟା ଡାକ ଛାଡ଼ିବାରୁ ଡକାୟତମାନେ ଚାଲିଗଲେ ।

ଡାକ ପଡ଼ିବା – ବହୁଳ ପ୍ରଚାରିତ– highlighted

.. ନୂଆ ବାବୁଙ୍କ ନାଁ ଗାଁ ସାରା ଡାକ ପଡ଼ିଛି ।

ଡାଁଣ୍ଟରେ ବସିବା – ଅଭିମାନ କରିବା, ନିର୍ଭୟ ହେବା, ଗର୍ବ କରିବା, ସମର୍ଥ ହେବା– be proud of/ be able/ to concert

.. ସେ ତ ଡାଁଣ୍ଟରେ ବସିଛି । ଭଲ ଶାଢ଼ୀ ନ ହେଲେ କେବେ ଘୁଂଚିବନି ।

ଡାଳ କାଟିବା – ନିରାଶ୍ରୟ କରିବା– become homeless

.. ତା'ର ତ ସବୁ ଡାଳ କାଟି ସାରିଲାଣି । ଆଉ କି ପ୍ରତିଶୋଧ ନେବ ।

ଡାଲୁଅ ଯୋଗୁ କନିସରି ପାଣି ପାଇବା – ମହତ ଲୋକର ଆଶ୍ରୟ ଯୋଗୁ ସାଧାରଣ ଲୋକର ଲାଭ– for small benefits to trickle down from larger persons and causes

.. କାହାଘରେ ରହିଛ ? ଚଳିବା ଫର୍ଚ୍ଚ ହବନି ? ଡାଲୁଅ ଯୋଗୁ କନିସରି ସଦାବେଳେ ପାଣିପାଏ !

ଡାହାଣ ବାଁ କରିବା – ବେପରୁଆ– spend illegally/ aimlessly

.. ନିଜେ ତ ଡାହାଣ ବାଁ କରି ଖର୍ଚ୍ଚ କରିଛ । ଏବେ କାନ୍ଦୁଛ କାହିଁକି ?

ଡାହାଣ ହାତ – ମୁଖ୍ୟ ସହାୟକ– chief assistant/ real man

.. ବଡ଼ ବାବୁଙ୍କ ଡାହାଣ ହାତକୁ ଧରି ପାରିଲେ କାମ ହୋଇଯିବ ।

ଡାହାମିଛ – ପୁରାପୁରି ମିଛ– completely false/ down right false hood

.. ଏତେ ଲୋକଙ୍କ ଆଗରେ କେମିତି ଡାହାମିଛଟା କହିଲେ ?

ଡାଲି ଲାଗିବା – ଡାଲି ପୋଡ଼ିଯିବା– for things to go away

.. ଡାଲିଟା ଲାଗିଯାଇଛି । ଭଲ କୁଆଡୁ ଲାଗିବ ?

ଡିମ ଉଷୁମେଇବା – ବୃଥାରେ ସମୟ ନଷ୍ଟ କରିବା– wastage of time

.. ସେମାନେ ସବୁ ଲୁଟି ନେଲେଣି, ଘରେ ବସି ଡିମ ଉଷୁମେଉଥା ।

ଡିମିରିଫୁଲ – ଅଦୃଶ୍ୟ ବ୍ୟକ୍ତି ବା ବସ୍ତୁ– imaginary object/ invisible thing

.. କ'ଣ ଏତେ କାମ ପଡୁଛି ଯେ ତମେ ଡ଼ିମିରିଫୁଲ ହେବାକୁ ବସିଲଣି !

ଡିହରେ ବିଲୁଆ ଡେଇଁବା – ଆଭିଜାତ୍ୟ ତଳକୁ ଖସିଯିବା, ବଂଶରେ କେହି ନ ରିହିବା– ruin completely

.. ବୁଢ଼ୀଟା ଚାଲିଗଲା ପରେ ଏବେ ସେ ଡିହରେ ବିଲୁଆ ଡେଉଁଛନ୍ତି ।

ଡିହରେ ପୋଖରୀ ଖୋଳିବା – ଧ୍ୱଂସ କରିବା – to be ruined

.. ମୁଁ ଯଦି ତାଂକ ଡିହରେ ପୋଖରୀ ନ ଖୋଳିଛି, ମତେ ଚିହ୍ନିବ !

ଡୁବ ଦେବା – ନିଖୋଜ ହେବା– immersed/ dive in water

.. ସେ ଯେମିତି ଡୁବ ଦେଉଛି, ତା'କୁ କିଏ ଖୋଜି ପାଇବ ।

ଡୁବିଯିବା – କ୍ଷତିଗ୍ରସ୍ତ ହେବା– commit suicide/ to be spoiled

.. ସେ ଋଣରେ ଏମିତି ଡୁବିଚନ୍ତି, ରକ୍ଷା ପାଇବା ଅସମ୍ଭବ ।

ଡୁବି ଡୁବି ପାଣି ପିଇବା – ଆଖିର ଆଢୁଆଳରେ କାମ କରିବା– to work secretely

.. କେତେଦିନ ଡୁବି ଡୁବି ପାଣି ପିଇବ ? ତମର ଅସଲ ଚେହେରାଟା ସମସ୍ତେ ଜାଣିଗଲେଣି ।

ଡୁବୁ ଡୁବୁ – ଶେଷ ସୀମା ଛୁଇଁବା– be overwhelmed/ sinking

.. ତା'ଙ୍କର ଏଇନେ ଡୁବୁଡୁବୁ ଅବସ୍ଥା । ତା'ଙ୍କୁ କ'ଣ ସାହାଯ୍ୟ ମାଗିବ ?

ଡେଙ୍ଗା ମୁଣ୍ଡରେ ଠେଙ୍ଗା – ଆଗକୁ ବାହାରୁଥିବା ଲୋକ ବିପଦରେ ପଡ଼ିଥାଏ– to be in fore front of troublesome issues

.. ମୁରବୀ ତମେ, ଡେଙ୍ଗା ମୁଣ୍ଡରେ ଠେଙ୍ଗା । ଅପମାନ ତମେ ସହିବନି ତ ଆଉ କିଏ ସହିବ ?

ଡେରା ପକେଇବା – ଆସ୍ଥାନ ଜମେଇବା– to encamp/ to settle down

.. ବାବା ଗଛତଳେ ତା'ଙ୍କ ଆସ୍ଥାନ ପକେଇଛନ୍ତି ।

ଡେରା ବାନ୍ଧିବା – ବଂଚି ଯିବା–to earn livelihood

.. ଚାକିରୀଟା ହେଇଗଲାନି ଯେ ଡେରା ବାନ୍ଧିବାକୁ ସ୍ଥାନ ମିଳିଗଲା ।

ଡ଼ୋରି ଛିଣ୍ଡିବା – cut off relation

.. ବାହା ପରଠୁଁ ତା'ର ଡୋରି ଛିଣ୍ଡିଲା ।

ଡୋରି ବାନ୍ଧିବା – ବନ୍ଦ କରିବା– stop a work/ finish a work

.. କେବେଠାରୁ ତା'ର ପାଠ ପଢ଼ାରେ ଡୋରି ବନ୍ଧା ହେଲାଣି ।

# ଢ

ଢକା ବଜେଇବା – ଉଚ୍ଚ ସ୍ୱରରେ ପ୍ରଚାର କରିବା– wide publicity of a matter

.. ନିଜ ଗୁଣ କାହିଁକି ଢକା ବଜେଇ ହଉଛ ?

ଢକା ପଡ଼ିବା – ରାଷ୍ଟ୍ର ହେବା, ପ୍ରଚାର ହେବା– be disclosed/ reported

.. ଗୁଳିକାଣ୍ଡ ଖବର ସହଜେ ଲୁଚିବନି, ଢକା ପଡ଼ିଗଲାଣି ।

ଢକା ପିଟିବା – ନିଜର ପ୍ରଶଂସା ନିଜେ କରିବା– own publicity by someone

.. ଢକା ପିଟିବା ଛାଡ଼ି କାମ ଉପରକୁ ଆସ ।

ଢପ ଚିକ୍କଣ – ଉପର ଚାକଚକ୍ୟ– to bring about superficial and cosmetic changes living the core of the matter untouched

.. ଢପ ଚିକ୍କଣ କଥାରେ ପେଟ ପୂରେନା ।

ଢମ ବାହାର କରିବା – ବାହାଦୁରି ମାରିବା– boasting/ to brag

.. ପାଖରେ ପଇସାଟିଏ ନାହିଁ । କାହିଁକି ଏତେ ଢମ ବାହାର କରୁଛ ?

ଢମଣା ସାପ – ନିରୀହ ବ୍ୟକ୍ତି– innocent/ indifferent

.. ସେ ତ ଢମଣା ସାପ । ତା' ମଥାରେ କ'ଣ ଦୋଷ ଲଦୁଛ ?

ଢଳ ଢଳ – ସୁନ୍ଦର– graceful

.. ତା'ର ଢଳ ଢଳ ଚେହେରା ଦେଖି କିଏ ଖୁସି ନ ହେବ !

ଢଳ ଢଳ କରିବା – ଦବେଇ ଆସିବା, ଝକଝକ ଦିଶିବା– glistening/shinning

.. ତା'ଙ୍କ ଆଖିରେ ଲୁହ ଢଳ ଢଳ କରୁଛି ।

ଢଳି ପଡ଼ିବା – ଅନ୍ୟକୁ ସମର୍ଥନ କରିବା– to be onesided

.. ସେ ପଟକୁ ଢଳି ପଡ଼ି କ'ଣଟା ଲାଭ ପାଇଲ ?

ଢିଙ୍କି ଅବତାର – ନିର୍ବୋଧ, ନିଷ୍କର୍ମା– foolish/inefficient/useless

.. ଏମିତି ଢିଙ୍କି ଅବତାର ହେଲେ ଖାଇବାକୁ ମିଳିବନି ।

ଢିଙ୍କି ଗିଳିବା – ଅଯଥାର୍ଥ, ମୂର୍ଖାମି– stop tall talking

.. ସେ ଢିଙ୍କିଗିଳିବା କଥାବାର୍ତ୍ତା ବନ୍ଦ କରି କାମରେ କରି ଦେଖା ।

ଢିଙ୍କିଗିଳା – ମୂର୍ଖ– ignorant/stupid

.. ସେ ଢିଙ୍କିଗିଳା କଥାରେ ପଡ଼ନି । କ୍ଷଣକରେ ପ୍ରାଣ ଚାଲିଯିବ ।

ଢିଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟିବା – ଅଭାଗାର ଭାଗ୍ୟ କେବେ ବି ଫେରେନା – to habit is second nature

.. ତାଙ୍କୁ କଣ ଚାଷ ଡରାଉଛ ? ଢିଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟିବ ।

ଢିଙ୍କିଶାଳରୁ ଢେଙ୍କାନାଳ – ବିସ୍ତୃତ ଆଲୋଚନା, ତଳ ଲୋକର ଉପର ଚିନ୍ତା– to discuss

A to Z

.. କିଛି ତ କରିପାରିବନି, ଡିକିଂଶାଳାରୁ ଢେଙ୍କାନାଳ ଯାଏ କଥା ପକେଇ ଲାଭ କ'ଣ ?

ଢେଣ୍ଡୁରା ପିଟିବା – ପ୍ରଚାର କରିବା– made public/ to beating the drain

.. ଥରେ ତ କହିଲ । କାହିଁକି ଏତେ ଢେଣ୍ଡୁରା ପିଟି ହଉଛ ?

ଢିଲା ଛାଡ଼ିବା – ଅଙ୍କୁଶ ହୀନ– without harness

.. ତା'ଙ୍କୁ ଢିଲା ଛାଡ଼ିଦେଲେ ସେ ଆଉ ମଣିଷ ମାନିବନି ।

ଢିଲା ପଡ଼ିବା – ଶିଥିଳ ହେବା– after decreasing the pressure

.. କାମ ଢିଲା ପଡ଼ିବାରୁ ମୁଁ ଆସିପାରିଲି ।

ଢିଲାପଣିଆ – ଆଳସ୍ୟ, ଶୈଥିଲ୍ୟ– lazyness/irregularity

.. ତା'ଙ୍କ ଢିଲା ପଣିଆରୁ ଏ କାର୍ଯ୍ୟ ଆମ ହାତରୁ ଖସିଗଲା ।

ଢୋକ ଗିଳିବା – ଘୃଣା କରିବା, କଥା କହିବାବେଳେ ଇତସ୍ତତ ହେବା ବା କୁଣ୍ଠା ପ୍ରକାଶ କରିବା– to hegitate/ to be reluctant

.. ସେ ଏଇନେ ଢୋକ ଗିଳିଛି, କିଛି କହୁନି । ସମୟ ପଡ଼ିଲେ ଛାଡ଼ିବନି ।

ଢୋକେ ପିଇ ଦଣ୍ଡେ ଜୀଇବା – କୌଣସି ପ୍ରକାରେ ଚଳିଯିବା, ନିଅଣ୍ଟିଆ ଅବସ୍ଥା– situation of shortage/ somehow to manage

.. ଢୋକେ ପିଇ ଦଣ୍ଡେ ଜୀଇ କୌଣସି ପ୍ରକାରେ ଏ ବର୍ଷଟା ଟାଳିଦିଅ ।

ଢୋଲ ପିଟିବା – ପ୍ରଘଟ କରିବା– to blow one's trumpet/ to spread the message

.. ଚାରିଆଡ଼େ ତ ଢୋଲ ପିଟି ସାରିଲେଣି । ଏବେ ଆଉ ଲୁଚାଉଛ କାହିଁକି ?

ଢୋଲ ଭିତରେ ମୂଷା – ଭିତରେ ଥାଇ କ୍ଷତିକରିବା, ବିଶ୍ୱାସୀ ଲୋକର ଅବିଶ୍ୱାସ କାର୍ଯ୍ୟ– a serpent in the garden

.. ବାପ ସିନା ଧାର୍ମିକ ହେଲେ ପୁଅ ତା' ବାଟରେ । ଢୋଲ ଭିତରେ ମୂଷା । କହିବ କାହକୁ ?

## ତ

ତଣ୍ଟିରେ ଲାଗିବା – ମନେ ପଡ଼ିବା – to remember

ତଣ୍ଟି କାଟିବା – ଜୀବିକା ବୁଡ଼େଇବା– cut one's pocket/ ruin a person

.. କାମଟା ବନ୍ଦ କରିଦେଲ । ଗରିବଙ୍କ ତଣ୍ଟି କାଟି କି ଲାଭ ପାଇଲ ?

ତଣ୍ଟି ପଡିବା/ ତଣ୍ଟି ବସିବା – ଗଳା ବସିଯିବା– ତଣ୍ଟି କାଟିବା – ଜୀବିକା ବୁଡ଼େଇବା– voice becoming inaudible/ hoarseness of voice

.. ତଣ୍ଟି ପଡ଼ିଯାଇଥିବାରୁ ସେ କଥାବାର୍ତ୍ତା କରିପାରୁନାହାନ୍ତି ।

ତତଲା ପାଣିରେ ଘର ପୋଡ଼ିବା – ଅସମ୍ଭବ କଥା ବା କାର୍ଯ୍ୟ– impossible happening

.. ସେ କ'ଣ ଗର୍ଜୁଛି ଗର୍ଜୁ । ତତଲା ପାଣିରେ ଘର ପୋଡ଼ିଲାଣି ନା ପୋଡ଼ିବ ?

ତନ୍ତୀ କୁହୁଡ଼ି ପହଁରିବା – ନିର୍ବୋଧର ଅଯଥା ପରିଶ୍ରମ – undue labour by a foolish

.. ସେ ଧନ୍ଦାରେ ମୁଁ ପଶିଲେ ଖାଲି ତନ୍ତୀ କୁହୁଡ଼ି ପହଁରିବା ସାରହେବ ।

ତଫାତ କରିବା – ଦୂର କରିବା, ବିଚ୍ଛିନ୍ନ କରିବା, ପର କରିବା, ଫାଟ ସୃଷ୍ଟି କରିବା– ତଣ୍ଟି କାଟିବା – ଜୀବିକା ବୁଡ଼େଇବା– separate a thing

.. ଦୁଇଭାଇଙ୍କ ଭିତରେ ତଫାତ କରି କ'ଣଟା ପାଇଲ ?

ତଫାତ ହେବା – ବିଚ୍ଛିନ୍ନ ହେବା, ପୃଥକ ହେବା– ତଣ୍ଟି କାଟିବା – ଜୀବିକା ବୁଡ଼େଇବା– be separated/ to differentiate

.. ସେ ଦୁହେଁ ତଫାତ ହେବା କିଛି ବିଚିତ୍ର କଥା ନୁହେଁ ।

ତମ୍ବା ପାତିଆରେ ମୁଣ୍ଡ ବାନ୍ଧିବା – ଅମର ରହିବାର ଆଶା ପୋଷଣ କରିବା– to think that fortune eternal

.. ସେ ତ ତମ୍ବା ପାତିଆରେ ମୁଣ୍ଡ ବାନ୍ଧିଛି । ମରିବ କାହିଁକି ?

ତର ନ ସହିବା – ଶୀଘ୍ର ଶେଷ କରିବା– finishing swiftly

.. ବାପ ମଲାର ଦୁଇଘଣ୍ଟା ନ ପୁରୁଣୁ ତା'ଙ୍କୁ ଯମ ଉଠେଇବାକୁ ତର ସହିଲାନି ।

ତଳତଳିଆ – lowest/left at the bottom

ତଳି ତଳାନ୍ତ କରିବା – ସର୍ବନାଶ କରିବା– to ruin/ drained to the last drop

.. ତା'କୁ ତଳି ତଳାନ୍ତ କଲାପରେ ବି ତମ ମନ ବୁଝିଲାନି ?

ତଳେ ତଳେ – ଭିତରେ ଭିତରେ– secretely/ to be fray faith secretely

.. ତଳେ ତଳେ ସେ ସମସ୍ତଙ୍କ ଚେର କାଟୁଛି, କେହି କିଛି ଜାଣି ପାରୁନାହାନ୍ତି ।

ତଷ୍ଟୁକୁଟିବା – ବାଜେ କାମରେ ସମୟ ନଷ୍ଟ କରିବା– wastage of time in vague works

.. କେତେ ଦିନ ଏ ତାସ୍ ଖେଳାରେ ତଷ୍ଟୁ କୁଟୁଥିବ ? କାମଧନ୍ଦା କର ।

ତାଉ ଖାଇବା – ଅତ୍ୟଧିକ ରାଗିଯିବା - be very hot/ to be enraged

ତାଚ୍ଛଲ୍ୟ କରିବା– ଉପେକ୍ଷାପରିବା – neglect/disregard

ତାଟଙ୍କା ଲାଗିବା– ଛାନିଆହେବା/ ବିସ୍ମିତ ହେବା– alarmed/astonished

ତାଟି କବାଟ ପଡ଼ିବା – ଅତ୍ୟଧିକ ଭୟ– dead silence/ intimi dated

.. ଡକାୟତ ଭୟରେ ଗାଁ ଲୋକଙ୍କ ତାଟି କବାଟ ପଡ଼ିଗଲାଣି ।

ତାଥେଇ ତାଥେଇ ହେବା – ଆନନ୍ଦରେ ନାଚି ଉଠିବା– overwhelmed with joy

.. ଆଇ.ଏ.ଏସ. ପାଇଥିବାରୁ ପୁଅ ଖାଲି ତାଥେଇ ତାଥେଇ ହଉଛି ।

ତାଣ୍ଡବ ସୃଷ୍ଟି କରିବା– ଭୀଷଣ କଳହ – violent quarrel

ତାଳ ପକେଇବା – ସ୍ୱର ଲୟ ଠିକ୍ କରିବା– to set the tune

.. ତାଳ ପକେଇ ଗୀତ ବୋଲିଲେ ତା'ହା ଶ୍ରୁତିମଧୁର ହୋଇଥାଏ ।

ତାଳ ପଡ଼ିବା – ବିପଦ ପଡ଼ିବା– put into trouble

.. ପିଠିରେ ତାଳ ପଡ଼ିଲେ ମଜା ବାହାରିବ ।

ତାଳ କାଟିବା – ଗାନରେ ତା'ଳ ଭଙ୍ଗ କରିବା– to interrupt the tuning in the middle

.. ବାରମ୍ବାର ତାଳ କଟିବାରୁ ସେ କିଛି ପୁରସ୍କାର ପାଇଲେ ନାହିଁ ।

ତାଳକଟା – କାଣ୍ଡଜ୍ଞାନ ହୀନ ବ୍ୟକ୍ତି– ignorant/stupid

.. ସେ ତାଳକଟା ସାଙ୍ଗରେ କିଏ କଥାବାର୍ତ୍ତା କରିବ ? କାହାର ଇଜ୍ଜତକୁ ଭୟ ନାହିଁ ?

ତାଳ ଦେବା – ଖାପ ଖୁଆଇ ଚାଲିବା– to adjust/ to emulate/ to tally

.. ବାପର କାମ ସହିତ ତାଳ ଦେଇ ପୁଅ ଚାଲିଛି ।

ତାଳି ମାରିବା – କାମ ଶେଷ କରିବା– to finish the work/ to patch up

.. ଆରେ ଭାଇ ଯଲ୍‌ଦି ତାଳି ମାର । କେତେବେଳେ ଯାଏ ବସି ରହିବ ? ଘରକୁ ଯିବା ।

ତାସର ଘର – କ୍ଷଣସ୍ଥାୟୀ ଘର– shortlived/ ephemeral

.. ଏତେବଡ଼ ପରିବାରଟା ତାସର ଘର ଭଳି ଭୂଷୁଡ଼ି ପଡ଼ିଲା ।

ତ୍ରାହି ତ୍ରାହି ଡାକ ଛାଡ଼ିବା – ବିପଦରେ ପଡ଼ି ସାହାଯ୍ୟ ପାଇଁ ଆକୁଳ ପ୍ରାର୍ଥନା– try for help

.. ଗତ ବର୍ଷ ମହାବନ୍ୟାବେଳେ ଲୋକେ ତ୍ରାହି ତ୍ରାହି ଡାକ ଛାଡୁଥିଲେ ।

ତାଲା ଲାଗିବା – କିଛି ନ କହବା– to be silent/ speak nothing

.. ତୋ ପାଟିରେ କ'ଣ ତାଲା ଲାଗିଥିଲା ? କହିଲୁନି ?

ତାଲା ଝୁଲିବା – କାର୍ଯ୍ୟବନ୍ଦ ହେବା, ଅକାମି ହେବା – to be looked up/ to be invalid

.. କାରଖାନାରେ ଆଜିଠାରୁ ତା'ଲା ଝୁଲିଲା ।

ତିନି ଘରର କୁଣିଆ – ସବୁଯାଗାରେ ହାଜିରା ପକେଇବା, ସମସ୍ତଙ୍କୁ ନେଇ ଚଳିବା– one who forces to carry everybody

.. ସାତ ଭଉଣୀରେ ଗୋଟିଏ ଭାଇ । କ'ଣ କରିବ, ତିନି ଘରର କୁଣିଆ ହୋଇ ତ ଚଳିବାକୁ ପଡ଼ିବ ।

ତିନି ପାଞ୍ଚିରୁ ଯିବା – ସର୍ବନାଶ– lost completely/ wiped out

.. ଲୋକଟା ତିନି ପାଞ୍ଚିରୁ ଗଲା ପରେ ବି ସେ ଅଭ୍ୟାସ ଛାଡୁନି ।

ତିନି ତୁଣ୍ଡରେ ଛେଳି କୁକୁର – ମିଥ୍ୟା ହେଲେ ବି ବହୁମତ ଗ୍ରହଣୀୟ– a lie told thousand times is truth

.. ଦୋଷ ନ କରି ମଧ୍ୟ ସେ ଅଯଥା ଦଣ୍ଡ ପାଇବାର କାରଣ ତିନି ତୁଣ୍ଡରେ ଛେଳି ବି କୁକୁର ।

ତିନି ଥେଣ୍ଟିଆ କାକୁଡ଼ି ବାଡ଼ି – ଯେଉଁଠି କେହି କାହାକୁ ମାନନ୍ତି ନାହିଁ– nobody responds to anybody

.. ସେଇଟା ଘର ନୁହେଁ, ଗୋଟାଏ ତିନି ଥେଣ୍ଟିଆ କାକୁଡ଼ି ବାଡ଼ି । ମୁରବୀ କୋଉଠୁ ଆସିବ ?

ତିନି ସେଣାରେ ପାଣି ଉଠିବା – ବହୁ ଲୋକଙ୍କୁ ନେଇ କୌଣସି ପ୍ରକାରେ କାମ କରାଇ ନେବା, ଅସମ୍ଭବ ବ୍ୟାପାର– impossible affair

.. ଏତେବଡ଼ ପରିବାରର ମୁରବୀ ଯେତେବେଳେ, କଳି ଅକଳିରେ ତିନି ସେଣାରେ ପାଣି ଉଠେଇବାକୁ ପଡ଼ିବ ।

ତ୍ରିଭୁବନ ଅନ୍ଧାର –ବାଟ ନ ଦେଖାଯିବା– helpless/discouraged

.. ପରୀକ୍ଷାରେ ଫେଲ ହେଲାପରେ ତା'ଙ୍କୁ ତ୍ରିଭୂବନ ଅନ୍ଧାର ଦେଖାଗଲା ।

ତୀର୍ଥକାକ – ଅନ୍ୟପାଖରୁ କିଛି ପାଇବା ଆଶାରେ ଅପେକ୍ଷା କରୁଥିବା ବ୍ୟକ୍ତି– waiting in expectation

.. ତୀର୍ଥକାକ ଭଳି ଆଉ ବସି କିଛି ଲାଭ ନାହିଁ । ଏଥର ଘରକୁ ଫେର ।

ତିଳ ପକେଇବାକୁ ସ୍ଥାନ ନ ମିଳିବା – ପ୍ରବଳ ଭିଡ଼ ହେବା– heavy rush

.. ରଥ ପଡ଼ିଆରେ ଏତେ ଲୋକ ଯେ ତିଳ ପକେଇବାକୁ ସ୍ଥାନ ନାହିଁ ।

ତିଳ ତିଳ କରିବା – ଶେଷ କରିବା– to give up oneself completely

.. ପିଲାମାନଙ୍କ ପାଇଁ ସେ ନିଜକୁ ତିଳ ତିଳ କରି ଦଗଧି କରିଛନ୍ତି ।

ତିଳକୁ ତା'ଳ କରିବା – କଥାକୁ ବଢ଼େଇ କରି କହିବା– to make a mountain of a mole hill

.. ତା'ଙ୍କୁ ବୁଝେଇ କିଛି ଲାଭ ନାହଁ । କାରଣ ତିଳକୁ ତା'ଳ କରିବା ହେଉଛି ତା'ଙ୍କର ଅଭ୍ୟାସ ।

ତ୍ରିଶଙ୍କୁ ଅବସ୍ଥା – ଯାହାର ଭିତ୍ତି ଭୂମି ନଥାଏ, ଶୂନ୍ୟରେ ଝୁଲୁଥିବା– to stand between two stools

ଦୁଇ ମାଲିକଙ୍କ କଳି ସମାଧାନ କରିବାକୁ ଯାଇ ବିଚରା କିରାଣୀଟି ତ୍ରିଶଙ୍କୁ ଅବସ୍ଥାରେ ପଡ଼ିଯାଇଛି ।

ତୁଠ ପଥର – ଅକର୍ମା– useless

.. ସେଇଟା ତୁଠ ପଥର । ତା' ଦ୍ୱାରା ଶାଗ ସିଝିବ ନାହିଁ ।

ତୁଠ ଜଗିବା – ନିଜ ପାଳି ପାଇଁ ଅପେକ୍ଷା କରିବା– wait for own term

.. କେତେ ଆଉ ତୁଠ ଜଗିବ ? ଯମ କ'ଣ ତା'କୁ ନେଉଛି ?

ତୁଣ୍ଡ ବାଇଦ – ଅପପ୍ରଚାର– rumour/ false propaganda

.. ତୁଣ୍ଡ ବାଇଦକୁ ବିଶ୍ୱାସ କରି ତମେ ବୋହୂଟାକୁ ତଡ଼ିଦେଲ ?

ତୁଣ୍ଡରେ ଧରିବା– ଉଚ୍ଚାରଣ କରିବା, କହିବା – to speak/ to utter

ତୁଣ୍ଡ ସୁତୁଣ୍ଡ ହେବା – କଥା ଅନୁସାରେ କାର୍ଯ୍ୟ ହେବା– let the words come true

.. ତୋ ତୁଣ୍ଡ ସୁତୁଣ୍ଡ ହେଉ, ମୋ ପୁଅ ଘରକୁ ଶୀଘ୍ର ଫେରିଆସୁ ।

ତୁମ୍ବିତୋଫାନ କରିବା – ତର୍ଜନ ଗର୍ଜନ କରିବା– make uproar

.. ଘଣ୍ଟାଏ ତୁମ୍ବିତୋଫାନ କଲାପରେ ସେ ଏବେ ଶାନ୍ତ ପଡ଼ିଛି ।

ତୁଳସୀ ବଣର ବାଘ – ଠକ, ଭଣ୍ଡ ତପସ୍ୱୀ – cheat/ religious hypocrite

.. ସେ ତ ତୁଳସୀ ବଣର ବାଘ, ତା'କୁ ବିଶ୍ୱାସ କରିଲେ ମରିବ ।

ତୁଳସୀ ଦୁଇ ପତ୍ରରୁ ବାସିବା – ଭଲଗୁଣ ମୂଳରୁ ଜଣା ପଡ଼ିବା– morning shows the day

.. ତୁଳସୀ ଦୁଇ ପତ୍ରରୁ ବାସିବା ପରି ଗାନ୍ଧିଜୀଙ୍କ ଗୁଣ ପିଲାଦିନରୁ ଚହଟି ଉଠିଥିଲା ।

ତୁଳୀ ମାରିବା – ରଙ୍ଗ କରିବା, ଚିତ୍ର କରିବା– to point/ draw the picture

.. ନିଜେ ଠାକୁର ତୁଳୀ ମାରିଥିଲେ । ସମସ୍ତେ ପସନ୍ଦ କରିବେନି ?

ତେପନ ପୁରୁଷ ଉଖାଳିବା – ଗାଳି ଦେବା, ଗୋହି ଖୋଳିବା– to blame/ call bad names

.. ସେ ଯେମିତି ତେପନ ପୁରୁଷ ଉଖାଳୁଛି, କୋଉ ଭଦ୍ରଲୋକ ତା'ପାଖକୁ ଯିବ ?

ତେର ଦିନିଆ ଯମ – କ୍ଷଣ ସ୍ଥାୟୀ ମାଲିକାନା– temporary ownership

.. ସେ ତ ତେର ଦିନିଆ ଯମ, ତାକୁ କ'ଣ ଡରୁଛ ?

ତେଲଦେବା/ ତେଲ ମାରିବା – ଖୋସାମତ କରିବା– to flatter/ to adulate

.. ଅନ୍ୟକୁ ତେଲ ମାରିବା କେତେଦିନ ଚଳିବ ?

ତେଲ ବାହାର କରିବା – cause a person to labour very hard

ତେଲ ବାହାରିଯିବା – being much hurt

ତେଲ ଘଡ଼ିକି ଆଶା ପୁଅ ମୁଣ୍ଡକୁ ଆଶା – ବିନା ଖର୍ଚ୍ଚରେ ଅଭାବ ପୂରଣ କରିବା ଇଚ୍ଛା– to eat the cake and have it too

.. ତେଲ ଘଡ଼ିକି ଆଶା ପୁଅ ମୁଣ୍ଡକୁ ଆଶା, ଏମିତି ଅବସ୍ଥାରେ କାମ ହେଲାଣି ନା' ହେବ !

ତେଲ ଲୁଣର ସଂସାର – ଅନ୍ନ ସଂସ୍ଥାନ ବ୍ୟବସ୍ଥା– to make provision for one

.. ହାତକୁ ଦି ହାତ ହେବା ପୂର୍ବରୁ ଆଗ ତେଲ ଲୁଣର ସଂସାର ବିଷୟରେ ଚିନ୍ତାକର ।

ତେଲିଆ ମୁଣ୍ଡରେ ତେଲ – ଯାହାର ଅଧିକ ଅଛି ତା'କୁ ହିଁ ଦେବା– to carry coal to New Castle

.. ଗରିବକୁ କିଏ କାହିଁକି ସାହାଯ୍ୟ କରିବ ? ସମସ୍ତେ ତେଲିଆ ମୁଣ୍ଡରେ ତେଲ ଢାଳିବାରେ ବ୍ୟସ୍ତ ।

ତୋଡ଼ କାଢ଼ିବା – ଫରମାସି ବଢେଇବା, ବଡ଼ ବଡ଼ କଥା କହିବା– boasting/ tall talk

.. ଆରେ ବାବା, ସେ ଯେଉଁ ତୋଡ଼ କାଢୁଛି, ତା' ପାଖକୁ କିଏ ଯିବ ?

ତୋଳା – ପଣ୍ୟଚାନ୍ଦା (ଏକ ପ୍ରକାର ଖଜଣା)– measure unit/ a kind of tax

.. ମ୍ୟାନେଜର ପ୍ରତି ହାଟପାଳି ତୋଳା ଆଦାୟ କରେ ।

ତୋଳି ଧରିବା – ପ୍ରସଙ୍ଗ ଉତ୍ଥାପନ କରିବା– to raise an issue/ broch a theme

.. ଏ ବିଷୟରେ ମୁଁ ମୋର ମତ ସମସ୍ତଙ୍କ ଆଗରେ ତୋଳି ଧରିବାକୁ ଅନୁମତି ଚାହୁଁଛି ।

## ଥ

ଥ'ଧରିବା – ସ୍ଥିର ହେବା– be calm and quiet/ be serene

.. ଯାହାତ ହେବାର ହେଲାଣି, ଏଣିକି ଥ'ଧରି କେମିତି କାମଟା ସରିବ ଚିନ୍ତା କର ।

ଥ' ମାରିଯିବା – ଅବାକ୍ ହୋଇଯିବା– being dumbfounded

.. ଦାମା ହଳୁଆର ଇଂରାଜୀ ଭାଷଣ ଶୁଣି ମୁଁ ତ ଥ'ମାରିଗଲି ।

ଥ' ହେବା – ସ୍ଥିର ହେବା, ସ୍ଥାୟୀଭାବେ କିଛି କରିବା– be settled/ do something permanently

.. ବୁଲାବୁଲି ତ ବହୁତ କଲ, ଏଣିକି ଥ'ହୁଅ ।

ଥ'ପାଇବା – କୂଳ କିନାରା ପାଇବା, ଦିଗ ପାଇବା– to be settled/ protected

.. ଏ ମହା ପ୍ରଳୟରେ ପିଲାଟା ଥ'ପାଇବା ଭଳି ଲାଗୁନି ।

ଥକା ହେଇ ବସିବା – ଚିନ୍ତାରେ ବସି ପଡ଼ିବା, ବୁଦ୍ଧି ଶୂନ୍ୟ ହୋଇଯିବା– dumbfounded/ speechless

.. ବାପାଙ୍କ ଆକସ୍ମିକ ମୃତ୍ୟୁରେ ସେ ଥକା ହେଇ ବସିପଡ଼ିଲେ ।

ଥଣ୍ଡା ପଡ଼ିବା – ନିରୁତ୍ସାହିତ ହେବା– discouraged/ agreeable

.. ଦରମା ନ ପାଇ ସେମାନେ ଥଣ୍ଡା ପଡ଼ିଗଲେଣି । ଆଉ ଧର୍ମଘଟ ହେବନି ।

ଥଣ୍ଡା କରିବା – ଦଣ୍ଡ ଦେବା, ଚୁପ୍ କରିଦେବା– to punish/ make silent/ comfort

.. ସେ ଯେମିତି ଉଡ଼୍‌ଭଡ଼୍ ହଉଥିଲା, ଦେଇଛି ତା'କୁ ଥଣ୍ଡା କରି ।

ଥଣ୍ଡା ପାଣିରେ ଘର ପୋଡ଼ିବା – ଅସମ୍ଭବ ଘଟଣା ଘଟିବା– impossible happening

.. କାହିଁକି ବାଜେ କଥା ଗପୁଛ ? ଥଣ୍ଡା ପାଣିରେ ଘର ପୋଡ଼ିଲାଣି ନା ପୋଡ଼ିବ !

ଥଣ୍ଟେଇ ବସିବା – ଆଶାର ନିଶାରେ ବସିରହିବା, ଚାହିଁ ବସିବା– eagerly waiting

.. ମହାଜନତ ଫେରାର । କିଏ ଟଙ୍କା ଦେବ ? କାହିଁକି ଥଣ୍ଟେଇ ବସିଛ ?

ଥତମତ ହେବା – କିଛି ସ୍ଥିର କରି ନ ପାରିବା, ଘାବରେଇ ଯିବା– be puzzled

.. କଡ଼ା ଧମକରେ ପିଲାଟା ଏମିତି ଥତମତ ହେଲା ଯେ କଥାବାର୍ତ୍ତା କରିପାରିଲାନି ।

ଥର ହର ହେବା – ଭୟରେ କମ୍ପିବା– shake in fear

.. ସାମନାରେ ଭାଲୁ ଦେଖି ସେ ଥର ହର ହେବାକୁ ଲାଗିଲା ।

ଥଳ ପାଇବା – ସ୍ଥିତି ବାରିବା– to be placed/ to be settled

.. ଥଳ ପାଇବା ଆଶାରେ ସେ ଘୁରି ବୁଲୁଥିଲା ।

ଥଳକୂଳ ନ ପାଇବା – କର୍ତ୍ତବ୍ୟ ସ୍ଥିର କରି ନ ପାରିବା– unable to decide

.. ମହାବାତ୍ୟାରେ ଲୋକେ କିଛି ଥଳକୂଳ ପାଉନଥିଲେ ।

ଥାକ କାଟିବା – ଥାକେ ଥାକେ ସଜାଡ଼ିବା– arrange in layers

.. ବହିଗୁଡ଼ାକ ଥାକ କାଟି ରଖ, ବାହାର କରିବାକୁ ଅସିବିଧା ହେବନି ।

ଥାଟ ପଟାଳି ଭାଙ୍ଗିବା – ପ୍ରବଳ ଭିଡ଼ ଜମିବା– many people to crowd at a place

.. ମେଳଣ ପଡ଼ିଆରେ ଏ ବର୍ଷ ଥାଟ ପଟାଳି ଭାଙ୍ଗୁଛି । ସୋରିଷ ପକେଇବାକୁ ଯାଗା ନାହିଁ ।

ଥିର ପାଣି ଗୋଳି କରିବା – ଅସ୍ଥିରତା ସୃଷ୍ଟି କରିବା– creating disturbance

.. ତା'ଙ୍କ ପରିବାର ଭିତରେ ଥିର ପାଣି ଗୋଳି କଲେ ଫାଇଦା ଉଠେଇବାକୁ ସହଜ ହେବ ।

ଥୁ ଥୁ କରିବା – ଘୃଣା କରିବା, ନିନ୍ଦା କରିବା– to hate/ to reproach

.. ତମ ଝିଅ କଥା ଶୁଣିଲେ ଲୋକେ ଥୁ ଥୁ କରିବେ ।

ଥୁତ୍ରୁ ଥୁତ୍ରୁ – ଅତି ବୃଦ୍ଧ ବୟସ– too old/ aged/ senility

.. ଲୋକଟା ଯେମିତି ଥୁତ୍ରୁଥୁତ୍ରୁ ହଉଛି, କେତେବେଳେ ଯେ ପଡ଼ିଯିବ, କହିହବନି ।

ଥେଇ ଥେଇ ହେବା – ଗର୍ବରେ ଫାଟି ପଡ଼ିବା– arrogance of wealth

.. ଧନ ଥିବାରୁ ସେ ଏମିତି ଥେଇ ଥେଇ ହେଉଛି, ମଣିଷ ମାନୁନି ।

ଥୋକାଏ ଥୋକାଏ – ଗୋଛା ଗୋଛା, କିସ୍ତି କିସ୍ତି– by instalments/ in bundles

.. ଥୋକାଏ ଥୋକାଏ ମାଲେଇ ବୋହି ଆଣିଲେ, ଆଉ ପଛକୁ ବାଧିବନି ।

ଥୋଡ଼ ବଡ଼ି ଖଡ଼ା ଆଉ ଖଡ଼ା ବଡ଼ି ଥୋଡ଼ – ଗୋଟିଏ ଉପକରଣକୁ ଘୁରାଇ ଫେରାଇ ବ୍ୟବହାର କରିବା– presentation without newness

.. ଆଉ ନୂଆ କିଛି ଅଛି, ନା'ସେଇ ଥୋଡ଼ ବଡ଼ି ଖଡ଼ା ଆଉ ଖଡ଼ା ବଡ଼ି ଥୋଡ଼ ଦେଖାଇବ !

ଥୋପ ପକେଇବା – ଫନ୍ଦି କରିବା– put a tempting thing/ to conceit

.. ସେ ଯେମିତି ଥୋପ ପକେଇଛି, ନିଶ୍ଚୟ ଜିତିଯିବ ।

ଥୋପ ଗିଳିବା – ଅକ୍ତିଆରକୁ ଆସିବା– to be under control/ succumb to temptation

.. ଥୋପ ଗିଳିଛି ଯେତେବେଳେ, ମୋ ହାବୁଡ଼ରୁ ଯିବ କୁଆଡ଼େ ।

ଥୋବଣି ଫଟେଇବା – ମୁହଁ ଭାଙ୍ଗିବା– threatening to somebody

.. ପାଞ୍ଚ ତାରିଖ ଭିତରେ ଟଙ୍କା ନ ଦେଲେ ଥୋବଣି ଫଟେଇଦେବି ।

## ଦ

ଦଉଡ଼ି ଦେବା – ଆତ୍ମହତ୍ୟା କରିବା– commit suicide

.. କାଲି ରାତିରେ ଲୋକଟି ଗଳାରେ ଦଉଡ଼ି ଦେଇଛି ।

ଦଉଡ଼ି ଭାଙ୍ଗିବା – ଦଉଡ଼ି ବଳିବା– making rope/ twisting a rope

.. ସେ ଦଉଡ଼ି ଭାଙ୍ଗି ପେଟ ପୋଷନ୍ତି ।

ଦକ ଦକ କରିବା – ଯନ୍ତ୍ରଣା ଦେବା– (fiery ulcer) giving pain

.. ପୁରୁଣା କ୍ଷତଟା ଭାରି ଦକ ଦକ କଲାଣି ।

ଦଗା ଦେବା – ପ୍ରତାରଣା କରିବା, ଆଘାତ ଦେବା– to deceive/ defraud/ put to loss

.. ସେ ଏମିତି ଦଗା ଦେବ ବୋଲି କିଏ ଜାଣିଥିଲା ?

ଦଦରା ନାଆରେ ବସେଇ ଠେଲିଦେବା – ବିପଦକୁ ଠେଲିଦବା– putting someone into trouble

.. ଦୁଇ ଦୁଇଟା ପୁଅ ମଲେ ନାହିଁ ଯେ ବାପଟାକୁ ଦଦରା ନାଆରେ ବସେଇ ଠେଲିଦେଲେ ।

ଦପ୍ ଦପ୍ କରିବା – ଉଠ୍ ପଡ଼ ହେବା– palpitating of heart/ alarming

.. କଥାଟା ଶୁଣି ତା’ ଛାତି ଦପ୍ ଦପ୍ କରିବାକୁ ଲାଗିଲା ।

ଦଫା ନିକାଶ କରିବା – ଧ୍ୱଂସ କରିବା– to kill/ to ruin

.. ଶତ୍ରୁ ବୀରଦର୍ପରେ ଆମର ଦଫା ନିକାଶ କରିବା ପାଇଁ ଆଗେଇ ଆସୁଛି ।

ଦଫାରଫା କରିବା – ସମାଧାନ କରିବା – mar all prospects/ solve/settle

.. କଥାଟା ଦଫାରଫା ହେଲାପରେ ପୁଣି କାହିଁକି ଉଠଉଛ ?

ଦଫାକୁ ଦଫା – ଖେପାଏ ଖେପାଏ, ଥର ଥର– time to time/ by instalments/ once and again

.. ଦଫାକୁ ଦଫା ବର୍ଷା ଆସୁଛି ।

ଦମ୍ ମାରିବା – କିଛିଟା ବିଶ୍ରାମ ନେବା– taking sometime rest/ take breath

.. କିଛି ସମୟ ଦମ୍‌ମାରି ସେ ପୁଣି ଲଢ଼େଇରେ ଯୋଗଦେଲେ ।

ଦମ୍ ବାହାରିଯିବା – ଖୁବ୍ କ୍ଳାନ୍ତ ହୋଇ ପଡ଼ିବା– getting tired

.. ଖଟି ଖଟି ତା'ଙ୍କର ଦମ୍ ବାହାରି ଗଲାଣି ।

ଦର କଷିବା – ମୂଲଚାଲ ଠିକ୍ କରିବା– fixing the rate/ higgling

.. ଜିନିଷର ଦରକଷି ଠିକ୍ କର, ତା'ପରେ ଘରକୁ ଆଣିବ ।

ଦର କାଟିବା – ଦର କମାଇବା– decreasing price

.. ଦୋକାନୀ ପାଞ୍ଚ ପ୍ରତିଶତ ଦର କାଟିବାକୁ ଶେଷରେ ରାଜିହେଲା ।

ଦର କଞ୍ଚା – ଅଧା ଅଧା– partly/ partially

.. ଦର କଞ୍ଚା କରି କାମ କେବେ ଛାଡ଼ିବନି ।

ଦରଜା ବନ୍ଦ ହେବା – ନିଷିଦ୍ଧ ହେବା– prohibitted

.. ସନ୍ତ୍ରାସବାଦୀମାନଙ୍କ ପାଇଁ ଭାରତର ଦରଜା ବନ୍ଦ ହେଲା ।

ଦଳ ବାନ୍ଧିବା – ଦଳଗଠନ କରିବା– forming a group

.. ସେମାନେ ଏବେ ନୂଆ ଦଳ ବାନ୍ଧିବାକୁ ଆରମ୍ଭ କରଛନ୍ତି ।

ଦଳ ଛାଡ଼ିବା – ଗୋଷ୍ଠୀଚ୍ୟୁତ – castaway

.. ଦଳ ଛାଡ଼ିବା ପରେ ସେ ଖୁବ୍ ଏକାକୀ ହୋଇ ଯାଇଛନ୍ତି ।

ଦଳ ବଢ଼ିବା – ଦଳ ବିସ୍ତାର ଲାଭ କରିବା– to gather followers

.. ଦଳ ବଢ଼ିଲେ ନେତାର ଲାଭ, ହେଲେ ଜନତାର ନୁହେଁ ।

ଦଳେ ଦଳେ – ନାନା ଦଳରେ ବିଭକ୍ତ ହୋଇ, ବହୁ ସଂଖ୍ୟାରେ– in crowds/ groups

ଚାରି ଦିଗରୁ ଦଳେ ଦଳେ ମେଷପଲ ମାଡ଼ି ଆସିଲେ ।

ଦକ୍ଷଯଜ୍ଞ – ତୁମୁଳ କାଣ୍ଡ– tumultuous affair/ terrible fight

.. ସାମାନ୍ୟ କଥା ପାଇଁ ସେ ଘରେ ଦକ୍ଷଯଜ୍ଞ ସୃଷ୍ଟି କରିଦେଲେ ।

ଦକ୍ଷିଣା ଦେବା – ମାଡ଼ ଦେବା– beating / striking

.. ଏମିତି ଦକ୍ଷିଣା ଦିଅ ଯେମିତି ଆଉ କେବେ ଏ ଯାଗା ମାଡ଼ିବନି ।

ଦଶକଥା – ନାନାକଥା– many facts

.. ଦଶକଥାରେ ମଥା ଖେଳେଇ କିଛି ଲାଭନାହିଁ ।

ଦାଉସାଧିବା – ପ୍ରତିଶୋଧ ନେବା– to take revenge/ to make a bargain

.. ଦାଉ ସାଧିବାକୁ ଆଉ କେହି ମିଳିଲେ ନାହିଁ ? ଏଇ ଗରିବ ଲୋକଟା ଥିଲା ।

ଦାଖଲ ହେବା – ବିଶେଷ ଅବସ୍ଥା ପ୍ରାପ୍ତ ହେବା– approaching worse stage

.. ଖଟି ଖଟି ସେ ମଲା ଅବସ୍ଥାକୁ ଦାଖଲ ହେଲେଣି ।

ଦାଗ କାଟିବା – ଚିହ୍ନ ଦେବା, ପ୍ରଭାବ ବିସ୍ତାର କରିବା– to mark/ be effective

.. ନେତାଙ୍କ କଥା ସେମାନଙ୍କ ଉପରେ ବେଶ୍ ଦାଗ କାଟିଛି ।

ଦାଗ ହୋଇଯିବା – ସ୍ମୃତି ହୋଇଯିବା, କଳଙ୍କ– to be a spot/ memory/ stigma
.. ୧୫ ବର୍ଷ ତଳର ସେ ଘଟଣା ତା'ଙ୍କ ଜୀବନରେ ଦାଗ ହୋଇ ରହିଯାଇଛି ।

ଦାତାକର୍ଣ୍ଣ – ଉଦାର (ବ୍ୟଙ୍ଗାର୍ଥେ) – generous person/ very liberal
..ଦାତାକର୍ଣ୍ଣଟା ତ ! ଏଇନେ ସବୁ ଅଡ଼ାଡ଼ି ପକେଇବ !

ଦାନ ପଡ଼ିବା – ଭାଗ୍ୟ ଉଦୟ ହେବା– dawning/ commencement of good fortune
.. ଏତେଦିନେ ତା'ଙ୍କର ଦାନ ପଡ଼ିଲା । ଏଣିକି ଉଠିଯିବେ ।

ଦାନ ଉପରେ ଦକ୍ଷିଣା – ଲଗାତର ଅପବ୍ୟୟ– loosing money constantly
.. ଏ ଯାଏ ତ କରଜ ଶୁଝିଲ ନାହିଁ, ଆଉରି ମାଗୁଛ । କ'ଣ ଦାନ ଉପରେ ଦକ୍ଷିଣା ।

ଦାନାରେ ଧୂଳିଦେବା – ସୁବିଧା ସୁଯୋଗରୁ ବଂଚିତ କରିବା– put dust in one's dough
.. ଚାରି ଗୁଣ୍ଠ ଜମି ଛଡ଼େଇ ନେଇ ଗରିବ ଲୋକଟାର ଦାନାରେ ଧୂଳି ଦେଲ ?

ଦାନାପାଣି ଉଠିବା – ଜୀବିକା ବୁଡ଼ିବା– to loose job
.. ତା'ଙ୍କ କର୍ମଦୋଷ ପାଇଁ ବିଚରା ଦାନାପାଣି ଉଠିଗଲା ।

ଦାନା ମାରିବା – ତଳକୁ ଖସାଇବା, ଜବତ କରିବା, ଧ୍ୱଂସ କରିବା– to ruin/ deprive of one's livelihood
.. ସେ ଯେମିତି ତା ଦାନା ମାରିଛନ୍ତି, ଚେଷ୍ଟାକଲେ ବି ସେ ଉଠି ପାରିବନି ।

ଦାନାପାଣି ମାରିବା – ଚାକିରୀରୁ ତଡ଼ିଦେବା– discharged from service
.. ଲୋକଟାକୁ ହାତରେ ନ ମାରି, ତା' ଦାନାପାଣି ମାରିଦେଲେ ପାନେ ପାଇଯିବ ।

ଦାନା ବାନ୍ଧିବା – ମଜବୁତ ହେବା, ଦାନାରେ ପରିଣତ ହେବା (ଗୁଡ଼)– to take shape
.. କଥାଟା ଏବେ ଦାନାବାନ୍ଧିବାକୁ ଆରମ୍ଭ କରିଛି । ମାସେ ଦି'ମାସ ଭିତରେ ଠିକ୍ ହୋଇଯିବ ।

ଦାନ୍ତରେ କୁଟାଦେବା – ଦୋଷ ସ୍ୱୀକାର କରିବା– admitting own's fault/ indicating suppliant attitude
.. ଦାନ୍ତରେ କୁଟା ଦେଇ ମାଗୁଛି, ଛାଡ଼ି ଦିଅ ପିଲାଟାକୁ ।

ଦାନ୍ତ ଦେଖେଇବା – ବେଖାତିର କରିବା, ବ୍ୟଙ୍ଗ କରିବା– to satirise/ careless
.. କଥାଟା କ'ଣ ଆଗ ନ ଶୁଣି ସେ ଦାନ୍ତ ଦେଖେଇଦେଲା ।

ଦାନ୍ତ କିଲେଇବା/ ଦାନ୍ତ ନିକୁଟିବା – ଦାନ୍ତ ଦେଖାଇ ଅପ୍ରସ୍ତୁତ କରିବା– grin in anger or sulks
.. କଥାର ଗୁରୁତ୍ୱ ସେମାନେ କ'ଣ ବୁଝିବେ ? କଥା କଥାକେ ଦାନ୍ତ ନିକୁଟିବା ହେଲା ସେମାନଙ୍କର ପ୍ରକୃତି ।

ଦାନ୍ତ ବସେଇବା – କାମୁଡ଼ିବା– to bite/ stroke with tooth
.. କୁକୁରଟା ଯେମିତି ଦାନ୍ତ ବସେଇଛି, ଇଂଜେକସନ ନବାକୁ ହିଁ ପଡ଼ିବ ।

ଦାନ୍ତ ଭାଙ୍ଗିବା – ଗର୍ବ ଖର୍ବ କରିବା– curb the pride of/ humiliating a person

.. ବହୁଦିନ ପରେ ଯ'ହେଉ ତା'ର ଦାନ୍ତ ଭାଙ୍ଗିଛି ।

ଦାନ୍ତ କଡ଼ ମଡ଼ କରିବା – ଅତିଶୟ ରାଗିଯିବା– to sheath in anger

.. ତମ ଉପରେ ତ ସେ ସଦାବେଳେ ଦାନ୍ତ କଡ଼ମଡ଼ କରୁଛି ! କେମିତି ତମକଥା ତା'ଙ୍କୁ କହିବି ?

ଦାନ୍ତ ଲଗେଇ ଦେବା – ଝୁଣି ପକେଇବା, ଗାଳିଦେବା– tear into pieces/ to defend aggressively

.. ତା'ଘରୁ ଜିନିଷ ଅଣିବ ? ସେ ଦାନ୍ତ ଲଗେଇ ଦବଟି ?

ଦାନ୍ତୁରିର ହସିବା କାନ୍ଦିବା ସମାନ – ମୁହଁ ଦେଖି ମନର ଭାବ ବୁଝିବା କଷ୍ଟକର– as broad as long

.. ତା' ଭିତରଟାକୁ ନ ଦେଖିଲେ କେମିତି ଜାଣିବୁ ? ଦାନ୍ତୁରିର ତ ହସିବା କାନ୍ଦିବା ସମାନ ?

ଦାବି ରଖିବା – ଶାସନ କରିବା– to control

.. ଦୁଷ୍ଟ ପିଲାଟାକୁ ଏବେହୁଁ ଦାବି ନ ରଖିଲେ ସେ ଆଉ ମଣିଷ ମାନିବ ନାହିଁ ।

ଦିଅ ଗଢୁ ଗଢୁ ମାଙ୍କଡ଼ – ଅଧିକ ଯତ୍ନ କରୁ କରୁ ବିକୃତ ହେବା– construction with good interest ended in distress

.. ରାତି ଦିନ ଜଗି ରହି ପୁଅକୁ ପାଠ ପଢ଼ଉଥିଲେ । ପୁଅ ଫେରାର ହେଇଗଲା । ଦିଅ ଗଢୁ ଗଢୁ ମାଙ୍କଡ଼, ଏକଥ କହିବ କାହାକୁ ?

ଦିଅ ଖାଇ ଖଟୁଲି ଖାଇବା – ପୁରାପୁରି ଆତ୍ମସାତ କରିବା– to swallow/ to missappropriate completely

.. ସେ ଦିଅ ଖାଇ ଖଟୁଲି ଖାଇବା ଲୋକ । ତା'ଙ୍କ ହାତରେ କ'ଣ ଟଙ୍କା ଧଳି ଧରାଉଛ ?

ଦି' ଘରର କୁଣିଆ ଉପାସ ରହିବା – ବେଶି ଲୋକଙ୍କ ଉପରେ ନିର୍ଭର କରି ହତାଶ ହେବା– everybody's friend is nobody's friend

.. ଖାଇଲା ପତରରୁ ଉଠି ବେଶି ଖାଇବେ ବୋଲି ଜମିଦାର ଘରକୁ ଯାଇଥିଲେ । ହେଲେ ଭୋଜି ସରିଯାଇଥିଲା । ଦି' ଘରର କୁଣିଆ ଉପାସ ରହିବା ଭଳିଆ ହେଲା ।

ଦିଗବାଗ – କୂଳ କିନାରା– whereabouts

.. ତା'ଙ୍କ କଥାବାର୍ତ୍ତାର କିଛି ଦଗବାଗ ନଥାଏ ।

ଦିଗ୍‌ଗଜ ପଣ୍ଡିତ – ମହାମୂର୍ଖ (ବ୍ୟାଙ୍ଗାର୍ଥେ)– very learned person/ dunce

.. ଦିଗ୍‌ଗଜ ପଣ୍ଡିତ ଖପ୍ପରରେ ଥରେ ପଡ଼ିଗଲେ ଆଉ ରକ୍ଷା ନାହିଁ ।

ଦିନ କାଟିବା – ସମୟ ଅତିବାହିତ କରିବା, ଜୀବନ ବିତାଇବା– passing away of time/ manage to live

..ଅବସର ପରେ କୌଣସି ପ୍ରକାରେ ତା'ଙ୍କ ଦିନ କଟି ଯାଉଛି ।

ଦିନ ପଡ଼ିବା – ସୁଯୋଗ ପଡ଼ିବା – it is his day and he shall not loose the opportunity

ଏବେ ତା'ଙ୍କର ଦିନ ପଡ଼ିଛି, ସେ କେବେ ଛାଡ଼ିବେନି ।

ଦିନକୁ ରାତି କରିବା – ସତ୍ୟକୁ ମିଥ୍ୟା ବୋଲି ପ୍ରମାଣ କରିବା– downright falsehood

.. ରାଜୁଟା ବାଜେଲୋକ, ତା'ର କାମ ହେଲା ଦିନକୁ ରାତି କରିବା ।

ଦିନ ଗଣିବା – ଆତୁର ଭାବେ ପ୍ରତୀକ୍ଷା କରିବା– awaiting eagerly

.. ପୁଅ କେବେ ଜେଲ୍‌ରୁ ଆସିବ, ବାପ ବସି ଦିନ ଗଣୁଛି ।

ଦିନ ଗଡ଼ାଇବା – ଜାଣି ଶୁଣି ବିଳମ୍ବ କରିବା– passing away time/ delaying

.. ଭଡ଼ା ଦେବ ବୋଲି ସେ ଦିନ ଗଡ଼ାଇ ଚାଲିଛି ।

ଦିନ ଗଡ଼ିବା – ସୂର୍ଯ୍ୟାସ୍ତ ହେବା– passing away of proper time/ coming of afternoon

.. ଦିନ ଗଡ଼ିଲେ ଯାଇଁ ସେ ଖାଇବ, ତା' ପୂର୍ବରୁ ନୁହେଁ ।

ଦିନ ଦି ପହରେ – ପ୍ରକାଶ ଦିବାଲୋକରେ – at noon/publicly

.. ଦିନ ଦି ପହରେ ଡକାୟତମାନେ ବମ୍ ଫୁଟାଇ ଧନ ସଂପତ୍ତି ଲୁଟି ନେଲେ ।

ଦିନ ଦି'ପହରେ ଡକାୟତି – ପ୍ରକାଶ୍ୟ ପ୍ରତାରଣା– openly cheating

.. ଏଠାକା ଲୋକଙ୍କୁ ବିଶ୍ୱାସ ନାହିଁ, ସେମାନେ ଦିନ ଦି'ପହରେ ଡକାୟତି କଲାବାଲା ।

ଦିନେ ଦିନେ – ଦିବସ ସମୟରେ – in daytime

.. ଦିନେ ଦିନେ କାମ ଶେଷ କରି ପଳେଇଆସିବ । ସଂଧ୍ୟାଯାଏ ରହିବନି ।

ଦିଲ୍‌ଦାରିଆ – ଅକପଟ, ମଜାଦାର– open-hearted/ loving/ extravagant

.. ତା'ଙ୍କ ଭଳି ଦିଲ୍‌ଦାରିଆ ଲୋକ କୋଉଠି ମିଳିବେନି ।

ଦୀପତଳ ଅନ୍ଧାର – ପାଖ ବ୍ୟକ୍ତି ବା ବସ୍ତୁ ପ୍ରତି ଅନାଦର– nearer to Church farther from God

.. ଗାନ୍ଧୀ ଆଶ୍ରମରେ ରହି ତୁ କିଛି ଶିଖି ପାରିଲୁ ନାହିଁ ? ଦୀପ ତଳ ତ ଅନ୍ଧାର ।

ଦୀପ ଢେଙ୍କିଲେ ହାତ ଚିକ୍କଣ – ଅଭିଜ୍ଞତାରୁ ଲାଭବାନ୍– practice makes one perfect .

.. କ'ଣ କହୁଛ ସିଏ ଖାଉନି ? ସେ ଯେଉଁଠି ଅଛି, ଦୀପ ଢେଙ୍କିଲେ ହାତ ଚିକ୍‌କଣ ହବଟି !

ଦୀର୍ଘ ନିଶ୍ୱାସ ପକାଇବା – କ୍ଳାନ୍ତି ମେଣ୍ଟାଇବା– to sigh of relief

.. ପିଲାଙ୍କୁ ହାତକୁ ଦି'ହାତ କରିଦେଇ ଦାସବାବୁ ଏବେ ଦୀର୍ଘ ନିଶ୍ୱାସ ପକଉଛନ୍ତି ।

ଦୁଆରେ କଣ୍ଟା ବିଛାଇବା – ଯାତାୟତ ପଥରେ ବାଧା ସୃଷ୍ଟି କରିବା– obstruct one's way

.. ସେ ଯେମିତି ଭାବେ ଦୁଆରେ କଣ୍ଟା ବିଛାଇଛି, ତା'କୁ ଅତିକ୍ରମ କରିବା କାଠିକର ପାଠ ।

ଦୁଇ ପଇସା – ଅର୍ଥ– earning/ making money

.. ଦୁଇ ପଇସା କମେଇଲେ ଜାଣିବ, ଖର୍ଚ୍ଚର ମହତ କେତେ ।

ଦୁଇ ପଇସାର ମଣିଷ – ମୂଲ୍ୟହୀନ– valueless person/ worthless

.. ସେ ତ ଦୁଇ ପଇସାର ମଣିଷ । ତା'ସାଙ୍ଗରେ କ'ଣ କଥା ହବ ?

ଦୁଇ ନମ୍ବର କାରବାର – ଅସାଧୁ, ନିକୃଷ୍ଟ ଧନ୍ଦା– black marketing/ inferior work

.. ଦୁଇ ନମ୍ବର କାରବାର ବନ୍ଦ କର, ନଚେତ୍ ପୋଲିସ ଧରିବ ।

ଦୁଇ ନାବରେ ପାଦ ରଖିବା – ଦୁଇ ଆଡ଼କୁ ସମର୍ଥନ କରିବା, କିଛି ସ୍ଥିର କରି ନପାରିବା – take up two means/ between Scylla of Charibidis

.. ଯାହା କହିବା କଥା ସିଧା କୁହ । ଦୁଇ ନାବରେ ପାଦ ରଖି କଥା କୁହନି ।

ଦୁଇ ମୁଣ୍ଡିଆ ସାପ – ଏକ ସଙ୍ଗେ ଯିଏ ଦୁଇ ପ୍ରକାର ଆଚରଣ କରେ– be in a perilous state/ props at a time

.. ସେ ଲୋକଟାତ ଦୁଇ ମୁଣ୍ଡିଆ ସାପ । ତା'ଠାରୁ ଭଲ ବୁଦ୍ଧି ଆଶା କରିବା ବୃଥା ।

ଦୁଇ ହାତରେ ଖର୍ଚ୍ଚ କରିବା – ଯଥେଷ୍ଟ ଖର୍ଚ୍ଚ କରିବା– spend a lot

.. ରାଜାରାଜୁଡ଼ା ଅମଳରେ ସେମାନେ ଦୁଇ ହାତରେ ଖର୍ଚ୍ଚ କରୁଥିଲେ । ଆଜି କାଲି ଏ ସବୁ ସ୍ୱପ୍ନ ।

ଦୁଃଖର ସାଗର/ ଦୁଃଖର ପାହାଡ଼ – ଅନନ୍ତ ଦୁଃଖ– world of distress/ misery

.. ଦୁଃଖର ସାଗର ଅତିକ୍ରମ କରିବା ତା'ଙ୍କ ପକ୍ଷେ ସହଜ ନୁହେଁ ।

ଦୁଧ ଭାତ ଦେଇ ସାପ ପୋଷିବା – ଭବିଷ୍ୟତ ବିପଦଯୁକ୍ତ, କ୍ଷତିକାରକ ଲୋକଙ୍କୁ ଆଦର ଯତ୍ନରେ ପାଳିବା– to nourish the evil

.. ଦୁଧ ଭାତ ଦେଇ ଏବେତ ସାପ ପୋଷୁଥା । ଦିନ ଆସିବ ସେ ନିଶ୍ଚୟ ଚୋଟ ମାରିବ ।

ଦୁଧ ଅଳତା ରଂଗ – ଉଜ୍ଜଳ ଗୌରବର୍ଣ୍ଣ– ruddy colour

.. ମା'ସିନା କାଳୀ, ହେଲେ ଛୁଆଟା ପୁରାପୁରି ଦୁଧ ଅଳତା ରଂଗ ।

ଦୁଧଭାତ ଖାଇବା – ସ୍ୱଚ୍ଛଳତା ଥିବା– well-to-do/ dainty meal

.. ସେ ତ ଦୁଧଭାତ ଖାଉଛି । ସିଏ କେମିତି ଜାଣିବ ଗରିବର କଷ୍ଟ କ'ଣ ?

ଦୁଧିଆଳି ଦାନ୍ତ – ଶିଶୁର ପ୍ରଥମ ଅବସ୍ଥାର ଦାନ୍ତ, ବେଖାତିର ଭାବ, ଅନାଦର ଭାବ– milky tooth/ carelessness

.. ତା'ର ତ ଦୁଧିଆଳି ଦାନ୍ତ ଉଠିନି, ସିଏ କ'ଣ କଥାବାର୍ତ୍ତା କରିବ ।

ଦୁର ଦୁର କରିବା – ପାଖ ମଡ଼େଇ ନ ଦେବା– forbidden/ be off

.. ବୋହୂଟା ଘରକୁ ଆସିଛି କି ନାହିଁ, ଶାଶୁ ଦୁର ଦୁର କରି ବିଦା କରିଦେଲା ।

ଦୂରର କଥା – ଆଦୌ ନୁହେଁ– far away/ impossible

.. କୁଶଳ ପ୍ରଶ୍ନ ତ ଦୂରର କଥା, ମୁହଁ ଦେଖାଇଲେ ନାହିଁ ।

ଦୁହାଁଳିଆ ଗାଈ – ଲାଭପ୍ରଦ, ରସଭରା ଯାତ୍ରା– profit making object/ man

.. ଦୁହାଁଳିଆ ଗାଈର ଯତ୍ନ ନେଲେ ରତ୍ନ ମିଳିବ ।

ଦେଉଳକୁ ମୁଖଶାଳା ବଳିଯିବା – ଆୟ ଅପେକ୍ଷା ବ୍ୟୟ ଅଧିକ, ବାହାର ଆଡ଼ମ୍ବର କଗୁ କଗୁ ମୂଳ ଜିନିଷ ପ୍ରତି ଅନାଦର– expenditure more than income

.. ପିଲାଙ୍କ ପାଠପଢ଼ା ଅଛି । ଝିଅ ବା'ହାଘରେ ସବୁ ଖର୍ଚ୍ଚ କରନି । ଦେଉଳକୁ ମୁଖଶାଳା ବଳିପଡ଼ିବ !

ଦେଖାଶିଖା ଓଡ଼ିଶା – ଅନୁକରଣ କରି ଶିଖିବା– learn by imitation/ to follow

.. ତା'କୁ ଶିଖେଇବା ଦରକାର ନାହିଁ । ଦେଖାଶିଖା ଓଡ଼ିଶା, ସେ ଆପେ ଧରିନେବ ।

ଦେଖା ସୁନ୍ଦର କଖାରୁ ବଡ଼ି – ଭିତର ଫମ୍ପା ଉପର ଚିକ୍କଣ– thing of outward beauty actually worthless

.. କ୍ଲାସରେ ସେ ହେଉଛି ଗୋଟାଏ ଦେଖା ସୁନ୍ଦର କଖାରୁ ବଡ଼ି । ପାଠ ଘର ଶୂନ୍ୟ ।

ଦେଖା ଶୁଣା କରିବା – ତତ୍ତ୍ୱାବଧାନ କରିବା– to look after/ take care

.. ଏଠି ତା'ର ଦେଖାଶୁଣା କରିବାକୁ କେହି ନାହାନ୍ତି ।

ଦେଖି ନ ପାରିବା – ସହି ନ ପାରିବା– not tolerating/ unbearable

.. ଅନ୍ୟର ଶ୍ରୀ ସେ ଦେଖି ପାରନ୍ତି ନାହିଁ ।

ଦେଖି ନେବା – ଜବତ କରିବା– take a revenge/ to occupy

.. ସେମାନେ ଦୁଇଦିନ ଭିତରେ ଜମିଦାରଙ୍କୁ ଦେଖିନେବେ ବୋଲି ଧମକ ଦେଇଛନ୍ତି ।

ଦେଖିଶୁଣି – ସତର୍କ ଭାବେ– cautiously/ carefully

.. ନୂଆ ଦେଶରେ ଦେଖି ଶୁଣି ଚଳିବା ପାଇଁ ମା' ପରାମର୍ଶ ଦେଲେ ।

ଦେଖିଲା କାମ କରିବା – ଦଣ୍ଡ ଦେବା – to punish

.. ତାକୁ ବତାଇବାକୁ ପଡ଼ିବନି, ସେ ତା' ଦେଖିଲା କାମ କରିଦେବ ।

ଦେଖିଲା ସାପକୁ ଗାତକୁ ନ ଛାଡ଼ିବା – ଦୁଷ୍ଟ ସାଙ୍ଗରେ ଦୁଷ୍ଟାମି କରିବା– tit for tat

.. ସାବଧାନ, ଦେଖିଲା ସାପକୁ ଗାତକୁ ଛାଡ଼ି ଦଉଛ, ପରେ ପସ୍ତେଇବ ।

ଦେଖେଇ ଶିଖେଇ କହିବା – ବୁଲେଇ ବଙ୍କେଇ କହିବା– attack or rebuke a person indirectly

.. ଅନ୍ୟକୁ ଦେଖେଇ ଶିଖେଇ କହିବା ତା'ର ଜନ୍ମଗତ ଅଭ୍ୟାସ ।

ଦେହ ଲଗେଇବା – ମନଦେଇ କାମ କରିବା– work labouriously

.. ଦେହ ଲଗେଇ କାମ କର, ଫଳ ନିଶ୍ଚୟ ପାଇବ ।

ଦେହ କଣ୍ଟା ହେବା – ଦେହ ଝଡ଼ି ଯିବା– becoming ill/ painful

.. ମା'କୁ ଝୁରି ଝୁରି ପିଲାଟାର ଦେହ କଣ୍ଟା ହୋଇଗଲାଣି ।

ଦେହକୁ ନେବା – ଦାୟିତ୍ୱ ମୁଣ୍ଡାଇବା– shoulder responsibility

.. ଦେହକୁ ନେଇ ତ କାମ ଆରମ୍ଭ କରିଥିଲ । ଏବେ କାନ୍ଦୁଛ କାହିଁକି ?

ଦେହ ସୁହା ହେବା – ଅଭ୍ୟାସରେ ପଡ଼ିଯିବା– very familiar

.. ପ୍ରଥମେ କଷ୍ଟ ହେବ । ତା'ପରେ ସବୁ ଦେହ ସୁହା ହେଇଯିବ ।

ଦେହରେ ନ ଯିବା – ଦେହ ଉପଯୋଗୀ ନ ହେବା– being unsuitable to one's health

.. ଏଠିକା ପାଣି ତା'ଦେହରେ ଯାଉନି ।

ଦେହରେ ପ୍ରାଣ ସଞ୍ଚାର ହେବା – ମନରେ ଉତ୍ସାହ ଦେଖାଯିବା– get encouragement

.. ପାକିସ୍ତାନକୁ ଶିକ୍ଷା ଦେବା ପାଇଁ ଭାରତବାସୀଙ୍କ ଦେହରେ ପ୍ରାଣ ସଞ୍ଚାର ହୋଇଛି ।

ଦେହରେ ନ ଲାଗିବା – ସ୍ୱାସ୍ଥ୍ୟ ନ ଫେରିବା– body not becoming stout and strong

.. ସେ ଯାହା ଖାଇଲେ ବି ତା' ଦେହରେ ଲାଗୁନି ।

ଦେଶକେ ଫାଙ୍କ ନଈ କେ ବାଙ୍କ – ଦେଶକୁ ଦେଶ ଚାଲି ଚଳଣି ଭିନ୍ନ – customs vary from country to country

.. ଜାପାନ ଆସିଛି, କଣ୍ଟା ଚାମଚରେ ଖାଇବ ନା ! ଦେଶକେ ଫାଙ୍କ ନଈ କେ ବାଙ୍କ ।

ଦୋ'ଘାଇରେ ପଡ଼ିବା – ବିଷମ ସଂକଟରେ ପଡ଼ିବା– putting in dilemma

.. ଝିଅ ବାହାଘର, ପିଲାଙ୍କ ପାଠପଢ଼ା ଦୋ' ଘାଇରେ ପଡ଼ି ସେ କ'ଣ କରିବେ କିଛି ଠିକ୍ କରି ପାରୁନାହାନ୍ତି ।

ଦୋକାନ କରିବା – ଜିନଷ କିଣାକିଣି, ଦୋକାନ ଚଳେଇବା– marketing/ continue busyness

.. ଯଇଦି ଯଇଦି ଦୋକାନ କରିଦିଅ । ଟ୍ରେନରେ ଘରକୁ ଫେରିଯିବା ।

ଦୋକାନ ଉଠିବା – ଭଲ ବିକ୍ରିହେବା– good selling

.. ଆଜିକାଲି ତା' ଦୋକାନ ଉଠିବାରେ ଲାଗିଛି, ବେଶ୍ ଭିଡ଼ ହଉଛି ।

ଦୋକାନ ଦେବା – ଭଡ଼ାଦେବା– rentout/ lease out

.. ଶାଳିଆ ସାହିରେ ସେ ପାଞ୍ଚଟା ଦୋକାନ ଦେଇଛନ୍ତି ।

ଦୋକାନ ଚାଲିବା – କିଣାବିକା ଭଲ ହେବା (ଦୋକାନରେ)– good sale/ making profit

.. ତା'ଙ୍କ ଦୋକାନ ଭାରି ଭଡ଼ିଆ ଚାଲୁଛି । ଯଥେଷ୍ଟ ଲାଭ ହଉଛି ।

ଦୋଳ ମୁକୁଟ ବନ୍ଧା ହେବା – ଭାଗ୍ୟ ଫେରିବା, ମଙ୍ଗଳ ହେବା– fortune favours

.. କିଏ ଜାଣିଥିଲା ନିପାଣିଆ ପିଲାଟା ମୁଣ୍ଡରେ ଦୋଳ ମୁକୁଟ ବନ୍ଧା ହେବ ବୋଲି ।

## ଧ

ଧକ୍ ଧକ୍ କରିବା – ହୃତପିଣ୍ଡର ସ୍ପନ୍ଦନ– palpitation of heart

.. ପାଇଖାନାରେ ବାଘ ପଶିଛି ଶୁଣି ଦାମବାବୁଙ୍କ ଛାତି ଭିତରଟା ଧକ୍‌ଧକ୍ କରିବାକୁ ଲାଗିଲା ।

ଧକ୍କା ସମ୍ଭାଳିବା – ବିପଦରୁ ରକ୍ଷା ପାଇବା– bear the misfortune/ face the trouble

.. ଝିଅ ବାହାଘର ସାଙ୍ଗକୁ ପୁଅର ଅପରେସନ ଖର୍ଚ୍ଚ । କେମିତି ବିଚରା ସାହୁବାବୁ ଏ ଧକ୍କା ସମ୍ଭାଳିବେ କେଜାଣି ।

ଧଡ଼ି ଛିଣ୍ଡାଇବା – ନାକାନ୍ତ କରିବା, କ୍ଳାନ୍ତ କରବା- tire out a person by hard labour/be overtired

.. ସେଇ କାମରେ ତା' ଧଡ଼ି ଛିଣ୍ଡିଲାଣି, ଆଉ କାହିଁକି କାମ ଦେଉଛ ?

ଧନ କୁବେର – ଐଶ୍ୱର୍ଯ୍ୟର ଅଧିକାରୀ– millionaire/ man of milk and honey

.. ହୀରାଲାଲ ଧନକୁବେର ହୋଇ ମଧ୍ୟ ଆହୁରି ଲୋଭ କରୁଛି ।

ଧନ ହାନି ପ୍ରାଣ ପୀଡ଼ା – ସବୁ ଆଡୁ କ୍ଷତି– heavy loss

.. ବ୍ୟବସାୟରେ କି ଲାଭ କରିବେ ? ଯେତିକି ଧନହାନି ପ୍ରାଣପୀଡ଼ା ମିଳିଛି, ତା'କୁ ଭୁଲି ନାହାନ୍ତି ।

ଧନୁଭଙ୍ଗାପଣ – କଠିନ ପ୍ରତିଜ୍ଞା– firm determination

.. ତା'ର ସେଇ ଏକା ଧନୁଭଙ୍ଗା ପଣ, ସେ କଦାପି ଭଉଣୀ ଘର ମାଡ଼ିବନି ।

ଧପ୍ ଧପ୍ କରିବା – ଜଳି ଉଠିବା, ନିଷ୍ପ୍ରଭ ପ୍ରାୟ ହେବା– extinction of light/ in a twinkling manner

.. ପବନରେ ଦୀପଟା ଧପ୍ ଧପ୍ କରିବାରେ ଲାଗିଛି ।

ଧର ଧର ମାର ମାର କରିବା – ତଡ଼ିଦେବା, ଅପମାନ ଦେବା– driving away/ insulting

.. ଯେମିତି ସେ ତା'ଙ୍କୁ ଧର ଧର ମାର ମାର କରିଛନ୍ତି, ଆଉ ସେ ତା'ଙ୍କ ଘର ମାଡ଼ିବେ ?

ଧର କହିଲେ ଧାରିବା – ଆଦେଶ ମାତ୍ରକେ କାର୍ଯ୍ୟାରମ୍ଭ– carryout order suddenly

.. ଚାକର ପିଲାଟା ସାନ ହେଲେ କ'ଣ ହେବ, ଧର କହିଲେ ଧରିବ, ଛାଡ଼ିବନି ।

ଧରାକୁ ସରା ଜ୍ଞାନ କରିବା – ଗର୍ବରେ ମଣିଷ ନ ମାନିବା – puffed up with pride

.. ହାତରେ ଟଙ୍କା ବଣ୍ଡିଲ ପଡ଼ିଯାଇଛି ବୋଲି ପୁଅ ଧରାକୁ ସରା ଜ୍ଞାନ କରୁଛି ।

ଧରାଛୁଆଁ – ବୋଧଗମ୍ୟତା, ପାଖକୁ ଆସିବା– indication/coming closer

.. ଏ ଘଟଣା ସାଧାରଣ ଜନତାର ଧରାଛୁଆଁର ବାହାରେ ।

ଧରାଧରି – ଧର ପଗଡ଼, ଅନୁରୋଧ– seizure/ pressurising

.. ଧରାଧରି କରି ସେ ଚାକିରୀ ପାଇଛି । ଆମ ସାହିରେ ପୋଲିସ ଧରାଧରି ଚଳେଇଛି ।

ଧରାପଡ଼ିବା – ଉଦ୍‌ଘାଟିତ ହେବା, ମିଳିବା, ଗିରଫ୍ ହେବା– arrested/ found

.. ଏତେଦିନେ ଚୋର ଧରାପଡ଼ିଛି । ହଜିଥିବା ମୁଦି ବହିଗଦାରୁ ଧରାପଡ଼ିଲା ।

ଧରାଇଦେବା – ସୂତ୍ର ଧରାଇବା, ଇଙ୍ଗିତ ଦେବା, ଗିରଫ କରାଇବା– being caught/ giving clue

.. ଗୁମାସ୍ତା ଚାକରଟାକୁ ପୋଲିସରେ ଧରାଇଦେଲା । ଅଙ୍କଟା ଟିକିଏ ଧରେଇଦେଲେ, ତେଣିକି ମୁଁ କରିଯିବି ।

ଧରିବାନ୍ଧି – ଜୋର କରି, ଇଚ୍ଛା ବିରୁଦ୍ଧରେ– against one's will/ forcibly

.. ଧରିବାନ୍ଧି ଝିଅଟାକୁ ସେମାନେ ବାହା କରାଇଦେଲେ ।

ଧର୍ମ ବକ ସାଜିବା – କପଟ ଧାର୍ମିକ ହେବା – religious hypocrite

.. ଜୀବନଟାଯାକ ପାପ କରି ଏବେ ଧର୍ମ ବକ ସାଜିଛନ୍ତି ।

ଧର୍ମ ସହିବା – ଶାସ୍ତି ପାଇବା– be punished

.. ଏତେ ଅନ୍ୟାୟ କରନି, ଧର୍ମ ସହିବନି ।

ଧସ୍ତାଧସ୍ତି – ଟଣାଟଣି, କଷାକଷି– mutual pulling/ straining

.. ପେଟ୍ରୋଲ ଦାମ ନେଇ ଡିଲରମାନଙ୍କ ଭିତରେ ଧସ୍ତାଧସ୍ତି ଚାଲିଛି ।

ଧସେଇ ପଶିବା – ଜୋର ଜବରଦସ୍ତି– forcibly

.. ଡକାୟତମାନେ ମୁଖ୍ୟମନ୍ତ୍ରୀଙ୍କ ଘର ଭିତରକୁ ଧସେଇ ପଶିଗଲେ ।

ଧାଁ ଧଉଡ଼ କରିବା – କାର୍ଯ୍ୟ ଉପଲକ୍ଷେ ଯିବା– running with hope

.. ଯେତେ ଧାଁ ଧଉଡ଼ କଲେ କ'ଣ ହେବ, ପୁଅ ମିଳିବନି ।

ଧାଡ଼ି ଦେବା – ଅପେକ୍ଷା କରିବା– making line/ waiting eagerly

.. ଗାନ୍ଧିଜୀଙ୍କୁ ଦେଖିବା ପାଇଁ ଲୋକେ ସକାଳ ପହରୁ ଧାଡ଼ି ଦେଉଥିଲେ ।

ଧାଡ଼ିବାନ୍ଧିବା – ଲାଇନରେ ଅପେକ୍ଷା କରିବା– waiting in a queue

.. ହାରି ଗୁହାରି ଜଣାଇବା ପାଇଁ ଲୋକେ ନଖାଇ ନପିଇ ଧାଡ଼ି ବାନ୍ଧିଛନ୍ତି ।

ଧାନ ଉଡ଼େଇବା – ଧାନରୁ ଅଗାଡ଼ି ଅଲଗା କରିବା– winnow paddy after threshing

.. ଧାନ ଉଡ଼ା ସରିନି, ତା'ପରେ ଯାଇଁ ଅନ୍ୟକାମ ।

ଧାନ ଭିତରେ ଚାଉଳଟିଏ – ପ୍ରତିଭା ବାରି ହୋଇପଡ଼ିବା– extraordinary talent

.. ରାମବାବୁଙ୍କ ସାନପୁଅ ଧାନଭିତରେ ଚାଉଳଟିଏ, ନହେଲେ ଆଇ.ଏ.ଏସ. କେମିତି ପାଇଥାନ୍ତା ।

ଧାରଣା ଦେବା – ଅନଶନ କରିବା, ଆଶ୍ରାରେ ପଡ଼ି ରହିବା– picketing/ lie praying

.. ଦାବି ହାସଲ ପାଇଁ ସେମାନେ ଧାରଣାଦେଇ ବସିଛନ୍ତି ।

ଧାର ଧାରିବା – ସଂପର୍କ ରଖିବା– come in contact

.. ସେ ନିଜ କାମ ନିଜେ କରେ, କାହାର ଧାର ଧାରେନା ।

ଧାରରେ ବୁଡ଼ିବା–କରଜରେ ନୟାନ୍ତହେବା – be overhead and ears in debt

ଧାର ଉଧାର କରି – ଯୋଗାଡ଼ଯନ୍ତ୍ର କରି– borrowing/ arranging

.. କୌଣସି ପ୍ରକାରେ ଧାର ଉଧାର କରି ଦାମବାବୁ ତା'ଙ୍କ ସଂସାର ଚଳାଉଛନ୍ତି ।

ଧୀର ପାଣି ପଥର କାଟିବା – ଧୈର୍ଯ୍ୟ ସହ କାମ କଲେ ଫଳ ମିଳେ– slow and steady wins the race

.. ସେ ଆଜି ଯାହା ହେଇଛନ୍ତି, ଏଥିପାଇଁ ବାଲ୍ୟକାଳରୁ ପରିଶ୍ରମ କରିବାକୁ ପଡ଼ିଛି । କଥାରେ ଅଛି, ଧୀର ପାଣି ପଥର କାଟେ ।

ଧୁଆ ମୂଳା ଅଧୁଆ ମୂଳା ସମାନ ହେବା – ସବୁକୁ ସମାନ ବିଚାର କରିବା– to weigh worthy and worthless in one scale

.. ବାଣୀବିହାରରେ ସମସ୍ତେ ପ୍ରଫେସର, ଧୁଆ ମୂଳା ଅଧୁଆ ମୂଳା ସମସ୍ତେ ସମାନ ।

ଧୁଆ ତୁଳସୀ ପତ୍ର – ନିର୍ଦ୍ଦୋଷ, ତ୍ରୁଟିହୀନ– flawless/ guiltless

.. ବଡ଼ ବଡ଼ କଥା କହୁଛି, ନିଜେ କ'ଣ ଧୁଆ ତୁଳସୀ ପତ୍ର ?

ଧୁମ୍ ଧାଡ଼କା – ଜାକଜମକ, ବିତଣ୍ଡା– careless talking/ with pomp of ceremony

.. ଶାଶୁ ଆଗରେ ଏମିତି ଧୁମଧାଡ଼କା କଥାବାର୍ତ୍ତା କରିବାଟା ଠିକ୍ ହେଲାନି ।

ଧୁଳେଇ କରିବା – ମାରଧର କରିବା– beating severely

.. ରାମାକୁ ସକାଳେ ଏମିତି ଧୁଳେଇ ହୋଇଛି, ସେ ଉଠି ପାରିବନି ।

ଧୂଆଁଧାର – ଚମତ୍କାର, ପ୍ରଶଂସନୀୟ– excellent/ praiseworthy

.. ଆଜି ପାକିସ୍ତାନ ଧୂଆଁଧାର ବ୍ୟାଟିଙ୍ଗ୍ କରୁଛି ।

ଧୂଆଁବାଣ ମାରିବା – ବାହାସ୍ଫୋଟ ମାରିବା– false threats/ make fall claim

.. କିଛି ନ ଜାଣି କାହିଁକି ଧୂଆଁବାଣ ମାରିବା ଭଳି କଥାବାର୍ତ୍ତା କରୁଛ ?

ଧୋକ୍କା ଦେବା – ଫାଙ୍କି ଦେବା, ଧପା ମାରିବା– manipulating/ delude a person

.. କେତେଦିନ ଗୁରୁଙ୍କୁ ଧୋକ୍କାଦେଇ ବାହାରେ ବୁଲିବ ?

ଧୋକ୍କାରେ ପଡ଼ିବା – ସଂଶୟରେ ପଡ଼ିବା, କିଂକର୍ତ୍ତବ୍ୟବିମୂଢ଼ ହେବା– facing trouble

.. ପୁଅର ଜେଲ ଯିବା ଘଟଣା ଯୋଗୁ ନେତା ଧୋକ୍କାରେ ପଡ଼ିଯାଇଛନ୍ତି ।

ଧୋବ ଧାବଳିଆ – ଉଚ୍ଚସ୍ତରର ମଣିଷ– man of high status/ gentle

.. ସେମାନେ ଧୋବଧାବଳିଆ, ତା'ଙ୍କୁ ବିଶ୍ୱାସ କରି ଅନ୍ତତଃ କାମଟା କରାଯାଇପାରେ ।

ଧ୍ୟାନ ଧାରଣା – ମତାମତ, ଭାବନା ଚିନ୍ତା– commitment/ philosophy

.. ମାର୍କସ ବାଦୀ ଧ୍ୟାନ ଧାରଣା ସହିତ ମୋ ଧ୍ୟାନ ଧାରଣା ମେଳ ଖାଉନି ।

## ନ

ନଈରେ ଘରକରି କୁମ୍ଭୀର ସାଙ୍ଗର କଳି କରିବା – ପଡ଼ୋଶୀ ବା ଉପକାରୀ ଲୋକ ସହିତ କଳି– quarrel with neighbours

.. କାରଖାନାରେ କାମ କରି ପୁଣି ମାଲିକଙ୍କ ସାଙ୍ଗରେ ଝଗଡ଼ା ! ନଈରେ ଘରକରି କୁମ୍ଭୀର ସାଙ୍ଗର କଳି କରୁଛ !

ନଈ ସୁଅକୁ ବାଲିବନ୍ଧ – ଅଯଥା ପରିଶ୍ରମ, ମୂଲ୍ୟହୀନ ପ୍ରତିକାର ବ୍ୟବସ୍ଥା – useless labour/ futile remedy

.. ସରକାରଙ୍କ ବାତ୍ୟାଆବାସ ତିଆର କରିବା ହଉଛି, ନଈ ସୁଅକୁ ବାଲିବନ୍ଧ ଭଳିଆ ।

ନଈ ବଢ଼ିଲେ ଦୁଇ କୂଳ ଖାଇବା – ଦୁଇପଟରେ କ୍ଷତିହେବା– loss to both side

.. ନଈ ବଢ଼ିଲେ ଦୁଇକୂଳ ଖାଇବ, ଏ କଥା ଜାଣି କଥାରେ ମୁଣ୍ଡ ପୂରାଅ ।

ନଈ ନ ଦେଖୁଣୁ ଲଙ୍ଗଳା – ବିପଦ ପଡ଼ିବା ପୂର୍ବରୁ ବିଚଳିତ ହେବା– to meet trouble half away

.. ଆଗ ଯୁଦ୍ଧ ହଉ ଯାହା ହବା କଥା ହବ । ଏତେବେଳୁ ନଈ ନଦେଖୁଣୁ ଲଙ୍ଗଳା ଭଳିଆ କାହିଁକି ହଉଛ ?

ନଖରେ ଛିଡ଼ିବା – ସହଜରେ ସମାଧାନ ହେବା– easier solution

.. ଯେଉଁ କଥାଟା ନଖରେ ଛିଡ଼ି ଯାଇଥାନ୍ତା, ତା'କୁ ଅଯଥା ବଢ଼ଉଥିଲ କାହିଁକି ?

ନଖ ଦର୍ପଣରେ ରଖିବା – ଆୟତ୍ତରେ ରଖିବା, ଜାଣିଥିବା– wellknown/ under one's control

.. ଏଠାକାର ସବୁକିଛି ମୋ ନଖ ଦର୍ପଣରେ ଅଛି ।

ନଗଦ ନାରାୟଣ – ଟଙ୍କା– hard cash/ money

.. ନଗଦ ନାରାୟଣ ନ ପାଇଲେ ବୁଢ଼ା କେବେ ଆଙ୍ଗୁଳିଏ ଛାଡ଼ିବନି ।

ନ' ଛ' କରି କହିବା – ମନରୁ ଫାନ୍ଦି କହିବା, ମିଛ କଥା– down right falsehood

.. ଶୁଣ, ଏ ନ' ଛ' କରି କହିବା ପ୍ରକୃତି ଛାଡ଼ ।

ନଛୋଡ଼ବନ୍ଧା – ଉଦ୍ଦେଶ୍ୟ ସିଦ୍ଧି ଲାଗି ଯେ ପଛରେ ଲାଗିଥାଏ ଜିଦ୍‌ଖୋର– importunate/ incorrigible

.. ସେ ନଛୋଡ଼ବନ୍ଧା, ଟଙ୍କା ନେଲେ ଯାଇ ଘରକୁ ଫେରିବ ।

ନଜର ପଡ଼ିବା – ଦୃଷ୍ଟି ଆକର୍ଷଣ କରିବା– take notice of

.. ପିଲାଟିର ପାଠପଢ଼ା ଉପରେ ସମସ୍ତଙ୍କ ନଜର ପଡ଼ିଛି ।

ନଜର ଅନ୍ଦାଜ କରିବା – ହେୟଜ୍ଞାନ କରିବା– to look down upon

.. ରାମବାବୁ ଯେଉଁ କାମ କରୁଛନ୍ତି, ତା'କୁ ନଜର ଅନ୍ଦାଜ କରିବାର ନାହିଁ ।

ନଜର ଦେବା – ଲକ୍ଷ୍ୟ ରଖିବା, ଅଶୁଭ ଦୃଷ୍ଟି– keep an eye on/ inauspicious look

ଅନ୍ୟର ଟଙ୍କା ଉପରେ ନଜର ଦିଅନି । ଧାନ କ୍ଷେତ ଉପରେ ନଜର ଦେଇଥାଅ ।

ନଜର ପଡ଼ିବା – ଅଶୁଭ ଦୃଷ୍ଟି ପଡ଼ିବା, ଦୃଷ୍ଟି ଆକର୍ଷଣ କରିବା– cast an evil eye

.. ପିଲାଟାର ଦେହ ଖରାପ । କାହାରି ନଜର ତା' ଉପରେ ପଡ଼ିଛି । ନେତାଙ୍କ ନଜର ପଡ଼ିଛି, ନିଶ୍ଚୟ ଚାକିରୀ ମିଳିବ ।

ନଜର ରଖିବା – ଆଖିରେ ରଖିବା– to keep an eye on a person

.. ଦୁଷ୍ଟ ପିଲାଟା ତ, ଟିକିଏ ନଜରରେ ରଖିଥାଅ ।

ନଟ ଖଟ – ଗୋଳମାଳ, କେଳେଙ୍କାରି– complicated/naughty

.. ସେ ନଟଖଟ ଧନ୍ଦାରେ ମତେ ପୂରାଅନି ।

ନଟଖଟ ନାରଦ – ଗଣ୍ଡଗୋଳିଆ ଲୋକ– wicked person/ disturbing element/ a ring leader

.. ତା'କୁ ବିଶ୍ୱାସ କରୁଛ ? ସେ ଗୋଟାଏ ନଟଖଟ ନାରଦ ।

ନଥିରେ ଡୋରି ବାନ୍ଧିବା – ବନ୍ଦହେବା– to close a file/ to shut a book

.. ନଥିରେ ଡୋରି ବନ୍ଧାହେଲା ପରେ ଆଉ କାହିଁକି ସେ ପୁରୁଣା କଥା ଉଠଉଛ ।

ନନାଙ୍କ ସନ୍ଧ୍ୟାରେ ସନ୍ଧ୍ୟା – ଅନ୍ୟ ନାଁରେ ପାରିହେବା– encashing on other's effort

.. ତା'କୁ ପରିଶ୍ରମ କରିବାକୁ କହୁଛ ? ସେ ନନାଙ୍କ ସଂଧ୍ୟାରେ ସନ୍ଧ୍ୟା କଲା ଲୋକ ।

ନନ୍ଦିଭୃଙ୍ଗୀ – କୁକର୍ମର ସାଥୀ, ପାର୍ଶ୍ୱଚର– an evil consort

..ଯେତେବେଳେ ଦେଖିବ, ବାବୁଙ୍କ ପାଖରେ ନନ୍ଦୀଭୃଙ୍ଗୀ ଥିବେ । ଭଲ କଥା ଶୁଣିବାକୁ ବେଳ କାହିଁ ?

ନରମଗରମ – ମିଠା କଡ଼ା– sweet and sour

.. ସେ ତା'ଙ୍କ ଚାକରକୁ ବେଶ୍ ନରମ ଗରମ ଦି'ପଦ ଶୁଣାଇଦେଲେ ।

ନରମ ମାଟି – ଦୁର୍ବଳ ଲୋକ– a timid person

.. ତା'କୁ ତ ନରମ ମାଟି ପାଇଲ, ଯାହା ଇଚ୍ଛା ବକିଯିବ ।

ନବାବ ପୁଅ – ଅଳସୁଆ– fit for nothing

.. ଆସିଗଲେ ନାବଙ୍କ ପୁଅ । ଗୋଡ଼ ଉପେରେ ଗୋଡ଼ ପକେଇ ଖେଳ ଦେଖିବେ ।

ନବାବୀ ଚାଲ – ବଡ଼ଲୋକି ଚାଲିଚଳନ– aristocratic ways

.. ଘରେ ତ ଖାଇବାକୁ ନାହିଁ, ଏଣେ ପୁଅର ନବାବୀ ଚାଲ ।

ନୟନର ମଣି – ପରମ ଆଦରର ପାତ୍ର– the apple of an eye

.. ପିଲାଟି ହେଉଛି ବୁଢ଼ୀର ନୟନର ମଣି, ତାକୁ ପାଖଛଡ଼ା କରେନି ।

ନସର ପସର ହେବା – ପାଖାପାଖି ରହିବା– an evil vine

.. ସେ ନସର ପସର ହବା ପଛରେ କିଛି ଉଦ୍ଦେଶ୍ୟ ଅଛି ।

ନାଁରେ କୁକୁର ପାଳିବା– ଘୃଣାକରିବା– to detest a person

ନାଁ ଗାଁ– ଖ୍ୟାତି, ବଦ୍‌ନାମ – fame and infamy

ନାଁକୁ ମାତ୍ର – ଅଳ୍ପଦାମ - nominal

ନାଁ ଉଠିବା – ବହୁଳ ଭାବେ ପ୍ରଚାରିତ ହେବା- to rise in public esteem

ନାଁ ଡାକ – ବିଶେଷ ଖ୍ୟାତ- reputed

ନାଁ ରଖିବା – କୃତିତ୍ୱ ଅର୍ଜନ କରିବା – to gain reputation

.. ପିଲାଟି ବାପମା'ଙ୍କ ନାଆଁ ରଖିଲା ।

ନାଁ କରିବା – ଖ୍ୟାତି ଲାଭ କରିବା– to come to lime light

.. ବିଦେଶରେ ରାନୁ ସେନ୍ ବେଶ୍ ନାଆଁ କରିଛନ୍ତି ।

ନାଁ ପକେଇବା – ବଦ୍‌ନାମ କରିବା– to earn a bad name

.. ଝିଅଟା ବାପ ମା'ଙ୍କ ନାଆଁ ପକେଇଲା ଭଳିଆ କାମ କରିଛି ।

ନାଁ ରହିବା – ବିଖ୍ୟାତ ହେବା– leave a good name for posterity

.. ସେ ଯେଉଁ କାମ କରୁଛି, ସେଥିରେ ଚିରିଦିନ ପାଇଁ ତା' ନାଆଁ ରହିଯିବ ।

ନାଁ ଧରିବା – ନାଆଁ ଉଚ୍ଚାରଣ କରିବା– to address someone

.. ଶିକ୍ଷକ ସମସ୍ତଙ୍କ ନାଆଁ ଧରି ଡାକୁଥିଲେ ।

ନାଁ ପଡ଼ିବା – ସୁଖ୍ୟାତି ଲାଭ କରିବା, ବଦନାମ୍ ହେବା– to fall in the public eye/ to rise in the public eye

.. ସେ ନାଆଁ ପଡ଼ିବା ଭଳି କାମ କରିଛି ।

ନାଁ ଗନ୍ଧ – ଲେଶମାତ୍ର– to loose trace

.. ନକଲି ନେତାଙ୍କର ଦେଶପ୍ରେମର ନାଁ ଗନ୍ଧ ନାହିଁ ।

ନାଁ ଲୁଚିଯିବା – ଲିଭିଯିବା, ମୃତ୍ୟୁ ଘଟିବା– dead/ to go into oblivion

.. ଏତେ ଅଳ୍ପ ବୟସରୁ ଦୁନିଆରୁ ତା'ଙ୍କ ନାଁ ଲୁଚିଗଲା ।

ନାକରେ ହାତଦେବା/ ନାକ ଟେକିବା – ଅବଜ୍ଞା, ଘୃଣା କରିବା– to hate/ to ridicule

.. ରାସ୍ତାରେ ଭିକାରୀ ଦେଖି ସେ ନାକ ଟେକିଲେ ।

ନାକରେ କାନ୍ଦିବା – କାନ୍ଦିବାର ଭଙ୍ଗୀ ପ୍ରଦର୍ଶନ କରିବା– to be a cry baby

.. ତା'କୁ କିଏ କହିବ ? କଥାରେ କଥାରେ ତ ସେ ନାକରେ କାନ୍ଦିବା ଲୋକ ।

ନାକରେ ତେଲ ପକେଇ ଶୋଇବା – ନିଶ୍ଚିନ୍ତ ହେବା– to be complascent

.. ଝିଅ ବିବାହ ଯୋଗ୍ୟ ହୋଇଗଲାଣି, ଏତେବେଳେ ନାକରେ ତେଲ ପକେଇ ଶୋଇଲେ ଚଳିବ ?

ନାକ ଧରାଇବା – ବାଧ୍ୟ କରିବା– cut him by the nose

.. ଏ କାମ ପାଇଁ ତା'ଙ୍କୁ ନାକ ଧରିବାକୁ ପଡ଼ିଲା ।

ନାକରେ ଲଙ୍କାମରିଚ ପାଣି ଡେଣ୍ଡେଇବା – to rub a person's nose into the ground

ନାକ ଛିଞ୍ଚାଡ଼ିବା – ଘୃଣା କରିବା– to turn a way one's nose

.. ତା'ଙ୍କର ନାକ ଛିଞ୍ଚାଡ଼ିବା ପ୍ରକୃତି କଥା ସମସ୍ତେ ଜାଣନ୍ତି ।

ନାକ ଅଗରେ ରାଗ – ବଦ୍‌ରାଗୀ– short tempered

.. ଆରେ ଭାଇ ତା'ସହିତ ଦେଖି ଚାହିଁ ଚଳିବୁ । ତା'ର ତ ନାକ ଅଗରେ ରାଗ ।

ନାକରେ ଷଣ୍ଢୁଆସି ପୁରାଇବା – ଶାସ୍ତି ଦେବା– to turn the screw

.. ତୋ ନାକରେ ଷଣ୍ଢୁଆସି ପୁରେଇ ଯଦି ନ ଟାଣିଛି, ମତେ ଚିହ୍ନିବୁ ।

ନାକ କଟାଇବା – ଅପମାନିତ କରିବା– to fall from the grace

.. ଜନ ସମୁଦ୍ର ଭିତରେ ଝିଅଟା ମୋ ନାକ କାଟିଦେଲା ।

ନାକ କାନ କଟିବା – ସମ୍ମାନ ହାନି ହେବା– to insult publicly

.. ସାନ ଝିଅଟିର କୁକର୍ମ ପାଇଁ ତାଙ୍କ ନାକ କାନ କଟିଲା ।

ନାକ କାନ ବୁଜି ସହିବା – ବିନା ପ୍ରତିବାଦରେ ଅପମାନ ସହିବା– to pocket insult without protest

.. କେବଳ ନିଜ ସ୍ତ୍ରୀ ପାଇଁ ସେ ସବୁ ନାକ କାନ ବୁଜି ସହିଗଲେ ।

ନାକ ଗଳାଇବା – ଅନଧିକାର ଚର୍ଚ୍ଚା– to interfere

.. ତା'ଙ୍କ କଥାରେ ତମର ନାକ ଗଳେଇବା କ'ଣ ଦରକାର ?

ନାକ ବୁଡ଼ି ପାଣି ପିଇବା – ହଇରାଣ ହେବା, କଣ୍ଠାଗ୍ରତ ହେବା– up to the nose in

trouble

.. ଯେଉଁ ଋଣ କରିଥିଲେ, ସେଥିରେ ସେ ନାକ ବୁଡ଼ି ପାଣି ପିଇ ସାରିଲେଣି ।

ନାକରେ କାଠି ପୁରାଇ ଛିଙ୍କିବା – to invite calamity

ନାକକାନ ମୋଡ଼ିହେବା– ଅନୁତାପ କରିବା – to express regret

ନାକରେ କାନ୍ଦିବା– ହଇରାଣ ହେବା – humiliation

ନାକ ଘଷିବା – to harass

ନାକ ଫାଟିଯିବା – ଅସହ୍ୟ – unbearable stench

ନାକ ଫୁଲେଇବା – ରାଗିଯିବା – to swell the nostrils in anger

ନାକେ ଦମ୍ କରିବା – ହଇରାଣ କରିବା– to put into trouble persistently

.. ଛୋଟ ପିଲାଟା ଆଜି ଦିନ ସାରା ମତେ ନାକେ ଦମ କଲାଣି ।

ନାଚି ନ ଜାଣି ଅଗଣାଦୋଷ – ନିଜେ ନ ଜାଣି ଅନ୍ୟକୁ ଦୋଷଦେବା– a bad workman quarrels with his tools

.. ନିଜେ ନଇ ପହଁରି ଦେଖଇଦିଅ, ସେ ପହଁରିବ । ଆଉ ନାଚି ନ ଜାଣି ଅଗଣା ଦୋଷ ଦଉଛ କାହିଁକି ?

ନାଟର ଗୁରୁ / ନାଟର ଗୋବର୍ଦ୍ଧନ – ଅନର୍ଥର ମୂଳ– root of all evil

.. ସେ ହଉଛି ଅସଲି ନାଟର ଗୁରୁ, ହେଲେ ପୋଲିସ ତା'କୁ ଛାଡ଼ିଦେଲା !

ନାଟ ଲଗେଇବା – ଝଗଡ଼ା ସୃଷ୍ଟି କରିବା– to pull wires

.. ଛୋଟପିଲାଟା ଘର ଭିତରେ ନାଟ ଲଗେଇଦେଲା !

ନାଡ଼ି ଚପିବା – ପରୀକ୍ଷା କରିବା– to taste one's ability

.. ସେ କ'ଣ, ମୁଁ ତା'ର ନାଡ଼ି ଚିପି ଜାଣିଛି ।

ନାଡ଼ି ଦେଖିବା – ନାଡ଼ିର ସ୍ପନ୍ଦନ ମାପିବା– to measure the pulse

.. ରୋଗୀର ନାଡ଼ି ଦେଖି ସେ ଠିକ୍ ଚିହ୍ନି ପାରିବେ ।

ନାଡ଼ି ନକ୍ଷତ୍ର – ଯାବତୀୟ ଟିକିନିଖି ଖବର– to know somebody's stops and tunes

.. ମୁଁ ତା'ର ଏବଂ ତା' ପରିବାରର ନାଡ଼ି ନକ୍ଷତ୍ର ଜାଣେ ।

ନାଡ଼ିର ଆକର୍ଷଣ – ମମତାର ଅକର୍ଷଣ– the pull of affection

.. ନାଡ଼ିର ଆକର୍ଷଣକୁ ଭୁଲି ମା'କେମିତି ପିଲାଟାକୁ ଠେଲି ଦେଇଥାନ୍ତା ?

ନାନା ମୁନିଙ୍କ ନାନା ମତ – ଗୋଟିଏ ବିଷୟରେ ଆସୁଥିବା ନାନା ପ୍ରକାର ମତ– doctors differ

.. ଏ ନେଇ ଏତେଟା ବ୍ୟସ୍ତ ହେବା ଦରକାର ନାହିଁ । ନାନା ମୁନିଙ୍କର ନାନା ମତ ରହିବ ହିଁ ରହିବ ।

ନାମ ଜପିବା – ଇଷ୍ଟ ସ୍ମରଣ କରିବା– silent worship

.. ଅପରେସନକୁ ଡରି ସେ ଭଗବାନଙ୍କ ନାମ ଜପୁଥିଲେ ।

ନାମ ଡାକ – ଖ୍ୟାତି– fame

.. ଏ ଅଞ୍ଚଳରେ ଦାମବାବୁଙ୍କ ନାମ ଡାକ ଅଛି, ଡାକ୍ତର ହିସାବରେ ।

ନାମ ବୁଡେଇବା – ସୁନାମ ନଷ୍ଟ କରିବା– to bring a stigma on one's good name

.. ସେ ସୂର୍ଯ୍ୟବଂଶର ନାମକୁ ବୁଡେଇ ଦେଲେ ।

ନାମ ମାତ୍ର – ଚିହ୍ନ ମାତ୍ର, ଆଭାସ ମାତ୍ର– nominal

.. ସେ ନାମ ମାତ୍ର ଖେଳରେ ଯୋଗଦେଇଥିଲେ ।

ନାମ ଲେଖାଇବା – ଦଳଭୁକ୍ତ ହେବା– to join a group

.. ବହୁଦିନ ଅପେକ୍ଷା ପରେ ସେ ଏବେ କଂଗ୍ରେସ ଦଳରେ ନାମ ଲେଖାଇଛନ୍ତି ।

ନାମ ଲୋପ ହେବା- ଯଶ ଲୋପ ପାଇବା – to lose of one's good reputation

ନାମନେବା- ବଦନାମ ନେବା – to earn a bad reputation

ନାମନିଶାଣ–ଚିହ୍ନବର୍ଣ୍ଣ, ସ୍ମୃତି – trace

ନାମ ରଖିବା– ଖ୍ୟାତି ଅର୍ଜନ କରିବା - to earn one's reputation

ନାମ ବଡ଼ା କାମ ଥୋଡ଼ା – ଭଡ଼ଭଡ଼ିଆ - much cry little wool

ନାହିରେ ଓଦା କନା ପକାଇବା – ଉପାସ ରହିବା–to be complascent

.. ତିନିଦିନ ହେବ ନାହିରେ ଓଦା କନା ପକେଇ ସେ ଶୋଇଛନ୍ତି, ପଇସାଟିଏ ମାଗୁନାହାନ୍ତି ।

ନାହି ଗଡ଼ାଇବା/ ନାହି ଶୁଖାଇବା – ଅକ୍ଷମତା ପ୍ରକାଶ କରିବା– to feign inability

.. ତା'କୁ କ'ଣ ପଚାରୁଛ ? ସେ ତ ସବୁ କଥା ନାହି ଶୁଖାଉଛି ।

ନାହି ଡେଇଁବା – ଚିଡ଼ି ଉଠିବା– to get enraged

.. ବୁଢ଼ୀଟାକୁ ଦେଖିଲା ମାତ୍ରେ ତା'ନାହି ଡେଇଁବ ।

ନାହିରେ ତେଲ ପକେଇ ଶୋଇବା – ନିଶ୍ଚିନ୍ତ ହେବା– unreasonable complascence

.. ସେ କ'ଣ ନିଆଁରେ ପାଣି ପକେଇବେ ? ସେ ତ ନାହିରେ ତେଲ ପକେଇ ଶୋଇଛି ।

ନାହିଁ ମାମୁଠାରୁ କଣା ମାମୁ ଭଲ – ମୋଟେ ନ ଥିବାଠାରୁ କିଛି ମିଳିବା ଭଲ– something is better than nothing

.. ଖାଇବାକୁ ନ ଥାଉ ପଛେ ମୁଣ୍ଡ ଗୁଂଜିବାକୁ ବଖରାଟାଏ ତ ଅଛି । ନାହିଁ ମାମୁଠାରୁ କଣା

ମାମୁ ଭଲ ।

ନିଆଁ ଲଗାଇବା– ଗଣ୍ଡଗୋଳ କରିବା – to cause unrest

ନିଆଁ ନଥାଇ ଧୂଆଁ – ବିନା କାରଣରେ ଘଟଣା ଘଟିବା– no effect without a cause

.. ନିଆଁ ନଥାଇ ଧୂଆଁ ! ନିଶ୍ଚୟ ଏଥିରେ କିଛି ଭିତିରି କଥା ଥିବ ।

ନିଆଁ ପାଣି ଅଟକ – ex-communicated

ନିଆଁବାଣ– ଅତ୍ୟଧିକ ରାଗ – to seathe with anger

ନିକାଶ କରିବା – ଶେଷ କରିବା– to finish/to take a work to its logical end

.. ବିପକ୍ଷ ଦଳର ନିକାଶ ନ କରିବା ପର୍ଯ୍ୟନ୍ତ ସେ ଛାଡ଼ିବେନି ।

ନିଜ ଢୋଲ ନିଜେ ପିଟିବା – ଆତ୍ମ ପ୍ରଶଂସା କରିବା– self-praise/to beat one's own drum

.. ଆଜିକାଲି ନିଜେ ନିଜର ଢୋଲ ନ ପିଟିଲେ ଉପରକୁ ଉଠି ପାରିବନି ।

ନିଜ ଗୋଡ଼ରେ ନିଜେ କୁରାଢୀ ମାରିବା – ନିଜେ ନିଜର ସର୍ବନାଶ କରିବା– self-destroying

.. ଅନ୍ୟକୁ ଦୋଷ ଦିଅନି, ସେ ନିଜ ଗୋଡ଼ରେ ନିଜେ କୁରାଢୀ ମାରିଛନ୍ତି ।

ନିଜ ଗୋଡ଼ରେ ଠିଆହେବା – ସ୍ୱାବଲମ୍ବୀ ହେବା– be self-reliant

.. ସତ୍ୟବ୍ରତ ନିଜ ଗୋଡ଼ରେ ଠିଆହୋଇ ଏତେ ବାଟ ଆସି ପାରିଛନ୍ତି ।

ନିଜ ଶିଙ୍ଗରେ ମାଟି ତାଡ଼ିବା – ଉପାର୍ଜନକ୍ଷମ ହେବା– to paddle one's own canoe

.. କେତେ ଦିନ ବାପର ଅନ୍ନ ଧ୍ୱଂସ କରିବ ? ନିଜ ଶିଙ୍ଗରେ ମାଟି ତାଡ଼ି ଶିଖ ।

ନିଜ ରୂପ ଦେଖାଇବା– ଅତ୍ୟଧିକ ରାଗିବା – become very angry

ନିମକ ଖାଇବା – ଅନ୍ୟ ସାହାଯ୍ୟରେ ଉପକୃତ ହେବା– by whom one is benefited

.. ଯାର ନିମକ ଖାଇଛ, ତା'ର କାମ ନକଲେ ଧର୍ମ ସହିବନି ।

ନିମକ ହାରାମ – ଅକୃତଜ୍ଞ– ungrateful

.. ସେ ଲୋକଟା ନିମକ ହାରାମ । ଏତେ ସାହଯ୍ୟ ପାଇବି ବାବୁଙ୍କୁ ଭୁଲିଗଲା ।

ନିଶା ଲାଗିବା – ନିଶାରେ ଆସକ୍ତ ହେବା– addicted to drugs

.. ତା'କୁ ନିଶା ଲାଗିଛି, ସେ ନିଶ୍ଚୟ ଯାତ୍ରାପାର୍ଟିରେ ଯୋଗ ଦେବ ।

ନିଶା ଧରବା – ନିଶା କାବୁକରିବା, ନିଶାଗ୍ରସ୍ତ ଅବସ୍ଥାକୁ ଆସିଯିବା– taking effect of any intoxicating drugs

.. ଏବେ ତା'କୁ ଠିକ୍ ନିଶା ଧରିଛି । ଅସଲ କଥା ଆପେ ବାହାରିବ ।

ନିଶାରେ ଧାଇଁବା –ଭରପୁର ଫଳପାଇବା ଆଶାରେ– being hopeful

.. ସେ ଯେଉଁ ନିଶାରେ ଧାଇଁଛି, ତା' ଆଶା ପୂରଣ ହେବନି ।

ନିଶା ଖାଇବା – ମାଦକ ଦ୍ରବ୍ୟ ସେବନ କରିବା– addicted to intoxicating drugs

.. ଯେ ନିଶା ଖାଏ, ଶେଷରେ ନିଶା ତା'କୁ ଖାଏ ।

ନିଶ୍ୱାସ ଚାଲିଥିବା – ବଂଚିଥିବା– operation of breathing/ alive

.. ତା'ର ନିଃଶ୍ୱାସ ଚାଲିଛି, ପୋଡ଼ିବାକୁ କାହିଁକି ନଉଛ ?

ନୂଆ ଡାଆଣି ଘୁଅ ଖାଇବା – ନୂଆକରି ଶିଖିବା– new learner

.. ଫଡ଼ ଫଡ଼ ହଉଛି, ହଉ । ନୂଆ ଡାଆଣି ଘୁଅ ଖାଉଛି ତ !

ନେଇ ଆଣି ଥୋଇବା – ପାରିବା କ୍ଷମତା– capability

.. ସେ ନେଇ ଆଣି ଥୋଇ ପାରିବା ଲୋକ, ନଇଲେ ନେତା ହେଇ ପାରିଥାନ୍ତେ !

ନେଡ଼ି ଗୁଡ଼ କହୁଣିକୁ ବୋହିଯିବା – ଅବସ୍ଥା ଅସମ୍ଭାଳ ହେବା– beyond control, out of hand

.. ଆଗରୁ କ'ଣ କରୁଥିଲ ? ଏବେ ନେଡ଼ିଗୁଡ଼ କହୁଣିକୁ ବୋହିଗଲା ପରେ ଚିନ୍ତାଫେରୁଛି ।

## ପ

ପଇସା ଉଡ଼େଇବା – ବେପରୁଆ ଭାବେ ଖର୍ଚ୍ଚ କରିବା– spending without limit/to spend extravagantly

.. ରାମ ଲୀଳାରେ ଏତେ ପଇସା ଉଡେଇ କ'ଣଟା ପାଇଲ ?

ପଇସା କରିବା – ଅର୍ଥ ସଞ୍ଚୟ କରିବା– to save money

.. ଅଳ୍ପ ଦିନ ଭିତରେ ଲୋକଟି ବେଶ୍ ପଇସା କରିଛି ।

ପଇସା ପାଣିରେ ପଡ଼ିବା – ବେକାର ଖର୍ଚ୍ଚ – useless expenditure

ପଇସା ଉଡ଼େଇବା– ଅପବ୍ୟୟ କରିବା – squander away money

ପଇସା କମେଇବା – ଅର୍ଥ ଆୟ କରିବା– earn money/ making profit

.. ବ୍ୟବସାୟରୁ ସେ ଭଲ ପଇସା କମଉଛି ।

ପଇସାର ମୁଖଦେଖିବା – ଆୟ କରିବାକୁ ଆରମ୍ଭ କରିବା– beginning to earn

.. ଲଗାତର କ୍ଷତି ପରେ ଏବେ ସେ ପଇସାର ମୁଖ ଦେଖୁଛନ୍ତି ।

ପକ୍କା କଥା – ଦୃଢ଼ ଜବାବ– strong reply/ final decision/word

.. ପକ୍କା କଥା ଦେଉଛ ମାନେ ବାହାଘର ସେଇଠି ହବ ।

ପକ୍କା କରିବା – ଦୃଢ଼ାନ୍ତ କରିବା– to finalise

.. କଥା ପକ୍କା କଲାପରେ ଯାଇଁ ମୁଁ ଟଙ୍କାଖର୍ଚ୍ଚ କରିବି ।

ପକେଟ ମାରିବା – ଧନ ଲୁଣ୍ଠନ କରିବା– one who picks pockets

.. ନେତାଙ୍କ ପକେଟ ମାରି ସେ ବେଶ୍ କମେଇଛି ।

ପକେଟ କାଟିବା – ଚୋରି କିରିବା– pick-pocketing

.. ଭିଡ଼ ଯାଗାରେ ସେ ପକେଟ୍ କାଟି ଗୁଜୁରାଣ ମେଣ୍ଟାଏ ।

ପକେଟସ୍ଥ କରିବା – ଆତ୍ମସାତ କରିବା– to misappropriate

.. ମୋ ସେଆର୍‌ଟା ତମେ କାହିଁକି ପକେଟସ୍ଥ କଲ ?

ପକେଟ ଖରଚ –ହାତ ଖରଚ– minor expenditure/ pocket money

.. ତା'କୁ କିଛି ପକେଟ ଖର୍ଚ୍ଚ ନଦେଲେ, ସେ ବୁଲାବୁଲି କରିବ କେମିତି ?

ପକେଟ ଗରମ – ବହୁତ ପଇସା ଥିବା– prosperous

.. ତା'ପକେଟ ଗରମ ଥିଲେ ତା'କୁ ଚିହ୍ନି ହେବନି ।

ପଖାଳ ଭାତକୁ ଘିଅ – ଅସମ୍ଭବ ଯୋଗାଯୋଗ ବା ମିଶ୍ରଣ– mismatch/illogical match

.. ଶାସନ ଆଉ ବିରୋଧୀ ଦଳ କୋଉଠି ଏକାଠି ହେଲେଣି ନା' ହେବେ ? ହୁଁ ପଖାଳ ଭାତକୁ ଘିଅ !

ପଗଡ଼ିକୁ ତଳେ ରଖିବା – ଶରଣ ପଶିବା – seeking refuse/to surrender

.. ନିଜ ପଗଡ଼ିକୁ ତଳେ ରଖିବାରୁ ଜମିଦାର ତା'କୁ ଛାଡ଼ିଦେଲେ ।

ପଛଘୁଞ୍ଚା ଦେବା – ଦୂରେଇ ରଖିବା, ହଟିଯିବା– back tracking/ unwilling

.. ପ୍ରକୃତ ବୀର କେବେ ପଛ ଘୁଞ୍ଚା ଦିଏ ନାହିଁ ।

ପଛରୁ ଛୁରି ମାରିବା – ଅତର୍କିତ ଭାବେ ଆକ୍ରମଣ କରିବା, ନୀତି ବିରୁଦ୍ଧ ଆକ୍ରମଣ– immoral attack

ସ୍ତ୍ରୀ ହୋଇ ସ୍ୱାମୀକୁ ପଛରୁ ଛୁରି ମାରିବା କଥା କେହି କେବେ ଶୁଣି ନଥିଲେ ।

ପଛରେ ଲାଗିବା/ପଛରେ ପଡ଼ିବା – କାର୍ଯ୍ୟ ହାସଲ ପାଇଁ ଅନୁସରଣ କରିବା– after a person

.. ସକାଳ ପହରୁ ସେ ତା' କାମ ପାଇଁ ମୋ ପଛରେ ପଡ଼ିଛି ।

ପଛରୁ ଡାକିବା – ବାଧା ସୃଷ୍ଟି କରିବା– pulling back

.. ଶୁଭ କାମରେ ବାହାରିଥିଲେ ସେ । ପଛରୁ ଡାକିଦେଇ ଭୁଲ୍ କଲ ।

ପଛରୁ ଟାଣିବା – ଆକର୍ଷଣ / ବନ୍ଧନ– attraction/ alluring

.. ପରିବାର ଲୋକେ ଯଦି ପଛରୁ ଟାଣିବେ, ସେ ଆଗେଇବେ କିପରି ?

ପଛେଇଯିବା – ନିରସ୍ତ ହେବା, ହଟିଯିବା– unwilling/ retreating

.. ଟିଭିର ଦାମ ପଚାଶ ହଜାର ଶୁଣି ମୁଁ ପଛେଇଗଲି । ଏତବାଟ ଆଗେଇ ସାରି ପଛେଇଯିବା ଉଚିତ ନୁହଁ ।

ପଟାପଟି – ରାଜି କରାଇବା, ବଶୀଭୂତ କରାଇବା– persuade one to agree

.. ପଟାପଟି କରିଇବାରେ ସେ ଧୁରନ୍ଧର ।

ପଟିମାରିବା – ଧପ୍ପା ମାରିବା– cheating

.. ସେ ତା'ଙ୍କୁ ପଟିମାରି ଦଶହଜାର ଟଙ୍କା ନେଇ ଫେରାର ।

ପଡ଼ି ପଡ଼ି ଖାଇବା – କାମ ନକରି ଖାଇବା– enjoy without labour or price

.. କେତେ ଦିନ ଅନ୍ୟ ଘରେ ପଡ଼ି ପଡ଼ି ଖାଉଥିବୁ ?

ପ୍ରଣବ ଅଶୁଦ୍ଧ – ପ୍ରଥମରୁ ହିଁ ଭୁଲ– erroneous beginning

.. ଆରେ ଯାହାର ପ୍ରଣବରୁ ଅଶୁଦ୍ଧ, ତାଠୁଁ ଅଧିକ କ'ଣ ଆଶା କରିବ ?

ପଣିକିଆ ଧରିବା – ପଣକିଆ ଆରମ୍ଭ କରିବା– practising table

.. ପିଲାଏ ଷୋଳକ ଯାଏ ପଣିକିଆ ଧରିଗଲେଣି ।

ପତର ଗୋଟାଇବା ଲୋକ ତୋଟା ମୂଲ କରିବା – ଛୋଟ ଲୋକର ବଡ଼ ବଡ଼ ଚିନ୍ତା– a man of little means trying to acquire great things

.. ତୁ ଯେତିକର ମଣିଷ ସେତିକି କଥା କହ । ପତର ଗୋଟାଇବା ଲୋକ ତୋଟା ମୂଲ କରୁଛୁ କାହିଁକି ?

ପତର ଖଣ୍ଡକୁ ଦି'ଖଣ୍ଡ ନ କରିବା – ଅକର୍ମା ହୋଇ ବସି ରହିବା– being unemployed

.. ସେ ତ ପତର ଖଣ୍ଡକୁ ଦି'ଖଣ୍ଡ କରୁନି । ତା'କୁ କିଏ ଝିଅ ଦବ ?

ପତ୍ର ଧରିବା – ନୂଆ ପତ୍ର କଅଁଳିବା– putforth new leaves/ newly born

.. ଫୁଲ ଗଛରେ ନୂଆପତ୍ର ଧରିଲାଣି ।

ପଥ ଓଗାଳିବା – ବାଧାଦେବା– obstructing

.. ସେମାନଙ୍କ ପଥ ଓଗାଳିବା ପାଇଁ ଗୋଟାଏ ବନ୍ଧୁକ ଯଥେଷ୍ଟ ।

ପଥ କଢ଼ାଇ ନେବା – ଆଗେଇବାରେ ଉପାୟ କରିବା– to make a route

.. ଭିଡ଼ ଭିତରେ ପଥ କଢ଼ାଇ ନେବା ଦାୟିତ୍ୱ ମନିଟରକୁ ଦିଆଯାଇଛି ।

ପଥ ଚାହିଁ ବସିବା – ପ୍ରତୀକ୍ଷା କରିବା– awaiting

.. କେତେକାଳ ପଥ ଚାହିଁ ବସିବ ? ସେ କେବେ ଫେରିବନି ।

ପଥ ଦେବା – ଯିବା ପାଇଁ ସୁଯୋଗ ଦେବା– to give way

.. ସେମାନଙ୍କୁ ମଞ୍ଚ ଉପରକୁ ଯିବା ପାଇଁ ପଥ ଦିଅ ।

ପଥ ଦେଖିବା – ଉପାୟ ବାହାର କରିବା– find out a way

.. ଆଶ୍ରିତ ପିଲାଟି ପାଇଁ କିଛି ନା କିଛି ପଥ ଦେଖିବାକୁ ହେବ ।

ପଥ ଦେଖାଇବା – ଭୁଆଁ ବୁଲାଇବା, ଦୃଷ୍ଟାନ୍ତ ଦେବା– to guide/ to misguide

ସେ ଏମିତି ପଥ ଦେଖାଇଛନ୍ତି, ସେଠୁଁ ଲୋକଟା ରକ୍ଷା ପାଇବା ଅସମ୍ଭବ ।

ପଥକୁ ଆସିବା – ଠିକ୍ ବାଟରେ ପରିଚାଳିତ ହେବା– follow the right path

.. ବାରବର୍ଷ ବୁଲିବା ପରେ ଏବେ ସେ ପଥକୁ ଆସିଛି ।

ପଥରେ କଣ୍ଟା ବିଛାଇବା – ବାଧା ସୃଷ୍ଟି କରିବା– to obstruct

ଅନ୍ୟର ଭଲ ଚିନ୍ତାକର । ପଥରେ କଣ୍ଟା ବିଛେଇ କ'ଣଟା ପାଉଛ ?

ପଥରେ ବସାଇବା – ସର୍ବସ୍ୱାନ୍ତ ହେବା– totally ruined

.. ଜୁଆ ଖେଳରେ ସବୁ ହରାଇ ଏବେ ସେ ପଥରେ ବସିଛନ୍ତି ।

ପଥର କଣ୍ଟା – ବିଘ୍ନ– obstacle

.. ସେ ତମ ପଥର କଣ୍ଟା ନୁହଁ । ତମେ ଭୁଲ ବୁଝିଛ ।

ପଥର କୁକୁର – ଆଶ୍ରୟହୀନ, ଅବହେଳିତ– neglected/homeless

.. ପଥର କୁକୁର ଭଳି ଏବେ ତା'ଙ୍କୁ ଦ୍ୱାର ଦ୍ୱାର ବୁଲିବାକୁ ପଡୁଛି ।

ପଦାରେ ପଡ଼ିଯିବା – ଗୁପ୍ତ କଥା ପ୍ରଘଟ ହୋଇଯିବା– leak out of secrecy

.. ତା'ଙ୍କର ପୁରୁଣା ଚାଲିଟା ପଦାରେ ପଡ଼ିଯାଇଛି ।

ପଞ୍ଚ ମୁଖେ ହରି – ବହୁ ମତରେ ଫଇସଲା– decision by majority

.. ପଞ୍ଚମୁଖେ ହରି, ସେମାନଙ୍କ ଉପରେ ଭରସା ରଖ । ନ୍ୟାୟ ମିଳିବ ।

ପଞ୍ଚତ୍ୱ ପ୍ରାପ୍ତି – ମୃତ୍ୟୁବରଣ କରିବା– died/ passing away

.. ବାବାଜୀ ମହାରାଜାଙ୍କର ଶହେ ବର୍ଷରେ ପଞ୍ଚତ୍ୱ ପ୍ରାପ୍ତି ହେଲା ।

ପଞ୍ଚାଶବାର – ବହୁବାର– several times

.. ସେ ପଞ୍ଚାଶବାର ଚେଷ୍ଟା କଲେଣି, ହେଲେ କାମଟା ହଉନି ।

ପବନ ରହିବା – ପବନ ଥମିବା– wind becomes weaker

.. ପବନ ରହିଗଲାଣି, ଆଉ ବାତ୍ୟାର ସମ୍ଭାବନା ନାହିଁ ।

ପରଘରେ ମଙ୍ଗଳବାର କରିବା – ଅନ୍ୟଦ୍ୱାରା ନିଜର ସ୍ୱାର୍ଥ ସାଧନ କରିବା, ଉପର ଠାଉରିଆ– cheat/ take a bird's eyeview

.. କେତେଦିନ ଅନ୍ୟ ଉପରେ ନିର୍ଭର କରିବ । ଏ ପରଘରେ ମଙ୍ଗଳବାର କରିବା ବନ୍ଦ କର ।

ପରତେ ନ ଯିବା – ବିଶ୍ୱାସ ନ କରିବା – not to trust

.. ତମ ଗୁଲାପି ଗପରେ କିଏ ପରତେ ଯିବ ?

ପର୍ବତକୁ ଟେକା ମାରିବା – ନିଜ ସ୍ଥିତି ବିଷୟରେ ସନ୍ଦିହାନ– very insignificant

.. ତୁ କେତେକର ମଣିଷ ! ପର୍ବତକୁ ଟେକାମାରି ତା'ର କ'ଣ କରିପାରିବୁ ?

ପର୍ବତର ମୂଷିକ ପ୍ରସବ – ବିରାଟ ସମ୍ଭାବନା ଭିତରେ ସାମାନ୍ୟ ଲାଭ– much ado about nothing

.. ଏତେ ଦିନ ରାତି ଅନିଦ୍ରା ହେଇ ଏତିକି ମିଳିଲା ? ଏ ତ ପର୍ବତର ମୂଷିକ ପ୍ରସବ ସଙ୍ଗେ ସମାନ ।

ପହରା ଦେବା – ଜଗିବା, ଜଗାରଖା– keep watch/ look after

.. ଚୋରଗୋଳ ପାଇଁ ରାତିସାରା ପହରା ଦିଆ ହଉଛି ।

ପହିଲା ନମ୍ବର – ଉତ୍କୃଷ୍ଟ, ବାଜେ– excellent/ notorious/ of the first water

.. ଲୋକଟା ଆମ ପରିବାରର ପହିଲା ନମ୍ବର ଶତ୍ରୁ ।

ପକ୍ଷୀର ପ୍ରାଣ – ଦୁର୍ବଳ ପ୍ରାଣ– weakhearted

.. ତା'ର ଯେ ପକ୍ଷୀର ପ୍ରାଣ, ଏକଥା ସମସ୍ତେ ଜାଣନ୍ତି ।

ପଶ୍ଚିମରେ ସୂର୍ଯ୍ୟ ଉଦୟ ହେବା – ଅସମ୍ଭବ ଘଟଣା ଘଟିବା– impossible happening

.. ଯେଉଁଦିନ ସେ କଂଜୁସ୍ ବୁଢ଼ା ଟଙ୍କାଟିଏ ଦାନ ଦେବ, ଜାଣିବ ସେଦିନ ପଶ୍ଚିମରେ ସୂର୍ଯ୍ୟ ଉଦୟ ହେଲା ।

ପ୍ରସ୍ତାବ ଭାଙ୍ଗିବା – ପ୍ରସ୍ତାବ କାର୍ଯ୍ୟକାରୀ ନ ହେବା– not to be carried out/ be cancelled

.. ଏତେଦିନ ପଡ଼ି ପଡ଼ି ପ୍ରସ୍ତାବଟା ଭାଙ୍ଗିଯିବା ଭାରି ଦୁଃଖଦାୟକ ।

ପାଖ ନ ମାଡ଼ିବା – ପୁରାପୁରି ଉପେକ୍ଷା କରିବା – overlook/ to ingore

.. ଏତେ ସବୁ କଥା ଜାଣିଲା ପରେ କିଏ ତା'ଙ୍କ ପାଖ ମାଡ଼ିବ ?

ପାଗ ବାନ୍ଧିବା – ପଗଡ଼ି ଭିଡ଼ିବା– tightening the turban/ get ready

.. ପାଇକମାନେ ଭଲ ପାଗ ବାନ୍ଧିଥାନ୍ତି ।

ପାଗ ଭିଡୁ ଭିଡୁ କଚେରି ବରଖାସ୍ତ – ବୃଥା ଆୟୋଜନରେ ଲକ୍ଷ୍ୟଭ୍ରଷ୍ଟ– to miss the goal by digressing into external formalities

.. ଗାଡ଼ି ମିଳିଲେ ଟିକଟେ ପାଇଁ ଯିବୁ । ଆରେ ଭାଇ, ପାଗ ଭିଡୁ ଭିଡୁ ତେଣେ କଚେରି ବରଖାସ୍ତ ହୋଇଯିବ ଯେ ।

ପାଚିଲା ଆମ୍ବ – ପରିଣତ ବୟସ– old age/ matured stage

.. ସେ ତ ପାଚିଲା ଆମ୍ବ । କେତେବେଳେ ଝଡ଼ିଯିବେ, କିଏ କହିବ ।

ପାଚିଲା ଧାନରେ ମଇଦେବା – କାର୍ଯ୍ୟରେ ବାଧା ସୃଷ୍ଟି କରିବା– unnecessary hurdles

.. ଜନସାଧାରଣଙ୍କ କାମ । ଏ ପାଚିଲା ଧାନରେ ମଇ ଦେଇ କ'ଣଟା ପାଇଲ ?

ପାଟିପଡ଼ିବା – ଶେଷ ଅବସ୍ଥାକୁ ଆସିଯିବା– nearer to death/ lock jaw

.. ବୁଢ଼ାର ପାଟି ପଡ଼ିଗଲାଣି, ଏଣିକି ଖସିଯିବ ।

ପାଟି ଲାଗିବା – ଅଟକେଇ ଅଟକେଇ କଥାବାର୍ତ୍ତା କରିବା– speak with pauses

.. ଦେଢ଼ବର୍ଷର ଛୁଆଟା, ପାଟି ଲାଗିବ ନିଶ୍ଚୟ ।

ପାଟିରେ ପକାଇବା – ଖାଇଦେବା– to eat/ consume/ spend

.. ସେ ଯାହା ରୋଜଗାର କରନ୍ତି ସେବୁ ପାଟିରେ ପକେଇ ଦିଅନ୍ତି ।

ପାଟିରେ ବାଟୁଳି ନ ବାଜିବା – ଅନର୍ଗଳ ଭାବେ କହି ଚାଲିବା– speak fluently

.. ଭାଷଣ ଦେଲାବେଳେ ତା' ପାଟିରେ ବାଟୁଳି ବାଜୁନି ।

ପାଟିରେ ବେଙ୍ଗ ପଶିବା – ଉତ୍ତର ଦେଇ ନ ପାରିବା – to remain mum

.. କିଛି କହୁନୁ କାହିଁକି ? ପାଟିରେ କ'ଣ ବେଙ୍ଗ ପଶିଛି ?

ପାଟିରେ ବାଡ଼ବତାଦେବା – ଅଟକାଇବା– make speechless/ challenge

.. ଅସଂଖ୍ୟ ଜନସମୁଦ୍ର । ସେମାନଙ୍କ ପାଟିରେ କିଏ ବାଡ଼ବତା ଦବ !

ପାଠ ଚୋର – ସ୍କୁଲକୁ ଡରିବା– unwilling to go to school

.. ଏ ପିଲାଦିନୁ ଏମିତି ପାଠଚୋର ହେଲେ ବଡ଼ ହେଲେ କ'ଣ କରିବୁ ?

ପାଣି ଗ୍ରହଣ କରିବା– ବିବାହ କରିବା – to marry

ପାଣିକି ଛେଳି– ଅନିଚ୍ଛୁକ – very unwilling to do a certain work

ପାଣି ଫୋଟକା– କ୍ଷଣସ୍ଥାୟୀ – frail/momentary

ପାଣି ଧରିବା – ସ୍ୱାସ୍ଥ୍ୟର ଅନୁକୁଳ ନ ହେବା– not favourable to health

.. ଏଣେ ତେଣେ ଗାଧୋଇବାରୁ ତା'ଙ୍କୁ ପାଣି ଧରିଲା ।

ପାଣି ମାଡ଼ିବା – ଜଳ ପ୍ଲାବିତ ହେବା– overflow of water

.. ଜୋର୍‌ରେ ପାଣି ମାଡୁଛି, ନିମିଷକେ ଘରଦ୍ୱାର ଭସେଇନବ ।

ପଣିରେ ଗାର ଟାଣିବା – ବୃଥା ପରିଶ୍ରମ, ମିଥ୍ୟା ପ୍ରତିଶୃତି– be fruitless/ fleeting

.. ତା'ଙ୍କ କଥା ହଉଛି ପାଣିରେ ଗାର ଟାଣିବା ଭଳିଆ ।

ପାଣିରେ ସର ପକାଇବା – ମିଛ କଥା କହି ବିଶ୍ୱାସ ଜନ୍ମାଇବା– utter sweet words/ cajole

.. ସେ ପାଣିରେ ସର ପକାଇବା ଲୋକ । ତା'ଙ୍କୁ ବିଶ୍ୱାସ ନାହିଁ ।

ପାଣି ଛଡ଼ାଇବା – ଆଶା ନ ରଖିବା– to loose hope

.. ସେ ପିଲାଟାକୁ ପାଣି ଛଡ଼େଇ ଦେଇଛନ୍ତି । ବଂଚିଲେ ବଂଚିବ, ନଇଲେ ନାଇଁ ।

ପାଣି ନ ଗଳିବା – ନିବିଡ଼ ସଂପର୍କ– close intimacy

.. ତା'ଙ୍କ ଦି'ଜଣଙ୍କର ପାଣି ଗଳେନି । ଝଗଡ଼ା କଥା ଉଠୁଛି କେତେ ?

ପାଣି ପକେଇବା – ଶାନ୍ତ କରିବା– make quiet

.. ତମେ କାହିଁକି ବ୍ୟସ୍ତ ହଉଛ ? ସେ ନିଆଁରେ ଠିକ୍ ସମୟରେ ପାଣି ପକେଇଦେବେ ।

ପାଣି ପିଆଇବା – ହଇରାଣ କରିବା– to vex/ to annoy

.. ଏ ଘଟଣାରେ ସେ ତା'ଙ୍କୁ ପାଣି ପିଆଇ ସାରିଲେଣି ।

ପାଦ ଚଳାଇବା – ଅଗ୍ରସର ହେବା, ଆଘାତ କରିବା (ପାଦରେ)– to proceed/ to kick

.. ଯଇଦି ପାଦ ଚଳାଅ, ନଇଲେ ପହଂଚି ପାରିବନି ।

ପାଦ ଚାଟିବା – ତୋଷାମଦ କରିବା– to flatter

.. ବଡ଼ ଲୋକର ପାଦଚାଟିବା ହେଲା ତା'ର ପ୍ରକୃତି ।

ପାଦ ଟିପିବା – ନିଶବ୍ଦରେ ଆସିବା– come without noise/ slowly

.. ପାଦ ଟିପି ଟିପି ସେ ଘର ଭିତରକୁ ପ୍ରବେଶ କଲେ ।

ପାଦଦେବା – ପଦାର୍ପଣ କରିବା– attaining/succeeding

.. ସେ ଶହେ ବର୍ଷରେ ପାଦଦେଲେ ।

ପାଦ ବଢ଼ାଇବା – ଯିବାପାଇଁ ପ୍ରସ୍ତୁତ ହେବା, ଅଗ୍ରସର ହେବା– develope friendship/ to proceed

.. ଜାଣି ଶୁଣି ସେ ଶତ୍ରୁ ସହିତ ପାଦ ବଢ଼ାଇଛନ୍ତି ।

ପାଦରେ ଠେଲିବା – ଉପେକ୍ଷା କରିବା– neglecting/ abondoning

.. ଘରର ଲକ୍ଷ୍ମୀକୁ ସେ ପାଦରେ ଠେଲଦେଲେ ।

ପାଦରେ ପଡ଼ିବା – ଅନୁନୟ କରିବା– to plead/ be submissive to

.. ଚାକିରୀଟିଏ ପାଇଁ ସେ ବାରବାର ପାଦରେ ପଡ଼ିଲେଣି ।

ପାଦ ଧୂଳିନେବା – ଆଶୀର୍ବାଦ ନେବା, ପ୍ରଣାମ କରିବା– to pay respect by touching feet

.. ବୋହୂ ଶ୍ୱଶୁରଙ୍କ ପାଦଧୂଳି ନେଇ ବାପଘରକୁ ଗଲା ।

ପାନରୁ ଚୂନ ଖସିବା – ସାମାନ୍ୟ ବିଘ୍ନରୁ ପ୍ରଳୟ– a great fuss over a little thing

.. କାହିଁକି ଏମିତି ସେ ବାଡ଼େଇପିଟି ହଉଛନ୍ତି ? ପାନରୁ ଚୂନ ଖସି ଗଲାକି ?

ପାନ ଭାଙ୍ଗିବା – ପାନରେ ମସଲା ମସଇ ଦେଇ ଖିଲ ପ୍ରସ୍ତୁତ କରିବା– folding betel

.. ଶହେ ପାନ ଭାଙ୍ଗିବା ପାଇଁ ତା'ଙ୍କୁ ଅଡ଼ର ଦିଆଯାଇଛି ।

ପାଞ୍ଚକଥା – ନାନା କଥା, କଟୁ କଥା– harsh words/ public opinion

.. ସୁଯୋଗ ପାଇଲେ ସାଧାରଣ ଲୋକ ବି ପାଞ୍ଚକଥା କହିବାକୁ ଛାଡ଼ିବନି ।

ପାଞ୍ଚକାନ ହେବା – ପ୍ରଚାରିତ ହେବା, ରାଷ୍ଟ୍ର ହେବା– made public/ be disclosed

.. ଆମ ଘର ଭିତର କଥାଟା କେମିତି ପାଞ୍ଚକାନ ହେଲା ?

ପାଞ୍ଚଜଣ – ଜନ ସାଧାରଣ– public/ common mass

.. ସଭାରେ ପାଞ୍ଚଜଣ ପାଞ୍ଚ କଥା କହିବା ଠିକ୍ ।

ପାଞ୍ଚ ଆଙ୍ଗୁଠି ପାଟିରେ ପୁରେଇବା – ସବୁ ମାଡ଼ିବସିବା– control everything

.. ସେ ତ ନିଜେ ପାଞ୍ଚ ଆଙ୍ଗୁଳି ପାଟିରେ ପୁରେଇଛି । କାମଟା କେମିତି ସୁରୁଖୁରୁରେ ହୋଇଥାନ୍ତା ?

ପାପ ଧନ ପ୍ରାୟଶ୍ଚିତରେ ଯିବା – ଅନ୍ୟାୟ ଅର୍ଜିତ ସଂପତ୍ତି ଉଡ଼ିଯାଏ– ill got ill spent

.. ସେ କ'ଣ ବା କରିବେ ? ଘର ପୋଡ଼ିକୁ ଡଙ୍ଗା ବୁଡ଼ିବା । ପାପଧନ ପ୍ରାୟଶ୍ଚିତରେ ଗଲା ।

ପ୍ରାଣ ଉଡ଼ିଯିବା – ମରିଯିବା– passing away

.. ଦେହରୁ ତା'ଙ୍କର ପ୍ରାଣ ଉଡ଼ିଯାଇଛି ।

ପ୍ରାଣଖୋଲା – ଖୋଲାଖୋଲିଭାବେ– heart-to-heart/ openly

.. ଜିତିଗଲା ପରେ ସେ ପ୍ରାଣଖୋଲା ହସ ହସିଲେ ।

ପ୍ରାଣ ଛାଡ଼ିବା – ଇଚ୍ଛା ମୃତ୍ୟୁବରଣ କରିବା– desired death

.. ବିନୋବା ସ୍ୱଦେହରେ ପ୍ରାଣ ଛାଡ଼ିଥିଲେ ।

ପ୍ରାଣର ପ୍ରାଣ – ଅତିପ୍ରିୟ ବ୍ୟକ୍ତି– darling

.. ନାତିଟା ହେଉଛି ତା'ଙ୍କ ପ୍ରାଣର ପ୍ରାଣ ।

ପାଲରେ ପକାଇବା – ଭୁଲାଇ ରାଜି କରାଇବା– to trap/ ensnare

.. ଭଲ ଲୋକଟାକୁ ସେମାନେ ପାଲରେ ପକାଇ ଦେଲେ ।

ପାଲିଙ୍କି ଉପରେ ପାଟ ଛତା – ପରିପୂର୍ଣ୍ଣ ସୁଖ ସମୃଦ୍ଧି, ଉନ୍ନତି ପରେ ଉନ୍ନତ– to pamper the rich

.. ତା'ର ତ ପାଲିଙ୍କି ଉପରେ ପାଟଛତା । ତା'କୁ ଅଭାବ କାହିଁକି ବାଧିବ ?

ପାସଙ୍ଗରେ ନ ପକାଇବା – ହେୟଜ୍ଞାନ କରିବା– to despise

.. ସେ ତା'କୁ ପାସଙ୍ଗରେ ପକଉନି । ଜିତିବ ବୋଲି କେମିତି ଭାବୁଛ ?

ପିଛା କରିବା – ପଛେ ପଛେ ଅନୁସରଣ କରିବା– to follow

.. କେତେଦିନ ଅନ୍ୟର ପିଛା କରିବ ? ନିଜେ କିଛି କର ।

ପିଟାପିଟି କରିବା – ମାରଧର କରିବା– to beat

.. ପିଟାପିଟି କଲେ ସେ କ'ଣ ସତ କଥା କହିଦେବ ?

ପିଟି ଲମ୍ୱା କରିଦବା – ପ୍ରଚଣ୍ଡ ଭାବେ ମାରିବା– beating severely

.. ସଭାରେ ଯଦି ଗଣ୍ଡଗୋଳ କରିବ, ପିଟି ଲମ୍ୱା କରିଦବ ତା'କୁ ।

ପିଠିରେ ପଡ଼ିବା – ସାହାଯ୍ୟ କରିବା– to help/ to protect/ to support

.. ଯେଉଁକାମ କରିଛି, ଏଥିରେ କିଏ ପିଠିରେ ପଡ଼ିବ ?

ପିଠି ପତେଇବା – ବିପଦ ବରଣ କରିବା– to face the danger

.. ତା'ଙ୍କୁ କିଏ କହିବ ? ସେ ସ୍ୱଇଚ୍ଛାରେ ଏଥିପାଇଁ ପିଠି ପତେଇଛନ୍ତି ।

ପିଠି ଆଉଁସିବା – ତେଲାତେଲି କରି– flattering

.. ପିଠି ଆଉଁସା ଆଉଁସି କରି କୌଣସି ପ୍ରକାରେ କାମଟା ଚଳେଇ ଦିଅ ।

ପିଠି ଥାପୁଡ଼େଇବା – ପ୍ରଶଂସା କରିବା– to praise

.. ପିଠି ଥାପୁଡ଼େଇବାରୁ ସିନା ଟୁଣ୍ଡାଟା ଏତେବଡ଼ ବୋଝ ଉଠେଇନେଲା ।

ପିଠିରେ ହାତ ବୁଲାଇବା – ମିଠା କଥା କହି କାମ ହାସଲ କରିବା– to get things

done by sweet tongue

.. ଗରିବ ଲୋକଙ୍କ ପିଠିରେ ହାତ ବୁଲାଇ ସେ ଭୋଟ ଆଦାୟ କରିନେଲା ।

ପିଠିର ଚମଡ଼ା ଉତାରିବା – ଜୋର୍ ମାଡ଼ଦେବା– beating mercilessly

.. ସେ ପିଠିର ଚମଡ଼ା ଉତାରିଲା ଭଳିଆ କାଣ୍ଡ କରିଛି । ଫଳ ଭୋଗୁ ।

ପିଣ୍ଡାଓଲୁ – ବାହ୍ୟ ଜଗତ ବିଷୟରେ ଅନଭିଜ୍ଞ– ignorant/ foolish

.. ଆରେ ସେତ ପିଣ୍ଡାଓଲୁ, ତା'କୁ ସଂସ୍କୃତ ଭାଷଣ କ'ଣ ଶୁଣାଉଛ ?

ପିତ୍ତ ଚଢ଼ିବା – ରାଗିଯିବା– to get angry

.. ତା'ଙ୍କର ଯେମିତି ପିତ୍ତ ଚଢ଼ିଛି, ସେ କାହାକୁ ଛାଡ଼ିବେନି ।

ପିତ୍ତ ବାହାର କରିବା – ପ୍ରଚଣ୍ଡ ମାଡ଼ଦେବା– beat severely

.. ମୁଁ ଯଦି ତୋ ପିତ୍ତ ବାହାର ନ କରିଚି, ତୁ ମତେ ଚିହ୍ନିବୁ ।

ପିମ୍ପୁଡ଼ି ରୁଖା ଉପରେ ଚଢ଼ିବା – ଛୋଟ ଲୋକର ମୁହଁ ଉପରକୁ ହେବା ।– unreasonable aspiration

.. ପିମ୍ପୁଡ଼ି ରୁଖା ଉପରକୁ ଚଢ଼ିଛି, ଛଟକ ଦେଖେଇବ କିଛି ସମୟ ।

ପିଳେହି ପାଣିହେବା – ଭୟଭୀତ ହେବା– to tremble in fear/ be frightened

.. ବାଘକୁ ଘର ଭିତରେ ଦେଖି ତା'ଙ୍କ ପିଳେହି ପାଣି ।

ପେଁକାଳି ବାଜିବା – ଅବସ୍ଥା ସାଂଘାତିକ ହେବା– ruin one's life

.. ପୁଅ ଝିଅ ବାହାଘର କରି ତା'ଙ୍କ ପେଁକାଳି ବାଜିଗଲାଣି ।

ପେଟ ଆଣ୍ଠିବା – କୋଷ୍ଠବଦ୍ଧତା ହେବା– suffering from constipation

.. ତା' ପେଟ ଏମିତି ଆଣ୍ଠିଛି ଯେ ବଟିକା ନ ଖାଇଲେ ସେ ଉଠିପାରିବନି ।

ପେଟ କରିବା – ଅବୈଧ ଗର୍ଭ ସଞ୍ଚାର କରିବା– to bear illegitimate child

.. ଚାକର ପିଲାଟା ଝିଅଟିର ପେଟ କରଦେଇଛି ।

ପେଟ କାଟିବା – ପେଟକୁ ମାରି, ଖାଇବା କମେଇ– take less quantity

.. ପେଟ କାଟି ସେ ଧନ ସଞ୍ଚୟ କରିଛି ।

ପେଟ କାମୁଡ଼ିବା – ଗୋପନ କଥା ପ୍ରକାଶର ବ୍ୟସ୍ତତା– to let out the secret

କେମିତି କଥାଟା ପ୍ରକାଶ କରିବ, ସେଥିନେଇ ତା' ପେଟ କାମୁଡୁଛି ।

ପେଟ ଖରାପ ହେବା – ବଦହଜମି ହେବା– indigestion

.. ପେଟ ଖରାପ ହେବାରୁ ସେ ଖାଇଲେନି ।

ପେଟ ଡାକିବା – ଅଜୀର୍ଣ୍ଣ ଯୋଗୁ ପେଟ ଶବ୍ଦ କରିବା– belly-ache due to indigestion

.. ତା'ର ପେଟ ଡାକୁଛି, ଆଉ ସେ ଖାଇବ କ'ଣ ?

ପେଟପୂଜା କରିବା – ଖାଇବା– taking/ eating

.. ପେଟ ପୂଜା ସରିଲାଣି ଯଦି, ଘରକୁ ଯାଅ ।

ପେଟ ଭରିବା – କରଗତ କରିବା, ଉଦରସ୍ଥ କରିବା– to capture/ to take

.. ଟଙ୍କା ପଇସାରେ ତା' ପେଟ ଭରିଛି । ଆଉ କ'ଣ ସେ ନେବ ?

ପେଟପୋଷ ନାହିଁଦୋଷ – ଜୀବନ ଧାରଣ ପାଇଁ ଯେ କୌଣସି ଜୀବିକା ଦୋଷାବହ ବା ନ୍ୟୂନ ନୁହେଁ ।– any profession to earn bread in justified

.. ବାରିକ କାମ ଖରାପ କ'ଣ ? ଆରେ ପେଟ ପୋଷ ନାହିଁ ଦୋଷ ।

ପେଟ ପିଠି ଲାଗିବା – ଖଟି ଖଟି ମରିବା, ଦୁର୍ବଳ ହୋଇ ପଡ଼ିବା – becomes weak/ to be crushed

.. ତା'ଙ୍କ ପେଟ ପିଠି ତ ଲାଗିଗଲାଣି । ଆଉ କ'ଣ ସେ ଖଟିବେ ?

ପେଟକୁ ଦେଇ ପିଠିକି ମାରିବା – ଖାଇବାକୁ ଦେଇ ଖଟେଇବା– to feed and whip

.. ପେଟକୁ ଦେଇ ପିଠିକି ମାରି ମାରି ତ ସେ ଜମିଦାର ହୋଇଛନ୍ତି ।

ପେଟ କଥା ପିଠି ନ ଜାଣିବା – ଜଣଙ୍କର କଷ୍ଟ ଆଉଜଣେ ଜାଣି ନ ପାରିବା– the wearer alone best knows where the shoe pinches

.. ଅଭିଆଡ଼ା କେମିତି ଜାଣିବ ପିଲାଙ୍କ ବେଦନା ? କଥାରେ କହନ୍ତି ନି, ପେଟକଥା ପିଠି ନ ଜାଣେ ।

ପେଟ ମରିବା – ଖାଇବା କମିଯିବା– (food) intake has fallen

.. ନ ଖାଇ ନ ପିଇ ତା'ପେଟ ମରିଗଲାଣି ।

ପେଟ ମାରିବା – ଖାଇବା କମେଇବା– to save by cutting essentials

.. ପେଟ ମାରି ନଥିଲେ, ସେ କୋଠାବାଡ଼ି କରି ପାରିଥାନ୍ତା ?

ପେଟକୁ ମାରିବା – ଦାନାକନା ଉଜେଇଜିବା – to suck one's bread and butter

.. ପେଟକୁ ମାରୁଛି । ସେ କି କାମ କରିବ ?

ପେଟ ଥଣ୍ଡା ହେବା – ଭୋଜନରେ ସନ୍ତୁଷ୍ଟ ହେବା– satisfied at the table

.. ପେଟଥଣ୍ଡା ନ ହେବାଯାଏ ପାଟିରୁ କଥା ବାହାରିବନି ।

ପେଟ ମୋଟା ହେବା – ଅନ୍ୟାୟ ଧନରେ ଧନୀ ହେବା– to become rich clandestinely

.. ଘରୁ ବାହାରୁ ସବୁ ଆଡୁ ଖାଇ ତା' ପେଟ ମୋଟା ହେଇଗଲାଣି ।

ପେଟ ହେବା – ଗର୍ଭ ସଞ୍ଚାର ହେବା– to conceive

.. ଏତେ ଦିନକରେ ଝିଅଟାର ପେଟ ହେଇଛି ।

ପେଟରେ ରଖିବା – ଗୋପନ ରଖିବା– to keep the matter secret

.. କଥାଟାକୁ ମା' ପେଟରେ ରଖିବାରୁ ସେ ବଂଚିଗଲା ।

ପେଟ ଭୋକ ମୁହଁ ଲାଜ – ସଂକୋଚ ଯୋଗୁ ଇଚ୍ଛା ପ୍ରକାଶ କରି ନପାରିବା– tummy burns, but mouth shirks

.. ଯାହା ଖାଇବା କଥା କୁହ, ନଇଲେ ରୋଗଣା ହୋଇଯିବ । ଏ ଭୋକ ମୁହଁ ଲାଜ ଢଙ୍ଗ ଛାଡ଼ ।

ପେଟର ଶତ୍ରୁ – ଗର୍ଭସ୍ଥ ସନ୍ତାନ ଦୁଃଖର କାରଣ– the enemy within

.. ପେଟରେ ଶତ୍ରୁ ବଢ଼ୁଛି । ନିଶ୍ଚୟ ସେ ଚୋଟ ମାରିବ ।

ପୋକ ଧରିବା – ପୋକ ଲାଗିବା– infected by insects

.. ନୂଆଗଛ ଗୁଡ଼ାକ ବହୁତ ପୋକ ଧରିଛି ।

ପୋଡ଼ା କପାଳ – ମନ୍ଦ ଭାଗ୍ୟ, ହୀନ କପାଳ– ill fate/ misfortune

.. ତା'ଙ୍କ କପାଳରେ ଏତେ ସୁଖ କାହୁଁ ଆସିବ ?

ପୋଡ଼ା ଘା'ରେ ଚୂନଦେବା – ଟତବିକ୍ଷତ କରିବା – to add fuel to flame

ପୋଡ଼ା ମୁହଁ – କଳଂକିତ ମୁଖ– mean nature/ despicable face

.. ଏ ପୋଡ଼ା ମୁହଁ ସେ କାହାକୁ ଦେଖାଇବ ?

ପୋଡ଼ିଗଲା ତିଅଣ – ଶ୍ରଦ୍ଧା କମିଯିବା କାର୍ଯ୍ୟ– vile works

.. ତା'ଙ୍କ ମନ ଭାଂଗିଯାଇଛି । ପୋଡ଼ିଗଲା ତିଅଣରେ କୋଉଠୁ ସୁଆଦ ଆସିବ ?

ପୋତା ଯେତେ ଉଭା ସେତେ – ପ୍ରାଚୁର୍ଯ୍ୟ– plenty/ abundance

.. କ'ଣଟା ତା'ଙ୍କର ମାପିବ ? ତା'ଙ୍କର ପୋତା ଯେତେ ଉଭା ସେତେ ।

ପୋଥିରେ ଡୋରି ବାନ୍ଧିବା – ପାଠ ପଢ଼ା ବନ୍ଦ କରିବା– end of formal education

.. ସ୍କୁଲ ଘର ଭାଂଗିଗଲାରୁ ପିଲାଟାର ପୋଥିରେ ଡୋରି ବନ୍ଧା ହେଲା ।

ପୋଥି ବାଇଗଣ – ଅଭିଜ୍ଞତା ନଥିଲେ ଫଳ ମିଳେନା– impractical theoretical knowledge

.. ପୋଥିଗତ ବିଦ୍ୟା ଯେତେ ଥାଉପଛେ ଦରକାରବେଳେ ସେ ଅଶିକ୍ଷିତ ବଳଦ ହିଁ କାମକୁ ଆସିବ ।

ପୋଷାପୁଅ ଗୁଂଜାରୁଅ – ନିଜର ହୋଇ ନ ପାରିବା, କୌଣସି କାମରେ ନୁହେଁ – adopted son seldom sustains/useless

.. ପୋଷାପୁଅ ଗୁଂଜାରୁଅ, ସେ ତା' ସ୍ଥାନକୁ ନ ଯାଇ କ'ଣ ରହିଥାନ୍ତା ?

ପୋଷା କୁକୁର – ନିଜଲୋକ– tamed one/very closed

.. ସେ ତା'ଙ୍କ ପୋଷାକୁକୁର । ତା'ଙ୍କୁ ହାତ କରିବା ସହଜ ନୁହେଁ ।

ପୋଷାକୀ ନାମ – ସ୍କୁଲ କଲେଜରେ ଲେଖା ହେଉଥିବା ନାଁ– registered name

.. ତା'ଙ୍କର ଆଉ ନାଁ ନାହିଁ । ସେଇ ପୋଷାକୀ ନାମରେ ସମସ୍ତେ ଡାକନ୍ତି ।

ପୋଷାକୀ ଭଦ୍ରତା – ଲୋକଦେଖାଣିଆ ଭଦ୍ରତା– outward modesty

.. ନେତାଙ୍କ ପୋଷାକୀ ଭଦ୍ରତାରୁ ଜାଣିପାରୁନ, ସେ କି ପ୍ରକାରର ଲୋକ ?

## ଫ

ଫକଡ଼ରାମ ଗିରିଧାରୀ – ହାତରେ ଅର୍ଥ ନଥାଇ ବଡ଼ ବଡ଼ କଥା କହିବା, ଅଯଥା ବାହାଦୁରୀ– poor/ fraudulent

.. ସେ ତ ଫକଡ଼ରାମ ଗିରିଧାରୀ । ସେ ତମକୁ କି ସାହଯ୍ୟ ଦେବ ?

ଫଟା କପାଳ – ମନ୍ଦ ଭାଗ୍ୟ– ill-luck/ fateless one

.. ମୋ ଫଟା କପାଳରେ ଧନ ରତ୍ନ କୋଉଠୁ ଆସିବ ?

ଫଟା ସିନ୍ଦୂକ – ଅଚଳ ଜିନିଷ, ଅଦରକାରୀ ପଦାର୍ଥ– useless things

.. ଫଟା ସିନ୍ଦୂକ ଧରି କେତେଦିନ କାଳ କାଟିବୁ ?

ଫଟାଫଟି – ଝଗଡ଼ା ଝାଟି, ବାଗବିତଣ୍ଡା– altercation

.. ବି'ବର୍ଷ ହେଲା ଦୁହିଙ୍କ ଭିତରେ ଫଟାଫଟି ହେଲାଣି ।

ଫଟା ମୃଦଙ୍ଗକୁ ଛଡ଼ା ବାୟକ – ଦୁଇ ଅଯୋଗ୍ୟ ବ୍ୟକ୍ତି ବା ବସ୍ତୁ ମଧ୍ୟରେ ସଂଯୋଗ– incompatible union

.. ସେ ଦି'ଟାଙ୍କ ଦେହି ଶାଗ ସିଝିବନି । କଥାରେ କହନ୍ତିନି, ଫଟା ମୃଦଙ୍ଗକୁ ଛଡ଼ା ବାୟକ ।

ଫଟେଇ ହେବା – ବାରମ୍ବାର କହିବା– speak repeatedly

.. କେତେଥର ସେଇ ଗୋଟାଏ କଥାକୁ ଫଟେଇ ହଉଥିବୁ ?

ଫଟିକ ଚାନ୍ଦ – ଫୁଲ୍‌ବାବୁ– good for nothing/ top

.. ପୁଅ ଆମର ଫଟିକ ଚାନ୍ଦ । ତା' ପୋଷାକ ପତ୍ର ଦେଖୁନ ।

ଫଡ଼ ଫଡ଼ କରିବା – ବାଜେ କଥା ବକିବା, ପ୍ରଗଲଭ ହେବା– be talkative/ talking useless

.. ସଭାରେ କିଛି ନ ଜାଣି ଫଡ଼ ଫଡ଼ ହେବା ଠିକ୍ ନୁହଁ ।

ଫତେ କରିବା – ଶେଷ କରିବା, ଜୟ କରିବା– to finish/ to win

.. କାମ ଫତେ କରି ଯୁଆଡ଼େ ଯାଉଛ ଯାଅ ।

ଫତୁଆ ଜାରି କରିବା – ହୁକୁମ ଦେବା– proclaiming ordinance/ ordering

.. ସଂଧ୍ୟାରେ ପହଂଚିବା ପାଇଁ ମୌଲାନା ସାହେବ ଫତୁଆ ଜାରି କରିଛନ୍ତି ।

ଫମ୍ପା ଢୋଲ – ଅର୍ଥ ହୀନ, ମୂଲ୍ୟହୀନ– meaningless/ valueless

.. ଆରେ ସେଇଟା ଫମ୍ପା ଢୋଲ । ତା'କୁ କ'ଣ ଡରୁଛ ?

ଫମ୍ପା ମାଠିଆରେ ଶବ୍ଦ ବେଶି – କିଛି ଜାଣି ନଥିବା ବ୍ୟକ୍ତିର ଅଯଥା ବାହାଦୁରୀ– empty vessel sounds much

.. ଆରେ ବାବୁ ଯାହା କହୁଛନ୍ତି କୁହନ୍ତୁ । ଜାଣିନ, ଫମ୍ପା ମାଠିଆର ଶବ୍ଦ ବେଶି ।

ଫର ଫର ହବା – ଏକ ପ୍ରକାର ଶବ୍ଦ କରିବା/ ଦେଖେଇହବା– to give air

.. ଗୁଡ଼ିଟା ଆକାଶରେ ଫର ଫର ହେଇ ଉଡୁଛି ।

ଫରକଟା ଚାଲି – ଏକ ପ୍ରକାର ଚାଲି । – a style of walking

.. ଲୋକଟାର ଫରକଟା ଚାଲିକୁ ଦେଖ ।

ଫଳାଫଳ – ଶେଷକଥା– conclusion/ending/result

.. ଏତେ କଷ୍ଟ କଲେ, ଫଳାଫଳ କ'ଣ ହେଲା ?

ଫଳ ପାଇବା – ଦଣ୍ଡ ପାଇବା– infliction of punishment

.. ଦୁଷ୍ଟ କର୍ମର ଫଳ ସେ ପାଇଛି ।

ଫଳ ଧରିବା – ଫଳ ହେବା– bearing fruits

.. ଗଛରେ ଫଳ ଧରିବା ସମୟ ହୋଇଗଲାଣି ।

ଫଳ ଦେବା – କାମ ଦେବା– to be effective

.. ଏ ଔଷଧଟା ନିଶ୍ଚୟ ଫଳ ଦେବ ।

ଫଳ ଫଳିବା – କାର୍ଯ୍ୟକାରୀ ହେବା, ଫଳ ମିଳିବା– reap the consequence

.. ସଦାବେଳେ କର୍ମଘେନି ଫଳ ମିଳିଥାଏ ।

ଫଳିଲା ଗଛ ଫୋପଡ଼ ସହେ – ଜ୍ଞାନୀ ସବୁ ସହିଯାଏ– the more noble, more humble

.. ଯେତେ ଖରାପ କରି କହିଲେ ସେ ଉତ୍ତର ଦେଲେ ? କଥାରେ ନ ଜାଣି କହିଛି, ଫଳିଲା ଗଛ ଫୋପଡ଼ ସହେ ।

ଫଳେନ ପରିଚୟତେ– ପରିଚିତ– a tree is known by its fruits

ଫସର ଫାଟିବା – ସକାଳ ହେବା/ ବ୍ୟର୍ଥ ହେବା– to be unsuccessful/ be failure

.. ଅଫିସରଙ୍କ ବିରୁଦ୍ଧରେ ସବୁ ଚକ୍ରାନ୍ତ ଫସର ଫାଟିଗଲା ।

ଫସଲ ପାଚିଲା ବେଳ – ସୌଭାଗ୍ୟ ବା ଫଳଲାଭର ସମୟ– harvesting time/ favouring one's luck

.. ଫସଲ ପାଚିଲା ବେଳ ହେଲେ ଚାଷୀର ଆନନ୍ଦ କହିଲେ ନ ସରେ ।

ଫସଲ ଉଠାଇବା – ଫସଲ କାଟିବା, ଅମଳ କରିବା– harvesting/ reaping the crop

.. ଆଗ ଫସଲ ଉଠିଯାଉ, ତା'ପରେ ଜମି ନବ ।

ଫାଙ୍କା ଆଓ୍ୱାଜ – ମିଥ୍ୟା ଆସ୍ଫାଳନ– fraudulence/ false vanity

.. ନେତାଙ୍କ ଫାଙ୍କା ଆଓ୍ୱାଜକୁ ଶ୍ରମିକମାନେ ଭଲଭାବେ ଜାଣନ୍ତି ।

ଫାଙ୍କା ଫାଙ୍କା – ନିର୍ଜନ– lonely/ solitary/ secludedness

.. ଘର ଭିତରଟା ଫାଙ୍କା ଫାଙ୍କା ଲାଗୁଛି ।

ଫାଙ୍କ କରିବା – ତଫାତ କରିବା– to make a gap/ separate a thing

.. ଥାକ ଥାକ ଭିତରେ ଫାଙ୍କା କର, ନଇଲେ ହାତ ଗଳେଇ ହବନି ।

ଫାଙ୍କି ଦବା/ ଫାଙ୍କି ମାରିବା – ବାଦ୍ ଦେବା, ଉଡ଼େଇବା– to deceive/ exclude

.. ସବୁ କଥାରେ ତୁ ଫାଙ୍କିମାରିଲେ ଚଳି ପାରିବୁନି ।

ଫାନ୍ଦ ବସେଇବା – ଚକ୍ରାନ୍ତ କରିବା, ଜାଲ ବିଛାଇବା– playing tricks/ set a snare

.. ଅଫିସରକୁ ହଇରାଣ କରିବା ପାଇଁ ସେମାନେ ଫାନ୍ଦ ବସେଇଛନ୍ତି ।

ଫାନ୍ଦରେ ପକେଇବା – ଚକ୍ରାନ୍ତର ଶିକାର ହେବା, ଜାଲରେ ପକେଇବା– to ensnare/ to trap

ତା'କୁ ଫାନ୍ଦରେ ପକେଇବା ବାଟ ଆମକୁ ଭଲଭାବେ ଜଣା ।

ଫିକା ପଡ଼ିବା – ସରସତା ଲୋପ ପାଇବା– to be faded/ to be tasteless

.. ପରୀକ୍ଷା ଫଳ ବାହାରିବା ପରେ ତା'ମୁହଁ ଫିକା ପଡ଼ିଗଲା ।

ଫିକା ଫଗୁଣ – ରଙ୍ଗହୀନ ଫଗୁଣ– a lost spring/ a colourless joy

.. ଫିକା ଫଗୁଣ ଭଳି ତା' ବୟସର ରଙ୍ଗ ଝଡ଼ିଚାଲିଛି ।

ଫିଟ୍‌ଫାଟ୍ – ପରିଚ୍ଛନ୍ନ – being smart/ well-dressed/ furnished

.. ଚାରିଟାବେଳେ ଫିଟଫାଟ ହେଇ ବୁଲି ବାହାରିବା ତା'ଙ୍କର ଅଭ୍ୟାସ ।

ଫିଟେଇକରି କହିବା– ଗୁପ୍ତ ନରଖିବା – make a clean breast of the matter

ଫିନ୍ ଫିନ୍ – ଚିକ୍କଣ ଏବଂ ପତଳା– superfine and thin

.. ଧୋତିଟା ବେଶ୍ ଫିନ୍ ଫିନ୍ ହେଇଛି ।

ଫିସ୍ ଫିସ୍ – ଅସ୍ପଷ୍ଟ ଭାବେ କଥାବାର୍ତ୍ତା, ଗୋପନରେ କଥାବାର୍ତ୍ତା– whispering/ talking secrets

.. ପିତାମାତା କ'ଣ ଗୁଡାଏ ଫିସ୍ ଫିସ୍ ହଉଛନ୍ତି ।

ଫିମ୍ପି ମାରିଯିବା – ଗୁଣ ଲୋପ ପାଇବା– be destroyed/ loss of quality

.. ଆଳୁଚପ୍‌ସାକରେ ଫିମ୍ପି ମାରିଯାଇଛି ।

ଫିସ୍ ବାନ୍ଧିବା – ଟଙ୍କା ପଇଠ କରିବା– pay the dues

.. ବେଳହୁଁ ସ୍କୁଲର ଫିସ୍ ବାନ୍ଧିଦିଅ । ଭବିଷ୍ୟତକୁ ଅସୁବିଧା ନଥିବ ।

ଫୁକୁର ଫୁକୁର ହେବା – ନ ଜାଣି ନ ଶୁଣି ଡେଇଁବା– give one's self airs

.. ସବୁ କଥାରେ ଫୁକୁର ଫୁକୁର ହେବା ହେଲା ତା'ର ଗୋଟାଏ ନିତି ଦିନିଆ ଅଭ୍ୟାସ ।

ଫୁଟାଣି ମାରିବା – ବାହା ସ୍ଫୁଟ ମାରିବା– blowing/ to brag

.. ଫୁଟାଣି ମାରିଲେ ପେଟ ପୁରିବନି ।

ଫୁଟୁକି ମାରିବା – ଆହ୍ବାନ କରିବା– to provoke

.. ତା'କୁ ଫୁଟୁକି ମାରନା । ବେକ ମୋଡ଼ି ଦବ ।

ଫୁଟ କିରି ମାରିବା – ଅଯଥା ଭଡ଼ ଭଡ଼ ହେବା, ବାହାଦୁରୀ ମାରିବା– talk big/ boasting

.. ଜାଣିଛ ଯଦି କୁହ । ଫୁଟକିରି ମାରିବା ଛାଡ଼ ।

ଫୁଲ ବାବୁ – ସୌଖିନ ଲୋକ– luxurious

.. ସେ ଫୁଲବାବୁ । ତା'କୁ କାମ କରିବାକୁ କହୁଛ ?

ଫୁଲ ରାଣୀ – ଅତି ସଉକିନୀ– fashionable/ stylish

.. ଆ ହା.. ହା.., ଆମ ଫୁଲରାଣୀଙ୍କ ଦେହରେ ମଇଳା ଲାଗିଯିବ !

ଫୁସ ଫାସ ହେବା – ଗୋପନ କଥାବାର୍ତ୍ତା– whispering

.. ସେ ସ୍ତ୍ରୀ ଲୋକଙ୍କ ଭିତରେ ଏମିତି ଫୁସଫାସ ହୁଏ ।

ଫୁସ୍‌ଲା ଫୁସୁଲି/ ଫୁସର ଫାସର – ଗୋପନ ମନ୍ତ୍ରଣା ଦେବା, ତେଲାତେଲି– persuade by flattery/ coaxing

.. କୌଣସି ପ୍ରକାରେ ଫୁସଲା ଫୁସୁଲି କରି କାମଟା ଚଳେଇଦିଅ ।

ଫେର ଫାର୍ କରିବା – କୌଶଳ କରିବା, ମାରପେଞ୍ଚ କରିବା– playing tricks/ tactfully/ artfully

.. ସେ ଫେର ଫାର କରି କଥାଟାକୁ ଫାଙ୍କିବାକୁ ଚେଷ୍ଟା କରିବ ।

## ବ

ବଅଁଶ ମରା ଡାଉକ – ସାଂଘାତିକ– to be deadly/ dangerous person

.. ସେ ବଅଁଶ ମରା ଡାଉକ ସାଥିରେ ପଡୁଛ, ବୁଡ଼ିଯିବ !

ବକ ଧାର୍ମିକ – ଧାର୍ମିକ ଢଙ୍ଗ ଦେଖେଇବା– pretender/hypocrite

.. ଏଇ ବିଶ୍ୱାସଘାତକ ବକ ଧାର୍ମିକମାନଙ୍କ ପାଇଁ ଦେଶପ୍ରେମ ଶବ୍ଦଟା ବଦନାମ ହେଇଗଲା ।

ବକ ବକ କରିବା – ବାଜେକଥା କହିବା– talk nonsense/ prattle

.. ଆଉ ଅଧିକ କାଳ ବକ ବକ କଲେ ଏଠି କେହି ରହିବେନି ।

ବଗ ଚରା– ସଡ଼କ ପାଖର ଖାଲ –roadside ditches

ବଗ ମେଳି–race of persons by forming a line

ବଗ ବେକରେ ଢିଙ୍କି – ଦୁର୍ବଳ ଉପରେ ଅଧିକ ଦାୟିତ୍ୱ–more responsibility for a weak

.. ବଗ ବେକରେ ଢିଙ୍କି ପଡ଼ିଛି, ଯିବ କୁଆଡ଼େ ? ବୁଲି ବୁଲି ଆମରି ପାଖକୁ ଫେରିବ ।

ବଗର ବେକ ବଢ଼ିଲେ ମୀନର ବିପତ୍ତି – ଶତ୍ରୁକୁ ଅଧିକ ବଳଦେଇ ବିପଦରେ ଘାଣ୍ଟିହେବା– to cause self enemity

.. ଦୁଷ୍ଟ ଲୋକଟାକୁ ବିଚ୍ ବଜାରରେ ସମର୍ଥନ କରିବା ଠିକ୍ ହେଲାନି । ଜାଣିଛ ତ, ବଗର ବେକ ବଢ଼ିଲେ ମୀନର ବପତ୍ତି !

ବଚନ ବାଗୀଶ – କେବଳ କଥାରେ ଯେ ପଟୁ– talkative/ garrulous

.. ଖାଲି ବଚନ ବାଗୀଶ ହେଲେ ଚଳିବନି । କିଛି କାମ କରି ଦେଖାଅ ।

ବଜାରଗରମ – ଉତ୍ତେଜନା, ଚଢ଼ାଦର– high price/excitement

.. ବଜାର ଗରମ ଅଛି । ବାହରକୁ ଯାଅନି ।

ବଜାର ମାତ୍ କରିବା – ହଇଚଇ ସୃଷ୍ଟି କରିବା– exciting/ create confusion

.. ବଜାର ମାତ୍ କରିବା ପାଇଁ ଏଭଳି କାଣ୍ଡ କରାଯାଇଛି ।

ବଜାର ଚଢ଼ିଯିବା – ଦର ବଢ଼ିବା– rise of prices

.. ଆଜିକି ସପ୍ତାହେ ହେଲା ବଜାର ଚଢ଼ିଯାଇଛି ।

ବଜାର ସରଗରମ – ବହୁଚର୍ଚ୍ଚିତ, ଉଠିବା ପଡ଼ିବା– creating sensation/ to be excited

.. ନବି ଫିଲମ ନେଇ ଏଇନେ ବଜାର ସରଗରମ ।

ବଜାର ମାନ୍ଦା – ବ୍ୟବସାୟ ଭଲ ନ ହେବା– dull market

.. ଏଇନେ ବଜାର ମାନ୍ଦା । ସିରିଏଲ୍‌ରୁ ଲାଭ ଆସୁନି ।

ବଜାର ପଡ଼ିଯିବା – ଦର କମିବା– price decrease

.. ଏପ୍ରିଲ୍ ମାସରେ ବଜାର ପଡ଼ିଯାଏ । କାହିଁକି ମାଲ ଛାଡ଼ିବ ?

ବଡ଼କଥା – ଅସଲ କଥା, ବଡ଼ିମା– actual fact/ bragging/ boasting

.. ଛୋଟ ମୁହଁରେ ବଡ଼କଥା ଶୋଭାପାଏନା । ଆପଣ କେତେ ନିଷ୍କଳଙ୍କ, ସେଟା ବଡ଼କଥା ।

ବଡ଼ କରିବା – ପାଳନ କରିବା, ଅତିରଂଜିତ କରିବା– exaggerating/ nourishing

.. କେତେ କଷ୍ଟରେ ପିଲାଟାକୁ ତା' ମା' ବଡ଼କରିଛି ।

ବଡ଼ ମଣିଷ – ଧନୀ, ମହାପୁରୁଷ– rich/ greatman/ superman

.. ବଡ଼ ମଣିଷଙ୍କ ଜୀବନୀରୁ କିଛି ଶିଖି ପାରିଲନି ?

ବଡ଼ ହେବା – ବଡ଼ ମଣିଷ ହେବା, ପ୍ରତିଷ୍ଠିତ ହେବା– to be a great man/ to be established

.. ସେ ନିଶ୍ଚୟ ଦିନେ ବଡ଼ ହେବ ।

ବଢ଼େଇ ଚୁଢ଼େଇ କହିବା – କଥାରେ ନଥା ଯୋଡ଼ି କହିବା– exaggerating too much

.. ତା' ସାବତ ମା'ର ଅଭ୍ୟାସ ହଉଛି ପ୍ରତି କଥାକୁ ବଢ଼େଇ ଚୁଢ଼େଇ କରି କହିବା ।

ବଣ ବିଛୁଆତି – ଅତି ଦୁଷ୍ଟ– very stupid/ naúghty

.. ସେଇଟା ତ ବଣ ବିଛୁଆତି । କାହିଁକି ତା' ସାଙ୍ଗରେ ଲାଗିଛ ?

ବନେଇ ଚୁନେଇ କହିବା – ଟିକି ନିଖି କହିବା– speak minutely/precisely

.. କଥାଟା ବଡ଼, ହେଲେ ସେ ଯେମିତି ବନେଇ ଚୁନେଇ କହିଲେ ସମସ୍ତେ ବୁଝିଗଲେ ।

ବନ୍ଧ ଭାଂଗିବା – ଅଙ୍ଗ ଭଙ୍ଗୀ ଦ୍ୱାରା ଭାବ ପ୍ରକାଶ କରିବା– acting through postures

.. ଓଡ଼ିଶୀ ନାଚରେ ଯେମିତି ବନ୍ଧ ଭାଂଗାଯାଏ, ସେମିତି ଅନ୍ୟ କୌଣସି ନାଚରେ ନାହିଁ ।

ବନ୍ଧୁ ବାନ୍ଧବ – ବନ୍ଧୁତା ସ୍ଥାପନ କରିବା, ସଂପର୍କ ଯୋଡ଼ିବା– to establish friendship

.. କେଇଟା ଦିନ ପାଇଁ ତା'ସାଥିରେ ବନ୍ଧୁ ବାନ୍ଧୁଛ ? ସବୁକଥା ତା'କୁ ଜଣେଇବା ଭଲ ।

ବର୍ଷାକୁ ଛତା ଧରିବା – ସୁବଧା ଦେଖି କାମ କରିବା– to grab the opportunity

.. ଯୁଆଡ଼େ ପୁଳାଏ ମଳିବ, ସେ ସିଆଡ଼କୁ ଢଳିବେ । ତା'ଙ୍କର ଏ ବର୍ଷାକୁ ଛତା ଧରିବାଟା କ'ଣ ନୂଆ କରି ଦେଖୁଛ ?

ବଳ ଭାଙ୍ଗିବା – ବଳ ଚାଲିଯିବା– loss of energy

.. ବୁଢ଼ାର ବଳ ଭାଂଗିଗଲାଣି । କେତେ ଆଉ ପିଲାଙ୍କର କରିଥାନ୍ତା !

ବୟସ ହେବା – ପ୍ରବୀଣ ହେବା, ପରିଣତ ବୟସ ହେବା– attaining an advanced stage

.. ବୟସ ହେଇଗଲା, ଚାକିରୀରୁ ଅବସର ନେଲା ।

ବସନ୍ତର କୋକିଳ – ସୁମୟର ବଂଧୁ– friend in need

.. ଖାଲି ବସନ୍ତର କୋକିଳ ହେଲେ ଚଳିବନି, ସବୁ ସମୟକୁ ସମ୍ମାନ ଦିଅ ।

ବସିବାଠାରୁ ଉଠି ଆସିବା – ଅତି ଶୀଘ୍ର ଚାଲି ଆସିବା– to set out instantineously

.. ବସିବାଠାରୁ ଉଠି ଆସ, ନହେଲେ କାହିଁକି ଖବର ଦେଇଥାନ୍ତି ?

ବସିଯିବା – ଚେଲ ବସିବା, ଘା'ବସିବା– to be frozen

.. ଥଣ୍ଡା ଯୋଗୁ ନଡ଼ିଆ ତେଲ ବସି ଯାଇଛି ।

ବସି ରହିବା – ଅପେକ୍ଷା କରିବା, ବେକାର ବସିବା– waiting for/ being unemployed

.. ଲୋକଟା ତା'ଙ୍କ ପଥ ଚାହିଁ ବସିରହିଛି ।

ବସି ପଡ଼ିବା – ହତାଶ ହେବା– be harassed

.. ବହୁତ କ୍ଷତି ହେବାରୁ ସେ ବ୍ୟବସାୟ ବନ୍ଦ କରି ବସି ପଡ଼ିଲେ ।

ବାଁ ଡାହାଣ କରିବା – ଏପଟ ସେପଟ କରିବା– to deal underhand

.. ଯେତିକି ରୋଜଗାର କରିଛି, ସବୁ ବାଁ ଡାହାଣ କରି ।

ବାଁ ହାତି ରୋଜଗାର – ଘୁସ୍– bribe/ black money

.. ବାଁ ହାତି ରୋଜଗାର ତା'ର ମାସକୁ ଦଶହଜାର ଟଙ୍କା ହୋଇଯାଏ ।

ବାଁ ହାତର ଖେଳ – ସହଜସାଧ– very easier

.. ତା'କୁ ପଟେଇବା ମୋ ବାଁ ହାତର ଖେଳ ।

ବାଗକୁ ଆସିବା – ନିୟନ୍ତ୍ରଣକୁ ଆସିବା– to come under control

.. ଟୋକାଟା ଏବେ ବାଗକୁ ଆସିଛି ।

ବାଗ ପାଇବା – କୌଶଳ ଜାଣିବା– knowing tricks/ formulas

.. ସେ ଏ କାମ କରିବାର ବାଗ ପାଇଗଲାଣି ।

ବାଗକୁ ଆଣିବା – ସୁଶୃଙ୍ଖଳ କରିବା– to be disciplined

.. ଦୁଷ୍ଟ ପିଲାଟାକୁ ବାଗକୁ ଆଣିବା ସହଜ ନୁହେଁ ।

ବାଘ ଘରେ ମିରିଗ ନାଟ – ସୀମାତିକ୍ରମ କରିବାର ଦୁଃସାହସ– when cat is away mice will play

.. ଘରେ ମାଲିକ ନାହିଁ ବୋଲି କାହାକୁ ମାନିବନି ? ଆରେ ବାଘ ଘରେ ମିରିଗ ନାଟ ଚାଲିଛି ?

ବାଘ ଛେଳି ଗୋଟିଏ ଘାଟରେ ପାଣି ପିଇବା – କଡ଼ା ଶାସନ– to bringing a tight compromise

.. ଇଂରେଜ ଅମଳରେ ବାଘ ଛେଳି ଗୋଟିଏ ଘାଟରେ ପାଣି ପିଉଥିଲେ । ସେ ଶାସନକୁ ମାନିବାକୁ ପଡ଼ିବ ।

ବାଘ ଦୁଧ – ଦୁର୍ଲଭ ପଦାର୍ଥ– rare thing/ wealth makes every impossible to possible

.. ହାତରେ ଟଙ୍କା ଥିଲେ ବାଘ ଦୁଧ ବି ମିଳିବ ।

ବାଘ ଆହାର – ଭୁରି ଭୋଜନ– hearty meal

.. ଆରେ ଯାଅ, ସେ ଦେଲାବାଇା ପାର୍ଟି । ବାଘ ଆହାର ମିଳିବ ।

ବାଘ ଛୁଆକୁ ପୁଆଳ ଜଙ୍କା – ସବଳକୁ ପ୍ରତିରୋଧ କରିବାର ବୃଥା ପ୍ରୟାସ– furtile attempt to encounter the strong

.. ନିଜର ତ ଶକ୍ତି ନାହିଁ । ବାଘ ଛୁଆକୁ ପୁଆଳ ଡାଙ୍କି କେତେଦିନ ଚଳେଇବ ?

ବାଘ ମୁହଁରୁ ଆହାର ଛଡ଼ାଇ ଆଣିବା – ସବଳ ଉପରେ ଦୁର୍ବଳର ସବାର ହେବା– domination of the weaker over the strong

.. ତା' ଘରେ ନିଆଁ ଲଗେଇ ଭାବିଛ ପିଲାଟାକୁ ନେଇ ଆସିବ ? ବାଘ ମହଁରୁ ଆହାର ଛଡ଼ାଇ ଆଣିବା ଏତେଟା ସହଜ ନୁହେଁ ।

ବାଘ ଛାଲ କୁକୁର ନେବା – କପଟ କରି ଦୁର୍ବଳ ବଳୁଆକୁ ହରେଇବା– to manipulate a victory over the stong

.. ବାଘ ଛାଲ କୁକୁର ଦେଇ ଏଥରଟା ଦିନା ହରେଇଦେଲ ହେଲେ ସବୁଦିନ ନୁହେଁ ।

ବାଜି ମାତ୍ କରିବା – ପୁରପୁରି ସଫଳ ହେବା– be successful/ become fruitful

.. ଏତେ ସହଜରେ ଭାବିଛି ବାଜି ମାତ୍ କରିବ ଜିତିଗଲ ବୋଲି ?

ବାଟ କାଟିବା – ଖସିଯିବା, ନିଜ ରାସ୍ତା ଧରିବା– to make good one's escape

.. କାମ କରିବାକୁ ପଡ଼ିବାରୁ ସମସ୍ତେ ନିଜ ନିଜ ବାଟ କାଟିଲେ ।

ବାଟ ଛାଡ଼ିଦେବା – ଅନ୍ୟକୁ ସୁଯୋଗ ଦେବା– to afford opportunity

.. ଜ୍ଞାନୀ ଗୁଣୀ ଲୋକ ଜାଣି ଶୁଣି ଦୁର୍ବଳଙ୍କୁ ବାଟ ଛାଡ଼ି ଦେଇଥାଏ ।

ବାଟ ଦେଖେଇବା – ଜ୍ଞାନ ଦେବା, ଅବଗତ କରାଇବା– enlightening

.. ଏ ବିଷୟରେ ସେ ଆମକୁ ପ୍ରଥମେ ବାଟ ଦେଖାଇଲେ ।

ବାଟେଇ ଦେବା – ସୁବିଧା କରିଦେବା, ସାଙ୍ଗରେ ଯିବା– to see off

.. ବରଯାତ୍ରୀଙ୍କୁ କିଛି ଦୂର ବାଟେଇ ଦେଇ ଆସ ।

ବାଟ ଭାଙ୍ଗିବା – ଫେରିଯିବା– to back track

.. କିଛି ମାଲପାଣି ପାଇଯିବାରୁ ସାକ୍ଷୀମାନେ ଆପେ ବାଟ ଭାଂଗିଲେ ।

ବାଡ଼ ଦେବା – ରୋକିବା– to prevent/ to deter

.. ଯାହା କହୁଛନ୍ତି କୁହନ୍ତୁ । ସେମାନଙ୍କ ପାଟିରେ କିଏ ବାଡ଼ଦେବ ?

ବାଡ଼ି ଧରିବା – ହଇଜାରେ ଆକ୍ରାନ୍ତ ହେବା– being attacked of Cholera

.. ଗାଁରେ ଶହଜଣଙ୍କୁ ବାଡ଼ି ଧରିଛି ।

ବାଣ ମାରିବା – ତନ୍ତ୍ର କରିବା– applying black magic

.. ତା'କୁ କେହି ବାଣ ମାରିଛି, କିଛି ଔଷଧ କାଟୁ କରୁନି ।

ବାନର ଗଳାରେ ମୁକ୍ତାମାଳ – ଜିନିଷର ମୂଲ୍ୟ ନ ବୁଝିବା– laurels to a pig

.. ସେ ଯଦି ମାନ ସମ୍ମାନ କଥା ଜାଣିଥାନ୍ତା, ତେବେ ବାନର କଣ୍ଠରେ ଏ ମୁକ୍ତାମାଳକୁ ଦେଇ ନଥାନ୍ତା ।

ବାପ ରାଣ ଡିଙ୍କିଗିଳି – ଜୋର ଜବରଦସ୍ତି କରିବା– by hook or crook/ by compulson

.. ଏ କାମ ତାଙ୍କ ପୁଅ ଦ୍ୱାରା ହବନି । ବାପରାଣ ଡିଙ୍କିଗିଳି କହିଲେ କ'ଣ ହୋଇଯିବ ?

ବାପ ନାଁ ମନେ ପକାଇବା – ବଦନାମ ହେବା– having bad reputation/ be discredited

.. ସେ ଯେଉଁ କାମଟି କରିଚି, ସେଥିରେ ବାପର ନାଁ ନିଶ୍ଚୟ ପଡ଼ିବ ।

ବାପା ବା'ଘର ମନେ ପକାଇବା – ଅକଥନୀୟ ଯନ୍ତ୍ରଣା ପାଇବା– feeling acute pain-

.. ଚୋରଟା ଏମିତି ଛେଚା ଖାଇଛି, ଘରକୁ ଯାଇ ବାପା ବା'ଘର ମନେ ପକାଉଥିବ ।

ବାପର ପୁଅ – ସାହସୀ– brave/capable

.. ସେ ବାପର ପୁଅଟି, ଏ କାମକୁ ପାରିବନି ?

ବାପ ବସିଥାଉଁ ଥାଉଁ ପୁଅ ଚାଲିଯିବା –ବାପର ଜୀବିତାବସ୍ଥାରେ ପୁଅର ମୃତ୍ୟୁ– the demise of the son when the father is alive

.. ବିଧାତା ସହିଲାନି । ବାପ ବସିଥାଉଁ ଥାଉଁ ପୁଅ ଚାଲିଗଲା ।

ବାବୁଗିରି କରିବା – ବିଳାସ କରିବା, କାମ ନ କରି ବସିବା– leading a luxurious life/sitting idle

.. ଏ ବାବୁଗିରି କରିବାଟା ଛାଡ଼ି, ପରିଶ୍ରମ କର । ନଇଲେ ଖାଇବାକୁ ମିଳିବନି ।

ବାମନ ହେଇ ଚନ୍ଦ୍ରକୁ ହାତ ବଢ଼ାଇବା –ଅସମ୍ଭବ ବସ୍ତୁ ପାଇବାର ଚେଷ୍ଟା , କ୍ଷୁଦ୍ରର ବିରାଟ ସ୍ୱପ୍ନ– trying for a rare object/ to hope for the unreachable

.. ସେ ତମ ଲାଖି ନୁହଁ । ବାମନ ହେଇ ଚନ୍ଦ୍ରକୁ ହାତ ବଢ଼ଉଛ କାହିଁକି ?

ବାର ଦ୍ୱାର ଶୁଣ୍ଢୀପିଣ୍ଡା ହେବା – ହଇରାଣ ହରକତ ହେବା– to be harassed

.. ଅଭିମାନରେ ସ୍ତ୍ରୀ ପିଲାଙ୍କୁ ଧରି ଘରୁ ଚାଲିଆସିଲେ । ହେଲେ ବାରଦ୍ୱାର ଶୁଣ୍ଢୀପିଣ୍ଡା ହେଇ ମନ ବୁଝିଗଲାଣି ।

ବାର ମାସେ ତେର ପର୍ବ – ସାରା ବର୍ଷ ଉତ୍ସବ – festivals through out the year

.. ଓଡ଼ିଆ ଜାତି ବାରମାସରେ ତେର ପର୍ବ ପାଳିଥାଏ ।

ବାରବର୍ଷର ଗୋଇ – ପୁରୁଣା ଗୁପ୍ତକଥା– to dig out the buried secrets

:. ବାରବର୍ଷର ଗୋଇ ଖୋଳିବାଟା ଉଚିତ ନୁହଁ ।

ବାର ଭାଇଆ ଆଖଡ଼ା – ଏକତାର ଅଭାବ– too much cooks spoil the broth

.. ସେଠି ତ ବାରଭାଇଆ ଆଖଡ଼ା ଚାଲିଛି । କେମିତି ନିଷ୍ପତ୍ତି ନିଆଯିବ ?

ବାର ବରଷର ତପ ଶୁଖୁଆ ପୋଡ଼ାରେ ଯିବା – ସାମାନ୍ୟ ଦୁଷ୍କର୍ମ ପାଇଁ ସବୁ ସୁକର୍ମ ନଷ୍ଟ ହେବା– to suffer from moral bankrupcy for a small error

ଏଡ଼େ ବଡ଼ ନେତାଙ୍କର ଏମିତି ଅନୀତି କାମ ! ବାରବରଷର ତପ ତାଙ୍କର ଏଇ ଛୋଟିଆ ଭୁଲ୍ ପାଇଁ ଶୁଖୁଆ ପୋଡ଼ାରେ ଗଲା ।

ବାର ହାତ ବାଉଁଶ କୋଡ଼ି ବେଣ୍ଟହେବା – ଦୁର୍ବଳ ହୋଇପଡ଼ିବା– to be emaciated

.. କି ରୋଗ ଧରିଲା ଯେ, ବାରହାତ ବାଉଁଶ ଭଳିଆ ମଣିଷଟା ଆସି କୋଡ଼ିବେଣ୍ଟ ହେଲାଣି !

ବାର ଆଡ଼େ ପାଇଟି କରି ଚଳିବା – ପରିଶ୍ରମ କରି ଗୁଜୁରାଣ ମେଣ୍ଟାଇବା– to sustain by one's own sweat

.. ସେ ବାରଆଡ଼େ ପାଇଟି କରି କୌଣସି ମତେ ଚଳିଯାଉଛି ।

ବାଳବଙ୍କା କରି ନ ପାରିବା – ସାମାନ୍ୟ କ୍ଷତି କରି ନ ପାରିବା– unable to split a hair

.. କାହିଁକି ଏତେ ଭିଡ଼ି ମୋଡ଼ି ହଉଛ ? ତା'ର ତ ବାଳ ବଙ୍କା କରି ପାରିବନି ।

ବାହା ବାହା କରିବା – ପ୍ରଶଂସା କରିବା– showering accolades

.. ସେ ଯେମିତି ଖେଳିଲା, ସମସ୍ତେ ବାହା ବାହା କରିବା କଥା ।

ବାହାଘର ବେଳେ ବାଇଗଣରୁଆ – ଶେଷ ମୁହୂର୍ତ୍ତରେ ଯୋଗାଡ଼ କରିବା– to show seeds at the time of harvest

.. ଏତେଦିନଯାଏ ନିଶ୍ଚିନ୍ତରେ ଶୋଇଥିଲ । ଆଗରୁ ଯୋଗାଡ଼ ନକରି ବାହାଘରବେଳେ ବାଇଗଣ ରୋଇଲେ ହଟହଟା ହବ ।

ବାଲିବନ୍ଧ – କ୍ଷଣସ୍ଥାୟୀ – transitory

.. ତା'ଉପରେ ଭରସା କରନି । ତା' କଥାଗୁଡ଼ାକ ବାଲିବନ୍ଧ ଭଳିଆ ।

ବିଗିଡ଼ି ଯିବା – ଖରାପ ହେବା, କୁପଥଗାମୀ ହେବା– to be out of order/to go astray

.. ଗାଡ଼ିଟା ବିଗିଡ଼ି ଯାଇଛି / ବାଜେ ପିଲାଙ୍କ ସାଙ୍ଗରେ ମିଶି ପୁଅଟା ବିଗିଡ଼ିଗଲାଣି ।

ବିଛଣା ଧରିବା – ରୋଗରେ ଉଠି ନ ପାରିବା, ଘାଣ୍ଟି ହେବା– to be bedridden

.. ସେ ବିଛଣା ଧରିଲେଣି । ବଂଚିବା ଆଶା କମ୍ ।

ବିଛୁଆତି ବାଇଡ଼ଙ୍କ – ଦୁହେଁ ଏକାକାର– birds of same feather

.. ଦିହେଁ ତ ବିଛୁଆତିକି ବାଇଡ଼ଙ୍କ । କେହି କାହାକୁ ଊଣା ନୁହନ୍ତି ।

ବିଛୁଆତି ଦୁଇପତ୍ରରୁ କୁଣ୍ଡାଇହେବା – ପ୍ରଥମରୁ ଦୁଷ୍ଟ– very stupid/born-arrogant

.. ତା'ଗୁଣଗ୍ରାମ ଜଣାପଡ଼ିଗଲାଣି । ବିଛୁଆତି ଦୁଇପତ୍ରରୁ କୁଣ୍ଡାଇ ହବନି ତ କ'ଣ କରିବ ?

ବିନା ମେଘେ ବଜ୍ରପାତ – ଅପ୍ରତ୍ୟାଶିତ ବିପଦ– catastrophe/unexpected calamity

.. ବିନାମେଘେ ବଜ୍ରପାତ ହେଲଭଳି ସନ୍ତ୍ରାସବାଦୀଟା ଘରେ ପଶି ସମସ୍ତଙ୍କୁ ମାରିପକାଇଲା ।

ବିନାଶକାଳେ ବିପରୀତ ବୁଦ୍ଧି – ବୁଦ୍ଧି ହଜିଯିବା, ଧ୍ୱଂସ ମୁଖକୁ ଟାଣି ହୋଇଯିବା– loss of understanding/digging one's own grave

.. ଜୁଆ ଖେଳରେ ସବୁ ସଂପତ୍ତି ଗଲାଣି । ବିନାଶ କାଳେ ବିପରୀତ ବୁଦ୍ଧି । କହିବା କାହାକୁ ?

ବିନ୍ଦୁ ବିସର୍ଗ ବୁଝି ନ ପାରିବା – କିଛି ନ ବୁଝିବା– not to be able to make any sense

.. ସେ କ'ଣ କହିଲେ ସେଥିରୁ ମୁଁ ବିନ୍ଦୁ ବିସର୍ଗ ବୁଝିପାରିଲି ନାହିଁ ।

ବିପଦ ଡାକି ଆଣିବା – ନିଜ ଭୁଲ ଯୋଗୁ ବିପଦରେ ପଡ଼ିବା– inviting one's own ruin

.. ତା'ଙ୍କ ସାନପୁଅ ନିଜେ ଏ ବିପଦ ଡାକି ଆଣିଛି ଘର ଉପରକୁ । ଏକଥା ସେ କାହାକୁ ବା କହିବେ !

ବିରାଡ଼ି ଛିଙ୍କିବା – ଅଶୁଭ ସଂକେତ– bad omen

.. ସେ ଫେରି ଆସିବେନି, ଗଲାବେଳେ ବିରାଡ଼ି ଛିଙ୍କିଥିଲା !

ବିରାଡ଼ି ବୈଷ୍ଣବ – ଠକ ଧାର୍ମିକ– hypocrite

.. ସେଇଟା ଗୋଟାଏ ବିରାଡ଼ି ବୈଷ୍ଣବ । ସିଏ କ'ଣ ତମକୁ ଧର୍ମ ଉପଦେଶ ଦବ ?

ବିରାଡ଼ି ଆଖିବୁଜି ଦୁଧ ପିଇବା – ଦୋଷ କରି ଖସିବା – to act clandestinely

.. ସେ ଭାବିଥିଲା ଚୁପ୍‌ଚାପ୍ ଚୋରି କରି ନେଇ ଚାଲିଯିବ । କେହି ଜାଣି ପାରିବେ ନାହିଁ । ହେଲେ ଠିକଣାବେଳେ ଧରାପଡ଼ିଗଲା । ବିରାଡ଼ି ଭଳି ଆଖିବୁଜି ଦୁଧ ପିଇଲେ ଏମିତି ହୁଏ ।

ବିରାଡ଼ିକୁ ହାତ କାମୁଡ଼ା ଶିଖାଇବା – ଆଶ୍ରିତ ଲୋକକୁ ମୁହଁଦେବା– to pass a camel instead of a nail

.. କାହିଁକି ଚାକରଟାକୁ ଏତେ ସ୍ୱାଧୀନତା ଦଉଛ ? ବିରାଡ଼ିକୁ ହାତକାମୁଡା ଶିଖଉଥାଅ, ଫଳପାଇବ ।

ବିରୁଡ଼ି ବସାରେ ହତା ମାରିବା – ବିପଦର ସମ୍ମୁଖିନ ହେବା– inviting a calamity

.. ମନ୍ତ୍ରୀଙ୍କ ସଙ୍ଗରେ ତୁ କଳି କରିନୁ ଯେ ବିରୁଡ଼ି ବସାରେ ହାତ ମାରିଛୁ ।

ବିଷଦାନ୍ତ ଝାଡ଼ିବା – ଶକ୍ତିହୀନ କରିବା– to clip the fangs

.. ଡକାୟତଟାର ବିଷଦାନ୍ତ ଝାଡ଼ି ଦେବା ଦରକାର ।

ବିଷ ନଜର / ବିଷ ଦୃଷ୍ଟି – ଖରାପ ନଜର, ବିରାଗ– evil look

.. ବାବୁଙ୍କ ବିଷ ନଜରରୁ କେହି ବର୍ତ୍ତିଲାଣି ନା' ବର୍ତ୍ତିବ ?

ବୁକୁ ଉଠିବା ପଡ଼ିବା – ଆନନ୍ଦରେ ଗଦ୍ ଗଦ୍ ହେବା/ ଭୟରେ କଂପିବା– bewildered/ trembling with fear

.. ପରୀକ୍ଷାରେ ପାଶ୍ ଖବର ପାଇଁ ତା'ଙ୍କ ବୁକୁ ଏଇନେ ଉଠୁଛି ପଡୁଛି ।

ବୁକୁଚାବୁଆ – ଖାସ୍‌ଲୋକ, ଚେଲିଆ– sycophant

.. ସେ ତ ମନ୍ତ୍ରୀଙ୍କ ବୁକୁଚାବୁଆ । ତା'କୁ କାହିଁକି ସରକାରୀ ବିରୋଧୀ କଥା ଜଣାଉଛ ?

ବୁକୁ ଫୁଲି ଉଠିବା – ଆନନ୍ଦରେ ଅଧୀର ହେବା, ଉତ୍ସାହିତ ହେବା– overwhelmed with joy/ be encouraged

.. ଆଇ.ଏ.ଏସ୍. ପାଇବା ଖବର ଶୁଣି ତା'ଙ୍କ ବୁକୁ ଫୁଲି ଉଠିଛି ।

ବୁକୁରୁ ଦୂରେଇଦବା – ପାଖ ମଡ଼େଇ ନଦେବା, ତ୍ୟାଗ କରିବା– to keep someone away

.. ସେ ଯେମିତି କଲେ ଯେ କୌଣସି ଲୋକ ତା'ଙ୍କୁ ବୁକୁରୁ ଦୂରେଇ ଦବ ।

ବୁକୁ ଫାଟିଯିବା – ଦୁଃଖରେ ମ୍ରିୟମାଣ ହେବା– to suffer from intense depression

.. ପୁଅର ମୃତ୍ୟୁଖବର ତା'ଙ୍କ ବୁକୁ ଫଟାଇ ଦେଇଥିଲା ।

ବୁକୁରୁ ରକ୍ତ ନିଗାଡ଼ି ଦେବା – ସବୁ ଶକ୍ତି ଖଟାଇବା, ପ୍ରାଣପଣେ– to leave no stone-unturned

.. ବୁକୁରୁ ରକ୍ତ ନିଗାଡ଼ି ଦେଇ ସେ ତା'କୁ ପାଠ ପଢ଼ାଇଛନ୍ତି ।

ବୁକୁର ରକ୍ତ ହେମାଳ ହେବା – ଅତି ଭୟ ପାଇବା– be frightened/ horrification

.. ଆଖିସାମନାରେ ଯେମିତି ଲୋକଟାକୁ ମାରି ପକେଇଲା, ଦେଖିଥିଲେ କାହା ବୁକୁର ରକ୍ତ ହେମାଳ ହେଇ ନ ଥାନ୍ତା !

ବୁକୁରେ ହାତ ରଖିବା – ବିବେକ ମୁତାବକ ସତ୍ୟପାଠ– to swear to one's conscience

.. ବୁକୁରେ ହାତ ଦେଇ କହିଲ, ତମେ ଟଙ୍କା ହଡ଼ପ କରିନାହଁ ?

ବୁଝି ଶୁଝି ଆଗେଇବା – ସତର୍କତା ସହ ଯିବା, ଦେଖିଚାହିଁ ଯିବା– move cautiously

.. ସହର ବଜାରରେ ବୁଝିଶୁଝି ନ ଆଗେଇଲେ ପ୍ରାଣଟି ଚାଲିଯିବ ।

ବୁଝିବାକୁ ଖମ୍ବଆଳୁ – ଭୁଲ୍ ବୁଝିବା– zero degree understanding

.. ସେ ଘଣ୍ଟାଏ ବକର ବକର ହେଲା, ହେଲେ ପିଲାଟା ବୁଝିଲା ଖମ୍ବଆଳୁ ।

ବୁଡ଼ାମରା ରତା – ଭିତରେ ଭିତରେ କ୍ଷତି କରୁଥିବା ଲୋକ– to cause a destruction in a clandestine way

.. ସେ ପକ୍କା ବୁଡ଼ାମରା ରତା ଅଛି, ସହଜେ ଧରା ପଡ଼ିବନି ।

ବୁଡ଼ିଗଲା ଗୋଡ଼ ତଳକୁ ତଳକୁ – ଗୋଟାଏ ଭୁଲ୍‌ରୁ ଅନେକ ଭୁଲ୍ କରିବା– one error leading to another

.. ଚୋରି ପରେ ମଣିଷ ମାରିବାଟା ଠିକ୍ ହେଲାନି । ବୁଡ଼ିଗଲା ଗୋଡ଼ ତଳକୁ ତଳକୁ ।

ବୁଦ୍ଧି ବଣାହେବା – ଚିନ୍ତାଶକ୍ତି ଲୋପପାଇବା– losing one's sense

.. ପୁଅର ମୃତ୍ୟୁ ସାଙ୍ଗକୁ ସ୍ତ୍ରୀର ବିଛଣା ଧରିବା, ଯେ କୌଣସି ଲୋକର ବୁଦ୍ଧିବଣା ହୋଇଯିବ !

ବୁଦ୍ଧିର ଦୌଡ଼ – ଚିନ୍ତାଶକ୍ତି– mental ability

.. ତା'ର ବୁଦ୍ଧିର ଦୌଡ଼ କେତେ, ତା'ହା ସମସ୍ତେ ଜାଣନ୍ତି ।

ବୁଦ୍ଧି ଭଦ୍ରଖ ଯିବା – ବୁଦ୍ଧି ଲୋପ ପାଇବା– to be dumbfounded/to lose one's sense

.. ସିଏ ଆଉ କ'ଣ କହିବ ? ତା'ବୁଦ୍ଧି ଭଦ୍ରଖ ଧରିଗଲାଣି ।

ବେଙ୍ଗ ପାଟିରେ ଘିଅ ମିଳାଇବା – ପ୍ରଘଟ କରିବା, ଅପାତ୍ରରେ ଦାନ– incapable of

maintaining the secrecy

.. ତା'ଙ୍କୁ କିଛି କୁହନି, ସମସ୍ତଙ୍କୁ କହିଦବ। ବେଙ୍ଗ ପାଟିରେ ଘିଅ ମିଳାଇଲାଣି ନା' ମିଳେଇବ ?

ବେଡ଼ି ଉପରେ କୋରଡ଼ା – ଦୁଃଖ ଉପରେ ଦୁଃଖ ପଡ଼ିବା– one suffering piling over the other

.. ସରକାରଙ୍କ ବୃତ୍ତିଗତ କର, ଗରିବ ଲୋକଙ୍କ ପାଇଁ ବେଡ଼ି ଉପେର କୋରଡ଼ା ଭଳି।

ବେଡ଼ିଙ୍ଗ ବାନ୍ଧିବା – ବାଟ କାଟିବା – preparing for one's own grave

.. ସେ ବେଡ଼ିଙ୍ଗ ବାନ୍ଧି ସାରିଲେଣି, ଆଉ ତା'ଙ୍କୁ ଅଟକାଇବା ସମ୍ଭବ ନୁହେଁ।

ବେତ ବସିବା – ବେତ ମାଡ଼ ବସିବା– needs lashingly with cane

.. ଦି'ପାହାର ବେତ ବସିଗଲେ ସେ ଠିକ୍ ବାଟକୁ ଆସିଯିବ।

ବେଦର ଗାର – ନିର୍ଭୁଲ ନିଷ୍ପତ୍ତି, ଅଲଂଘନୀୟ– final decision/unavoidable

.. ତା'ଙ୍କ ନିଷ୍ପତ୍ତି ବେଦର ଗାର, ସମସ୍ତେ ମାନିବାକୁ ବାଧ୍ୟ।

ବେଳ ହେଇଯିବା – ଶେଷ ସମୟ ଉପସ୍ଥିତ ହେବା– attaining at the eleventh hour

.. ବୁଢ଼ାର ବେଳ ହେଇଗଲାଣି, ଖସିଯିବ।

ବେଶି ଲୋକରେ ମୂଷା ମରେନା – ସଂଖ୍ୟା ବଢ଼ିଲେ କାମ ହୁଏନା– too many cooks spoil the broth

.. ତାକୁ ବୁଝାଇବାକୁ ଏତେ ଲୋକ କ'ଣ ଦରକାର ? ବେଶି ଲୋକରେ ମୂଷା ମରିବନି।

ବେଲ ପାଚିଲେ କାଉର କି ଯାଏ – ଦୁର୍ଲଭ ବସ୍ତୁକୁ ଆଶା ନ କରିବା ଭଲ– not to aspire a rare thing/grapes are sour

.. ସରକାରଙ୍କ ଆୟ ବଢ଼ିଲେ ଗରିବର କି ଲାଭ ? କଥାରେ କହନ୍ତିନି, ବେଲ ପାଚିଲେ କାଉର କି ଯାଏ।

ବୋଝ ମୁଣ୍ଡେଇବା – ଦାୟିତ୍ୱ ନେବା– shouldering responsibility

.. ନିଜ ସାଙ୍ଗକୁ ପୁଣି ଭାଇର ପିଲାଙ୍କର ଦାୟିତ୍ୱ ! ଏତେ ବଡ଼ ବୋଝ ମୁଣ୍ଡେଇବା କ'ଣ, ସହଜ ?

ବୋଝ ଉପରେ ନଳିତା ବିଡ଼ା – କଷ୍ଟ ଉପରେ କଷ୍ଟ– last straw on camel's back

.. ଏକେ ତ ଘରେ ଖାଇବାକୁ ନାହିଁ ସେଥିରେ ପୁଣି ଏତେଗୁଡ଼ାଏ ଛୁଆଗୁଡ଼ାଙ୍କୁ ପାଳିବା ବୋଝ ଉପେର ନଳିତା ବିଡ଼ା ଭଳି।

ବୋଧଶୋଧ – ବୁଦ୍ଧି ଶୁଦ୍ଧି– dawning of wisdom

.. କେବେ ତମର ବୋଧଶୋଧ ହେବ ? ସଂସାର ଚଳେଇବ !

ବୋପାରାଣ ଢିଙ୍କିଗିଳ – ଜୋର ଜବରଦସ୍ତ କରିବା– to work with compulsion

.. ମୋ ଦେହି ଏ କାମ ହୋଇପାରିବନି । ବୋପାରାଣ ଢିଙ୍କିଗିଳ ହେଲେ କ'ଣ ହେବ ?

ବୋଲଚାଲ – ବାହାପିଆ ଗୁଣ, ଚାଲିଚଳନ, କଥାବାର୍ତ୍ତା– bragging/ demeanour

.. ଦିଲ୍ଲୀ ଯାଇଥିଲା ତ, ପୁଅ ଏ ସବୁ ବୋଲଚାଲ ସେଇଠୁ ଶିଖିଛି ।

## ଭ

ଭକୁଆ ବନେଇବା – ବୋକା ବନାଇବା– to dupe

.. ସରସ ସୁନ୍ଦର କଥା କହି କେତେଦିନ ଜନଗଣଙ୍କୁ ଭକୁଆ ବନେଇ ଚାଲିଥିବ ?

ଭଗାରି ମା' ପେଟରେ – ଘର ଭିତରେ ଶତ୍ରୁ– enemy within

.. ନିଜ ଭାଇ ହେଇ ଏମିତି କରିବାଟା ଠିକ୍ ହେଲାନି । କଥାରେ କହନ୍ତିନି, ଭଗାରି ମା'ପେଟରେ ଥାଆନ୍ତି ।

ଭଗାରି ହେବା – ଶତ୍ରୁତା ଆଚରଣ କରିବା– to be hostile

.. ଜନମ କଲା ପୁଅଟା ହିଁ ଶେଷରେ ବାପ ସାଙ୍ଗରେ ଭଗାରି ହେଲା ।

ଭଟା ପଡ଼ିବା – ଅବନତି ଘଟିବା– be down grades

.. ଏଥର ଆମ ନେତା ମହାଶୟଙ୍କ ଲୋକ ପ୍ରିୟତାରେ କିଛିଟା ନିଶ୍ଚୟ ଭଟା ପଡ଼ିବ ।

ଭଙ୍ଗାମନ – ହାରିଯାଇଥିବା ମଣିଷ– splintered psyche

.. ଭଙ୍ଗାମନ ନେଇ କେତେଥର ଆଉ ତା' ସାଙ୍ଗରେ ଲଢ଼ିବ ?

ଭଂଗା କପାଳ – ଦୁର୍ଭାଗ୍ୟ– misfortune/broken fate

.. ଯିଏ ଭଂଗା କପାଳ ନେଇ ଜନ୍ମ ନେଇଛି, ତା' ଭାଗ୍ୟରେ ସୁଖ କାହିଁ ?

ଭଙ୍ଗାକପାଳ ଯୋଡ଼ିହେବା – ସୌଭାଗ୍ୟ ଉଦୟହେବା– rise of fortune

.. ପାଞ୍ଚବର୍ଷ ପରେ ତା'ଙ୍କ ଭଙ୍ଗାକପାଳ ଯୋଡ଼ିହେବାକୁ ଆରମ୍ଭ କରିଛି । ଏଥର ତା'ଙ୍କ ସଂସାର ହସିଉଠିବ ।

ଭଦ୍ରଖୋଳ ପିନ୍ଧିବା – ଭଦ୍ର ଲୋକର ଛଦ୍ମବେଶ ଧରିବା– to don a mask

.. ନାରୁବାବୁ ସମାଜରେ ଭଦ୍ରଲୋକର ଖୋଳ ପିନ୍ଧି ବେଶ୍ ଦି'ପଇସା କମେଇ ସାରିଲେଣି ।

ଭଦ୍ରଲୋକରେ ଭାଣ୍ଡିଆ ହେବା – ଅପମାନିତ ହେବା– to be insulted

.. ତମେ ଯେମିତି କାମ କରି ବସିଲଣି, ଶେଷରେ ଆମକୁ ଭଦ୍ର ଲୋକରେ ଭାଣ୍ଡିଆ ହେବାକୁ ପଡ଼ିବ ।

ଭରମ ସରମ – ଲଜ୍ଜା ସରମ– respect/ shame/ maintaining credit

.. ତା'ର ଭରମ ସରମ କିଛି ନାହିଁ । ତା'ଠୁଁ ଅଧିକଟା ଆଉ କ'ଣ ଆଶା କରିବ ?

ଭଳିକି ଭଳି – ବିଭିନ୍ନ ପ୍ରକାରର– various kinds/ of many kinds

.. ଭଳିକି ଭଳି ଚଢ଼େଇ ଏସନ ଚିଲିକାକୁ ଆସିଛନ୍ତି ।

ଭବଲୀଳା ସାଙ୍ଗ କରିବା – ମୃତ୍ୟୁବରଣ କରିବା– breath one's last

.. ସାଧୁବାବା ଦୋଳ ପୂର୍ଣ୍ଣିମା ଦିନ ଭବଲୀଳା ସାଙ୍ଗ କଲେ ।

ଭୟରେ କମ୍ପିଉଠିବା – ଅତିଶୟ ଡରିଯିବା– to be frightened

.. ଦୁଆର ମୁହଁରେ ସଦ୍ୟ କଟା ମୁଣ୍ଡ ଦେଖି ସେ ଭୟରେ କମ୍ପିଉଠିଲେ ।

ଭୟରେ ଦେହ କଂଚାପାଣି ହେଇଯିବା – ସନ୍ନିପାତ ମାଡ଼ିଯିବା, ଭୟରେ ଜଡ଼ସଡ଼ ହେବା– trembled with trepidation

.. ବାପାଙ୍କ ମୃତ୍ୟୁ ଖବରଟା ପାଇବା ମାତ୍ରେ ଭୟରେ ତା'ଙ୍କ ଦେହ କଂଚାପାଣି ହୋଇଗଲା ।

ଭଲରେ ଭେଲ ମିଶିବା – ଭଲ ମନ୍ଦ ମିଶିଯିବା– the intermixture of good and bad

.. ଭଲରେ ଭେଲ ମିଶିବା ଭଳି ଚୋର ପୋଲିସ ଏମିତି ମିଶି ଯାଇଛନ୍ତି ଯେ ସେସାନଙ୍କୁ ଅଲଗା କରିବା କଷ୍ଟ ।

ଭାଡ଼ି ମାରିବା – ଘର ତିଆରି କରିବା– to build up platform

.. ଭାଡ଼ି ନ ମାରିଲେ ଭାଲୁ ଉପଦ୍ରବ ସହିବାକୁ ପଡ଼ିବ ।

ଭାତ ଲାଗିବା – ଭାତ ପରଷିବା– to serve

.. ପତ୍ରରେ ଶେଷ ହେଲାଣି, ଭାତ ଲଗାଅ ।

ଭାତ ମାରିବା – ରୋଜଗାର ପଥ ବନ୍ଦ କରିବା– to block the income

.. ଏଭଳି ଦୁର୍ଦ୍ଦିନରେ ଲୋକଟାର ଭାତ ମାରୁଛ ? ଧର୍ମ ସହିବ ନାହିଁ ।

ଭାତ ଖାଇ ଚାଉଳ ହଗିବା – ଅତି ଚତୁର ପଣିଆ– too shrewd

.. ଭାତ ଖାଇ ଚାଉଳ ହଗିବା ଢଙ୍ଗ ଛାଡ଼ି ମୋ ପଇସାଟା ଆଗ ଦେଇପକା ।

ଭାତଘୁମ – ଦିପହର ଭାତ ଖାଇବା ପରେ ଯେଉଁ ଘୁମ ଆସେ– siesta

.. କାହିଁକି ତା'କୁ ଉଠଉଛ ? ଭାତ ଘୁମ ଲାଗିଛି ତା'କୁ । ଯାଉ କିଛି ସମୟ ।

ଭାତରେ ମାରିବା – ଅନ୍ନ ସଂସ୍ଥାନ ବନ୍ଦ କରିବା– to stop one's bread and butter

.. ଏଭଳି ଅସୁବିଧା ବେଳେ କାହିଁକି ତା'କୁ ଭାତରେ ମାରୁଛ ?

ଭାତ ବିଞ୍ଚିଦେଲେ ସହସ୍ର କୁଆ – ହେୟଜ୍ଞାନ କରିବା, ଧନୀ ବ୍ୟକ୍ତିର ଆଦୁବଡ଼ିମା– gathering friends through donations

.. କାମ ନ କର । ମତେ କ'ଣ ଡରାଉଛ ? ଭାତ ବିଂଚିଦେଲେ ସହସ୍ର କୁଆ ।

ଭାଟିଆ ଉଠେଇବା – ପରିଶ୍ରମ ନ କରି ମାଗଣା ଖାଇବା– to bask under a borrowed sun

.. କେତେଦିନ ଏମିତି ପର ଉପରେ ଭାଟିଆ ଉଠଉଥିବ ?

ଭାଲୁ ଧରାଇବା – ଠକିବା, ବିପଦରେ ପକାଇବା– to entangle someone with trouble

.. ତା'କୁ ବିଶ୍ୱାସ କରି ମୁଁ ଭଲ ଭାଲୁ ଧରିଛି । ଅଖା ଧୋଉଛି ଗୁଣ ଗାଉଛି ।

ଭାଲୁ ଆସିବା – ନିଦ ଲାଗିବା– heavy eyelids

.. ତା'କୁ ଭାଲୁ ଅସିଲାଣି । ସିଏ କି ପାଠ ପଢ଼ିବ ?

ଭାଲୁ ଆମ୍ପୁଡ଼ା – ଦୁଷ୍ଟ ପ୍ରୀତିର ପରାଭବ– befriending

.. ସିଏ କ'ଣ ତମେ ଜାଣିଛ । ତା'ସାଙ୍ଗରେ ଯାଇଛ ମାନେ ଭାଲୁ ଆମ୍ପୁଡ଼ା ସହିବାକୁ ପଡ଼ିବ ।

ଭାଲୁ ଜର – କ୍ଷଣସ୍ଥାୟୀ ଜର– casual fever

.. ବ୍ୟସ୍ତ ହୁଅନି । ଭାଲୁଜର ହେଉଛି । ସାଙ୍ଗେ ସାଙ୍ଗେ ଓହ୍ଲାଇଯିବ ।

ଭାସିଯିବା – ବ୍ୟର୍ଥ ହେବା, ପରିଚାଳିତ ହେବା– denuding of hopes / carried away

.. ଆମର ଏତେ କଷ୍ଟ ଏତେ ପରିଶ୍ରମ, ସବୁ କ'ଣ ଭାସିଗଲା ? ତା'କଥାରେ ଭାସିଯାଇ ସେ ଏମିତି କାଣ୍ଡ କରିବସିଲେ ।

ଭାସି ଉଠିବା – ଉଦ୍‌ଭାସିତ ହେବା– to be illuminated

.. ତା'ଙ୍କ ଆଖି ଆଗରେ ଭାସି ଉଠିଲା ଅତୀତର କଥା ।

ଭିକ ନ ଦେଇ ଥାଳ ଭାଙ୍ଗିବା – ସାହାଯ୍ୟ ନ କରି ହଇରାଣ କରିବା– to harass without extending a helping hand

.. ତା'ର ପ୍ରକୃତି ହେଉଛି, ଭିକ ନ ଦେଇ ଥାଳ ଭାଙ୍ଗିବା । ତା'ଉପରେ ଭରସା କରୁଛ ?

ଭିଟାମାଟି ଉଚ୍ଛନ୍ନ କରିବା – ସର୍ବସ୍ୱାନ୍ତ କରିବା– to ruin completely

.. ତା'ସାଙ୍ଗରେ ଲାଗିଲେ, ସେ ଭିଟାମାଟି ଉଚ୍ଛନ୍ନ କରେଇଦବ ।

ଭିଡ଼ା ଓଟରା କରିବା – ଅପମାନିତ କରିବା– physical molestation/assaulting

.. ଭିଡ଼ା ଓଟରା କରି ଭାବିଛ ତା'ଙ୍କୁ ଜିତିଯିବ ?

ଭିତରେ ଭିତରେ – ଗୋପନରେ, ମନେ ମନେ – surruptious work

.. ଭିତରେ ଭିତରେ ଲୋକଟା ସମସ୍ତଙ୍କ ଚେର କାଟେ ।

ଭିତର ବାହାର ଏକ – ଅକପଟ– candied

.. ତା'ର ଭିତର ବାହାର ଏକ । ତା'କୁ କ'ଣ ସନ୍ଦେହ କରୁଛ ?

ଭୀମବଳ କୁନ୍ତିକୁ ଜଣା – ପୁଅର ସାମର୍ଥ୍ୟ ମା'ଙ୍କୁ ଜଣା – the mother knows the potency of her son

.. ତା' ଆଗରେ ସିଏ ଭଡ଼ ଭଡ଼ ହେଇପାରିବନି, କାରଣ ଭୀମବଳ କୁନ୍ତୀକୁ ଜଣା ।

ଭୀଷ୍ମ ପ୍ରତିଜ୍ଞା – ଅଟଳ ପ୍ରତିଜ୍ଞା– firm determination

.. ତା'ଙ୍କର ଏଥର ଭୀଷ୍ମ ପ୍ରତିଜ୍ଞା, ସେ ନିଶ୍ଚୟ ଆଇ.ଏ.ଏସ୍ ପାଇବ ।

ଭୁଆଁ ବୁଲାଇବା – ଭଣ୍ଡେଇବା– to beguile

.. କେତେଦିନ ମିଛ କହି ସମସ୍ତଙ୍କୁ ଭୁଆଁ ବୁଲେଇବ ?

ଭୁରିଶ୍ରବା ପାଗ ବାନ୍ଧୁ ବାନ୍ଧୁ ମହାଭାରତ ଶେଷ – ପ୍ରସ୍ତୁତ ହେଉ ହେଉ ସମୟ ଗଡ଼ିଯିବା– missing the goal by concentrating too much on the decor

.. ତୁ ଯେମିତି ବାହାରୁଛୁ, ପହଂଚିବା ବେଳକୁ ଟ୍ରେନ୍ ଛାଡ଼ି ଦେଇଥିବ। ଭୁରିଶ୍ରବା ପାଗ ବାନ୍ଧୁ ବାନ୍ଧୁ ମହାଭାରତ ଶେଷ ହେବା ଭଳିଆ ହେବ।

ଭୁବନ ଅନ୍ଧାର ଦେଖାଯିବା – କିଂକର୍ତ୍ତବ୍ୟବିମୂଢ଼ ହେବା– to be dumbfounded

.. ବାପାଙ୍କ ମୃତ୍ୟୁଖବର ପାଇଲା ପରେ ତା'ଙ୍କୁ ଚାରି ଭୁବନ ଅନ୍ଧାର ଦେଖାଗଲା।

ଭୂତ ଖାଇବା – ଅପବ୍ୟୟ ହେବା– squandered away

.. ବୁଢ଼ା ବୁଢ଼ୀ ମଲାପରେ ତା'ଙ୍କ ସଂପତ୍ତି ଏବେ ଭୂତ ଖାଉଛନ୍ତି।

ଭୂତ ଲାଗିବା – ବାୟାଭଳି ହେବା, ଭୂତ ଗ୍ରାସିବା– possed / to be mad

.. ସେ ଯେମିତି ବାୟା ଭଳି ହେଉଛି ତା'ଙ୍କୁ ବୋଧେ ଭୂତ ଲାଗିଛି !

ଭେକ ଥିଲେ ଭିକ ମିଳିବା – ଯୋଗ୍ୟତା ଥିଲେ କାମର ଅଭାବ ହୁଏନି – polite dress invites welcome/ man is known by his costume

.. ସେ ଟ୍ରେନିଙ୍ଗ ନେଇଛି। କାମ ପାଇଯିବ। କଥାରେ ଅଛି, ଭେକ ଥିଲେ ଭିକ ମିଳେ।

ଭେଳା ବୁଡ଼ିବା – ସର୍ବନାଶ ହେବା– totally broken

.. ଚାକିରୀ ଚାଲିଗଲାନି ଯେ ତା'ଙ୍କର ଭେଳା ବୁଡ଼ିଗଲା।

## ମ

ମଇଳା ବସିବା – ଗୋଟିଏ ଯାଗାରେ ମଇଳା ବସିବା– blotted dirts

.. ସାର୍ଟରେ ଏତେ ମଇଳା ବସିଛି, କେମିତି ପିନ୍ଧୁଛ ?

ମଉକା ପାଇବା – ସୁଯୋଗପାଇବା– to avail opportunity

.. ଏଥର ସେ ମଉକା ପାଇଛି, କେବେ ଛାଡ଼ିବନି।

ମଗଜ ପାଇବା – ମୁଣ୍ଡକୁ ଧରିବା– enters into the head

.. ଏତେ ଦିନକେ ପୁଅର ମଗଜରେ ପଶିଛି। ଏଣିକି କିଛି ଅସୁବିଧା ନାହିଁ।

ମଗଜ ଖେଳେଇବା – ମୁଣ୍ଡ ଖେଳାଇବା– to apply one's mind

.. ମୁଁ କାହିଁକି ମଗଜ ଖେଳେଇବି ? ତୁ ନିଜେ ସମାଧାନ କର।

ମଗଜ ଧୁଲେଇକରିବା – ଭଲଭାବେ ବୁଝେଇବା, ମସ୍ତିଷ୍କରେ ପୁରାଇବା– to pay attention to

.. ତା' ମଗଜ ଧୁଲେଇ କରିବାରୁ ସେ ନିର୍ବାଚନରୁ ଓରିହିଲା।

ମଜା କରିବା – ସ୍ଫୂର୍ତ୍ତି କରିବା– to make fun/ play jokes

.. ସମସ୍ତେ ମିଶିବା, ମଜା କରିବା ସେଇଠି ।

ମଜାରେ ଉଡ଼େଇବା – ବେପରୁଆଭାବେ ଖର୍ଚ୍ଚ କରିବା– spending unnecessarily

.. ବାପର ବେଶ୍ ଟଙ୍କା ଅଛି, ପୁଅ ମଜାରେ ଉଡ଼ଉଛି ।

ମଜା ଦେଖିବା – ଦୁଷ୍ଟକାମରେ ଆନନ୍ଦିତ ହେବା– to derive devilish pleasure

.. ଦୁଇଜଣଙ୍କ ଭିତରେ ଲଗେଇ ଦେଇ ସେ ମଜା ଦେଖୁଛି ।

ମଝି ନଈରେ କରିବା – ବିପଦରେ ପଡ଼ିବା– enmeshed in trouble

.. କୁମ୍ଭୀର ନେଇ ମଝି ନଈରେ କଲାଣି, ପୁଅର ଏବେ ନିଦ ଭାଂଗୁଛି ।

ମଝିରେ ମଝିରେ – ବେଳେବେଳେ, ମଧ୍ୟଭାଗରେ– now and then

.. ମଝିରେ ମଝିରେ ସେ ଆମଘରକୁ ଆସନ୍ତି । ରାସ୍ତା ମଝିରେ ମଝିରେ ଲାଇଟ ପୋଷ୍ଟ ଅଛି ।

ମଠରେ ଖାଇବା – ଗୁରୁତ୍ୱ ଅନୁଭବ ନ କରିବା– to lead an irresponsible life

.. ସେ ତ ମଠରେ ଖାଇ ଖଟରେ ଶୋଉଛି । ତା'କୁ ଏଥିରେ ପୁରାଉଛ, ସିଏ କାମ କରିବ ?

ମଠ କରିବା – ଅଳସୁଆମି କରିବା, ଢିଲାମାରିବା– lexity in work

.. ଯାହା କରିବ ଶୀଘ୍ର କରିବ, ଏତେ ମଠ କଲେ ଚଳିବ ?

ମଣିକାଂଚନ ଯୋଗ – ଶୁଭମିଳନ– happy union

.. ବର କନିଆ ଦି'ଜଣ ବଢ଼ିଆ ମାନୁଛନ୍ତି, ପୁରାପୁରି ମଣିକାଂଚନ ଯୋଗ ପଡ଼ିଛି ।

ମଣିହରାଫଣୀ – ପ୍ରିୟବସ୍ତୁ ହରାଇ ଅସ୍ଥିର ହେଉଥିବା ଲୋକ– to feel uncertain after losing the loved one

.. ମୁଦିଟା ହଜିଯାଇଛି ବୋଲି ଏମିତି ମଣିହରା ଫଣୀ ଭଳିଆ ହେଲେ କ'ଣ ମିଳିଯିବ ?

ମଣିଷ କରିବା – ପାଳିବା ପୋଷିବା– to rear or raise someone

.. ଛୋଟ ପିଲାଟାକୁ ମଣିଷ କରିବା ସହଜ ନୁହେଁ ।

ମଣିଷ ହେବା – ବୁଦ୍ଧିବୃତ୍ତି ହେବା, ଜ୍ଞାନ ହେବା– to become senisible

.. ସେ ଯଦି ମଣିଷ ହୋଇଥାନ୍ତା, ମୁଁ କାହିଁକି ଏ ବୟସରେ କାମ କରନ୍ତି !

ମଣିଷ ଚରେଇବା – ଅଭିଜ୍ଞତା ଥିବା– man of the world

.. ନିତ୍ୟାନନ୍ଦବାବୁ ମଣିଷ ଚରଉଛନ୍ତି, ସେ ଠିକ୍ ଜାଣିପାରିବେ, ପିଲାଟାର ଦୁର୍ବଳତା କୋଉଠି ଅଛି ।

ମନ ଉଚାଟନ ହେବା – ବ୍ୟାକୁଳ ହେବା, ଅସ୍ଥିର ହେବା, ଉତ୍କଣ୍ଠିତ ହେବା– to grow restless/desperate

.. ପିଲାଟା ଦୂରରେ ରହୁଥିବାରୁ ତା'କୁ ଦେଖିବା ପାଇଁ ମା'ର ମନ ଉଚ୍ଚାଟନ ହଉଛି ।

ମନ କଷାକଷି – ମନୋମାଳିନ୍ୟ– misunderstanding/ fall out with someone

.. ଥରେ ମନ କଷାକଷି ଆରମ୍ଭହେଲେ ନାନାପ୍ରକାର ବିଘ୍ନ ଘଟିବ ।

ମନ କାନ୍ଦିବା – ଆକୁଳହେବା, ଦୁଃଖବୋଧ କରିବା– long for something/ desperately want to

.. ଘରକୁ ଆସିବା ପାଇଁ ଝିଅର ମନ କାନ୍ଦୁଛି ।

ମନ ଖରାପ କରିବା – ବ୍ୟଥିତ ହେବା, ଦୁଃଖ କରିବା– to feel sad

.. ଯାହା ତ ହେବାର ହେଲାଣି, ସେ ନେଇ ଆଉ ମନ ଖରାପ କରିବା ଠିକ୍ ନୁହେଁ ।

ମନ ଖୋଲା କରିବା – ମନର କଥା କହିଦେବା, ଅକପଟ, ସରଳ– to unburden oneself/ pour one's heart to someone

.. ମା'ଆଗରେ ସବୁ ମନ ଖୋଲିକରି କହିପକାଅ ।

ମନ ଗଢ଼ା – କଳ୍ପିତ, ଅବାସ୍ତବ, ମିଥ୍ୟା– fictitious/ imaginary

.. ଏଇଟା ପୁରାପୁରି ମନଗଢ଼ା ଅଭିଯୋଗ ।

ମନ ଗଳିବା – ତରଳିଯିବା, ନରମିଯିବା– to relent

.. ତା'ର ଦୁଃଖକାହାଣୀ ଶୁଣିଲେ ଯେ କୌଣସି ଲୋକର ମନ ଗଳିଯିବ ।

ମନଘର ଧରିବା – କ୍ଷତି ହେବା– sustain a loss

.. ଦୁଇ ଦୁଇଟା ବାହାଘର କରି ତା'ମନ ଘର ଧରିଯାଇଛି ।

ମନ ଚହଲିବା – ଅସ୍ଥିର ହେବା– feel agitated/ disturbed

.. ଏଇଟାତ ମନ ଚହଲିବା ବୟସ । ସେ କିଛି ଶୁଣିବନି ।

ମନ ଚୋରିକରିବା – ପ୍ରେମ କରିବା, ମୁଗ୍ଧ କରିବା– steal one's heart

.. ଆଜିକାଲି ଯୁଗରେ ମନ ଚୋରି କରିବାଟା କ'ଣ ନୂଆ କଥା ?

ମନଛାଡ଼ିବା – ଦୂରେଇ ଯିବା, ଆସକ୍ତ ନ ହେବା– to loose all interest in someone

.. ଥରେ ମନଛାଡ଼ିଲେ ଆଉ ସେଇ କାମରେ ସେ ପଶେନା ।

ମନଜାଣି ପ୍ରଭୁ – ଭକ୍ତି ଅନୁସାରେ ଫଳ– to get the fruits of one's labour

.. ଯେତେ କଷ୍ଟ ସେ କରିଛି, ମନ ଜାଣି ପ୍ରଭୁ ମିଳିଛି ।

ମନଟଳିବା – ସଂଯମ ନଷ୍ଟକରିବା, ମତ ବଦଳାଇବା– to get swayed

.. ତା'ର ରୂପ ଦେଖିଲେ ଯେ କୌଣସି ଲୋକର ମନ ଟଳିଯିବ ।

ମନଟାଣିବା – ମନକୁ ଆକୃଷ୍ଟ କରିବା, ଆସକ୍ତ ହେବା– drawn to/ attracted to

.. ନାଟ ତାମସା ପ୍ରତି ମୋ ମନ ଆଦୌ ଟାଣୁନି ।

ମନଢାଳିବା – ପୂର୍ଣ୍ଣ ମନଯୋଗଦେବା, ଆକୃଷ୍ଟହେବା, ସମର୍ପଣ କରିବା– devote oneself

entirely to someone

.. ଝିଅଟି ପ୍ରତି ତା'ଙ୍କ ମନ ପୂରାପୁରି ଢଳିଯାଇଛି ।

ମନଦେବା – ଦୃଷ୍ଟିଦେବା, ମନଯୋଗ ଦେବା, ଭଲପାଇବା– to do something sincerely/ pay one's full attention to

.. ମନଦେଇ ଲେଖାପଢ଼ା କର ।

ମନ ଦିଆନିଆ – ଭଲପାଇବା, ପାରସ୍ପରିକ ପ୍ରେମ– mutual love/ reciprocate someone's love

.. ବର୍ଷେ ହେବ ସେମାନଙ୍କ ମନ ଦିଆନିଆ ଚାଲିଛି ।

ମନନେବା – ଖୁସି କରେଇବା– to please/ to satisfy

.. ଅନ୍ୟର ମନନେଇ ଚଳିବାଟା ଶିଖ ।

ମନକୁପାଇବା – ପସନ୍ଦ କରିବା, ପ୍ରୀତି ଲାଭକରିବା– to like/ to prefer

.. ପିଲାଟିର କଥା ତା'ଙ୍କ ମନକୁପାଇଲା ।

ମନେପକେଇବା – ଭାବିବା, ସ୍ମୃତିକୁ ଆଣିବା– to recollect/bring to one's mind

.. ଅତୀତ କଥା ମନପକେଇ ଲାଭ କ'ଣ ?

ମନଫାଟିବା – ଆନ୍ତରିକତା ଶୂନ୍ୟହେବା– to become insincere

.. ଦୁଇଭାଇଙ୍କ ଭିତରେ ମନଫାଟିବା ଆରମ୍ଭ ହୋଇଗଲାଣି ।

ମନ ଫୁଲେଇବା – ରୁଷି ବସିବା– to sulk

.. ଭାଉ ମିଳିନି ବୋଲି ଝିଅଟା ମନ ଫୁଲେଇ ବସିଛି ।

ମନେ ମନେ ଫୁଲିବା – କୁରୁଳିବା, ଆନନ୍ଦିତ ହେବା– to be overjoyed / to feel ecstatic

.. ଲଟେରିଟା ଉଠିଯାଇଛି ବୋଲି ସେ ମନେ ମନେ ଫୁଲୁଛି ।

ମନବାନ୍ଧିବା – ସ୍ଥିର କରିବା– to reserve/ to decide

.. ସେ ମନ ବାନ୍ଧିଛନ୍ତି, ଏଥର ମକ୍କା ଯିବେ ।

ମନବୁଝିବା – ହଇରାଣ ହେବା, ବୋଧଦେବା– be harassed/ to console

.. ରାମ ସାଙ୍ଗରେ ମିଶି ଦାମର ମନ ବୁଝିଗଲାଣି, ଆଉ ସାଙ୍ଗ ହବନି ।

ମନ ଭରିବା – ପରିତୃପ୍ତ ହେବା, ଖୁସିହେବା– fulfilled/ satisfied fully

.. ରାମଲୀଳା ଗୀତ ଶୁଣି ତା'ଙ୍କ ମନ ଭରିଯାଇଛି ।

ମନଭାଂଗିବା – ମନ ହରେଇଯିବା, ହତାଶହେବା, ମନଦୁଃଖ ହେବା– look with disfavour/ to be disheartened

.. ଥରେ ମନ ଭାଂଗିଗଲେ, ଆଉ ଯୋଡ଼ିହେବା ଅସମ୍ଭବ ।

ମନ ଭୁଲାଇବା – ମୁଗ୍ଧ କରିବା– pleasing to mind/ approved

.. ମନ ଭୁଲାଇବା କଥା ଛାଡ଼ି ଅସଲ କାର୍ଯ୍ୟ ଉପରକୁ ଆସ ।

ମନମରିବା – ମନ ଭାଂଗିଯିବା, ମନ ଦବିଯିବା– be depressed/ disappointed

.. ଥରେ ମନ ମରିଗଲା ପରେ, ଆଉ ତା'କୁ ଜୀବିତ କରିବା କଷ୍ଟକର ।

ମନମାରିବା – ବିଷର୍ଣ୍ଣହେବା– to be dejected

.. ଗଲାକଥା ଗଲାଣି । କେତେଦିନ ମନମାରି ବସିଥିବ ?

ମନ ମାନିବା – ପ୍ରବୋଧନା ଦେବା, ଶାନ୍ତ ହେବା– be pacified/ to console

.. ଏତେ ଘଟଣାପରେ କ'ଣ ତା'ମନ ମାନୁଛି ?

ମନେରଖିବା – ଖୁସି କରାଇବା, ତୋଷାମଦ କରିବା– keep in mind/ to flatter

.. ସବୁ ସମୟରେ ମାଲିକର ମନରଖି କାର୍ଯ୍ୟ କରିବା କଷ୍ଟ ।

ମନଲାଗିବା – ଆଗ୍ରହ ବଢ଼ିବା– to be attentive/ to be in order

.. କାମରେ ତା'ର ମନ ଲାଗିଗଲାଣି, ଆଉ ଏଣିକି ଅସୁବିଧା ନାହିଁ ।

ମନ ଜାଣିଯିବା – ମନ ବୁଝିଯିବା, ଠିକ୍ ଭୁଲ ଜାଣିପାରିବା– to have realise the difficulty of an act

.. ଏ ଧନ୍ଦାରେ ପଶି ତା'ମନ ଜାଣିଗଲାଣି, ଆଉ ପଶିବନି ।

ମନରେ ଦାଗ କାଟିବା – ଅନ୍ତରରେ ପ୍ରଭାବ ବିସ୍ତାର କରିବା– heart-rending influence

.. ତା'ଙ୍କ ଭାଷଣ ମନରେ ଦାଗ କାଟିଲା ଭଳିଆ ହୋଇଛି ।

ମନରେ ଧରିବା – ଦୁଃଖ କରିବା ବା ପାଇବା– to accept/ harbour in mind

.. ତା'କଥା ଗୁଡ଼ାକ ତମେ ମନରେ ଧରନି, ସେ ସେଇ ଭଳିଆ ଲୋକ ।

ମନର ନିଅାଁ – ଉତ୍ତେଜନା– excitement

.. ତା'ମନର ନିଆଁ ସହଜେ ଲିଭିବନି ।

ମନର ଜୋର – ଦୃଢ଼ ପ୍ରତିଜ୍ଞା– firm determination

.. ମନର ଜୋର ଥିଲେ ନିଶ୍ଚୟ ପରୀକ୍ଷାରେ ପାଶ୍ ହେବ ।

ମନେ ମନେ ଗୁଡ଼ ଖାଇବା – କଳ୍ପନାରେ ଭାସିବା– to have illusions particularly of expectations

.. ଚାକିରୀଟା ପାଇଯିବ ବୋଲି ପୁଅ ମନେ ମନେ ଗୁଡ଼ ଖାଉଛି ।

ମନର ମଇଳା – କୁଚିନ୍ତା, କ୍ଷୋଭ– ill-thinking/ passion

.. ପ୍ରତିଦିନ ଯୋଗାସନ କରିବାରୁ ତା'ମନର ମଇଳା ଧୋଇଗଲା ।

ମନର ମଣିଷ – ପ୍ରେମିକ, ପସନ୍ଦର ମଣିଷ– approved man/pleasing to mind

.. ମନର ମଣିଷକୁ ନ ପାଇଲେ ସେ ଆତ୍ମହତ୍ୟା କରିବେ ।

ମନର ସାଧ – ଅଭିଳାଷ, ଇଚ୍ଛା– desire/ emotion

.. ସେ ମନର ସାଧ ମେଣ୍ଟାଇବାକୁ ଯାଇ ଏଭଳି କାଣ୍ଡ କରିବସିଲେ ।

ମଂଜି ଗୁଣେ ଫଳ – କାର୍ଯ୍ୟ ଅନୁଯାୟୀ ଫଳ– like father like son

.. ଯେମିତି ବାପ ସେମିତି ପୁଅ, ମଂଜି ଗୁଣେ ଫଳ ।

ମନ୍ଦ ପାଞ୍ଚିବା – ଅମଙ୍ଗଳ କାମନା କରିବା, କ୍ଷତିରେ ପକାଇବା– allusion to natural enemies/ put into loss

.. ଗାଁରେ କିଏ କାହିଁକି ତମର ମନ୍ଦ ପାଞ୍ଚିବ ?

ମନ୍ଦଚକ୍ଷୁ – ହୀନ ଦୃଷ୍ଟି – inferior deeds/meanness

ତା'ର ମନ୍ଦଚକ୍ଷୁ ସଦାବେଳେ ସେଇ ଜିନିଷକୁ ଖୋଜିବସିବ ।

ମରଣକାଳେ ବିପରୀତ ବୁଦ୍ଧି – ଶେଷ ସମୟରେ ମୁଣ୍ଡ କାମ ନ କରିବା– to loose one's head at the brink

.. ମରଣକାଳେ ବିପରୀତ ବୁଦ୍ଧି ଯାହାର ହେବ, ତା'କୁ ଭଲ କୁଆଡୁ ଦେଖାଯିବ ?

ମରଣକାଳେ ହରିନାମ – ଶେଷ ମୁହୂର୍ତ୍ତରେ ବିନା ଆୟାସରେ କାର୍ଯ୍ୟ ଉଦ୍ଧାରର ଚେଷ୍ଟା – finding a way to redemption before the last breath

.. ଏତେଦିନ ଚୁପଚାପ ରହିଲେ, ଆଉଏ ମରଣ କାଳେ ହରିନାମ ଧରିଲେ କ'ଣ ହେବ ?

ମରା ମୁହଁ ଦେଖିବା – ପ୍ରିୟଜନର ମୃତ୍ୟୁ– threatening to die

.. ସେ ଯଦି ସେଠି ରାଜି ନ ହୁଏ, ତେବେ ମୋ ମରା ମୁହଁ ଦେଖିବ ।

ମହତ ହଜିବା – ସମ୍ମାନ ନଷ୍ଟହେବା– deprived of dignity/moral degradation

.. ଯେତେ ଧନ ଥାଉ ଥରେ ମହତ ହଜିଲେ ଆଉ ଫେରେନା ।

ମହରଗରୁ ଯାଇ କାନ୍ତାରରେ ପଡ଼ିବା – ଛୋଟ ବିପଦରୁ ବଡ଼ ବିପଦରେ ପଡ଼ିବା– out of frying pan into the firm

.. କ'ଣ ଦରକାର ଥିଲା ଏ ସବୁ ଆୟୋଜନ କରିବା ? ମହରଗରୁ ଯାଇ ତ କାନ୍ତାରରେ ପଡ଼ିଛ । ଏବେ କାନ୍ଦୁଛ କାହିଁକି ?

ମହାଭାରତ ଅଶୁଦ୍ଧ ହେବା – ଗର୍ହିତ ଅନ୍ୟାୟ – gross injustice

.. ଲୋକଟାକୁ ନିମନ୍ତ୍ରଣ କରାହୋଇଗଲେ କ'ଣ ମହାଭାରତ ଅଶୁଦ୍ଧ ହୋଇଯିବ ?

ମହାକାଳ ଫଳ – ଗୁଣହୀନ ସୁନ୍ଦର ତନୁ – fatal/ dangerous man

.. ସେ ତ ଗୋଟାଏ ମହାକାଳ ଫଳ । ତା'କୁ କ'ଣ ଦାୟିତ୍ୱ ଦବ ?

ମଲାମାଇଲା କାଳ – ଦୁର୍ଭିକ୍ଷ ବା ଅନାଟନର ସମୟ– time of famine/ want

.. ଏ ମଲାମାଇଲା କାଳରେ କିଏ ତମକୁ କରଜ ଦେବ ?

ମଲା ଉପରେ ଶଗଡ଼ – ଦୁର୍ବଳ ଉପରେ ଦଣ୍ଡ– punish to weak

.. ରାଗ ଶୁଝାଇବା ପାଇଁ ଆଉ କାହାକୁ ପାଇଲ ନାହିଁ ? ଏ ମଲା ଉପରେ ଶଗଡ଼ ହଉଛ ?

ମଲାଘୋଡ଼ାର ଟାପୁ ଗଣିବା – ବୃଥା ପରିଶ୍ରମ– futile labour

.. ଯୋଉ କାମ କରିବା କଥା ତା'କୁ ଛାଡ଼ି ଏ ମଲାଘୋଡ଼ାର ଟାପୁ ଗଣି କି ଲାଭ ?

ମଲାଠୁଁ ଘୋଷରା ବାଧେ – ମୃତ୍ୟୁଠାରୁ ନିରବଚ୍ଛିନ୍ନ ଦୁର୍ଦ୍ଦଶା କଷ୍ଟକର– the predicament out suffering the death

.. ରୋଗଟାରେ ବହୁତ ଘାଣ୍ଟି ହେଲେଣି ? ମଲାଠୁଁ ଘୋଷରା ବାଧୁଛି । କହିବେ କାହାକୁ ?

ମଲାଘୋଡ଼ାର ଟାଙ୍କ ମାପିବା – ଅସାର କଥାରେ ମନଦେବା– to get involved in unnecessary thing

.. କାହିଁକି ସେ ଘଟଣାକୁ ଉଖାରି ମଲା ଘୋଡ଼ାର ଟାଙ୍କ ମାପୁଛ ?

ମଲା ମୁଣ୍ଡ ପଶ୍ଚିମକୁ – ଯାହା ଭାଗ୍ୟ ଅନୁସାରେ ନିର୍ଦ୍ଧାରିତ– as destined

.. ମଲା ମୁଣ୍ଡ ପଶ୍ଚିମକୁ, ଏ କଥା କେବେ ଅନ୍ୟଥା ହେଲାଣି ନା'ହେବା ?

ମା'ମାଉସୀ – ମାତୃସ୍ଥାନୀୟ ଲୋକ– respectable women

.. ଗାଁରେ ମା'ମାଉସୀଙ୍କ କଥା ଭାଂଗି ପାରିଲାନି । ବାଧ୍ୟ ହେଇ ହଁ ଭରିଲି ।

ମାଈ ନୁହେଁ କି ଗାଈ ନୁହେଁ – ସବୁ ଦୃଷ୍ଟିରୁ ଅଯୋଗ୍ୟ– totally incompetent

.. ସେ ତ ମାଈ ନୁହେଁ କି ଗାଈ ନୁହେଁ । କାହିଁକି ତା'କୁ କହି ମୁହଁଟା ହାରିବ ?

ମାଖୁନା ପ୍ରେମ – ନିଷ୍କୁଳ ସ୍ନେହ – to think of doing things without personal gains

.. କାହିଁକି ମିଛଟାରେ : ସେ ମାଖୁନା ପ୍ରେମ ପଛରେ ପଡ଼ିଛ ?

ମା' ଗଙ୍ଗେଇ ଜାଣିବେ – ଅଜଣା କଥା– unknown fact

.. ଏ ଗୁଡ଼ାକ ମତେ ଜଣାନାହିଁ, ହୁଏ ତ ମା'ଗଙ୍ଗେଇ ଜାଣିଥିବେ ।

ମାଗିଆଣିଲା ତିଅଣ ସୁଡୁକାଏ – ଯାହା ଯଥେଷ୍ଟ ନୁହେଁ– insufficient/ not enough to spare

.. ନିଜର ଯଦି ଅଛି, ଦିଅ । ମାଗିଆଣିଲା ତିଅଣ ତ ସୁଡୁକାଏ !

ମାଗି ଯାଚି ଚଳିବା – ଅତି କଷ୍ଟରେ ଚଳିବା– maintain with much difficulty

.. କୌଣସି ପ୍ରକାରେ ମାଗିଯାଚି ସେ ଚଳିଯାଉଛି ।

ମାଘ ମାସିଆ ଶୀତ – ପ୍ରବଳ ଶୀତ– to look forward to the thaw

.. ମାଘ ମାସିଆ ଶୀତଟା ଯାଉ, ତା'ପରେ ଯାତ୍ରା କରିବ ।

ମାଛ ତେଲରେ ମାଛ ଭାଜିବା – ହାତରୁ ଖର୍ଚ୍ଚ ନ କରି କାମ ଚଳେଇନେବା– manage with others price

.. ଆରେ ତା'ଙ୍କୁ କ'ଣ ଅନୁରୋଧ କରୁଛ ? ସେ ତ ମାଛ ତେଲରେ ମାଛ ଭାଜିବା ଲୋକ ।

ମାଛିକୁ ମ ନ କହିବା – କାହାର କ୍ଷତି ନ କରିବା ଲୋକ– harmless man

.. ସେ ଏମତିକା ପିଲା ଯେ ମାଛିକୁ ମ' କହେନି । ତା'କୁ ହଇରାଣ କରିବ ?

ମାଛି ପଡ଼ିଲେ ନବଖଣ୍ଡ – କଡ଼ା ନିରାପତ୍ତା ବ୍ୟବସ୍ଥା– strict security arrangement

.. କେମିତି ସେ ବାଟ ଦେଇଯିବ ? ସେଠି ତ ମାଛି ପଡ଼ିଲେ ନବଖଣ୍ଡ ହୋଇଯିବ ।

ମାଡ଼କୁ ମହାଦେବଙ୍କ ଡର – ଦଣ୍ଡ ଦ୍ୱାରା କାର୍ଯ୍ୟ ଆଦାୟ– to get the work done by pressure

.. କହିବନି ? ଠିକ୍ କହିବ ? ମାଡ଼କୁ ମହାଦେବଙ୍କ ଡର ଟି !

ମାଡ଼ ଖାଇବା – ପାହାର ବା ଆଘାତ ସହିବା– bear the loss/ penalty

.. ସେ ମାଡ଼ ଖାଇ ଖାଇ ପିଠିଆ ହେଇଗଲାଣି ।

ମାଡ଼ ଖାଇଯିବା – ନଷ୍ଟ ହୋଇଯିବା – be destroyed/ spoiled

.. ତା'ର ତିନିଟା ପିଲା ମାଡ଼ ଖାଇଗଲେ ।

ମାଟି ହେବା – ବ୍ୟର୍ଥ ହେବା– be finished/ spoiled

.. ତା'କୁ ଅପେକ୍ଷା କରି କରି ସକାଳ ଓଳିଟା ମୋର ମାଟି ହୋଇଗଲା ।

ମାଟି କାମୁଡ଼ି ପଡ଼ିବା – ମହା ଅସୁବିଧା ଭିତରେ ଅବିଚଳ ରହିବା– to stand unperturbed in calamity

.. ବା'ବତାସରେ ସମସ୍ତେ ପଳେଇଆସିଲେ । ହେଲେ ବୁଢ଼ୀଟା ସେଇଠି ସେମିତି ମାଟି କାମୁଡି ପଡ଼ିରହିଲା ।

ମାଟି କରିବା – ନଷ୍ଟ କରିବା– to spoil/ to waste

.. ତା'ଜୀବନଟା ମାଟି କରି କ'ଣ ପାଇଲ ?

ମାଟିରେ ପାଦ ନ ଲାଗିବା – ଗର୍ବ ଅନୁଭବ କରିବା, ଅହଂକାରୀ ହେବା, ଆନନ୍ଦରେ ଆତ୍ମହରା ହେବା– to feel proud of/ boundless joy

.. ପୁଅ ପାଶ୍ କରିଛି ବୋଲି ବାପର ମାଟିରେ ପାଦ ଲାଗୁନି ।

ମାଟିରେ ମିଶିବା – ମୃତ୍ୟୁ ଲାଭ କରିବା– is dead or gone

.. ଯାହା ସାଙ୍ଗରେ ବିବାଦଥିଲା, ସେ ତ ମାଟିରେ ମିଶିଲାଣି । ଆଉ କାହିଁକି କଥା ବଢ଼ାଉଛୁ ?

ମାଟିଦେବା – ମୁହଁରେ ମାଟିଦେବା (ମୃତ୍ୟୁକାଳୀନ ସତ୍କାର)– to seal one's mouth with soil

.. ମାଟି ଦେଇ ଦେ'ରେ, ଆଉ କ'ଣ ବାପକୁ ପାଇବୁ ?

ମାଟିର ମଣିଷ – ଅତିଶାନ୍ତ ତଥା ନିରୀହ ଲୋକ– innocent man

.. ତା' ଭଳି ମାଟିର ମଣିଷଟାକୁ କାହିଁକି ଦୋଷ ଦେଉଛ ?

ମାଟି ସଙ୍ଗେ ମାଟିହେବା – କଠିନ ପରିଶ୍ରମ କରିବା– to labour hard

.. ମାଟି ସଙ୍ଗେ ମାଟି ନ ହେଲେ ସୁନା ଫଳାଇବା ସମ୍ଭବ ହେବନି ।

ମାନ ଅପମାନ – ମର୍ଯ୍ୟାଦାବୋଧ– sense of dignity

.. ମାନ ଅପମାନ କଥା ଉଠିଲେ ଏ କାମ କେହି କରିବେନି ?

ମାନରଖିବା – ସମ୍ମାନ ବଂଚାଇବା– to uphold dignity

.. ଗୁରୁଜନମାନଙ୍କ ମାନ ରଖି କଥାବାର୍ତ୍ତା କର ।

ମାନ ହରାଇବା – ସମ୍ମାନ ନଷ୍ଟହେବା– loose of honour/ respect

.. ସେମାନଙ୍କ ଝଗଡ଼ାରେ ମୁଁ କାହିଁକି ମୋ ମାନ ହରାଇବି ?

ମାନହାନି – ଅମର୍ଯ୍ୟାଦା– to be dishonoured/ disrespected

.. ଏ ଘଟଣାରେ ତା'ର ଯେମିତି ମାନହାନି ହେଲା, ତା'ର ପୁନରୁଦ୍ଧାର ଅସମ୍ଭବ ।

ମାନଧାତା ଅମଳ – ବହୁ ପୁରୁଣାକାଳ, ସୁଦୂର ଅତୀତ– primitive past

.. ଏ ମୁଦ୍ରା ଆଜିକାଲିର ନୁହେଁ, କୋଉ ମାନଧାତା ଅମଳର ।

ମାଙ୍କଡ଼ ହାତରେ ଶାଳଗ୍ରାମ – ଅଯୋଗ୍ୟ ହାତରେ ଦାୟିତ୍ୱ ଦେବା– give responsibility to an unworthy person

.. ସାନପୁଅଟା ବଦମାସ । ତା'ଉପରେ ଏତେ ଗୁଡ଼ାଏ ଦାୟିତ୍ୱ ! ମାଙ୍କଡ଼ ହାତରେ ଶାଳଗ୍ରାମ ଦେଇ ଠିକ୍ କଲେନି, ବାବୁ !

ମାମୁଘରକୁ ଯିବା – ଜେଲଯିବା– go to jail/ to be imprisoned

.. ସେ ଯେମିତି କାମ କଲା, ମାମୁଘର ଯିବା କଥା ।

ମାର୍କାମରା – କୁଖ୍ୟାତ, ସୁପରିଚିତ– notorious/ famous or reputed

.. ରାମ ତ ମାର୍କାମରା ପିଲା, ତା'କୁ କିଏ ନ ଚିହ୍ନିବ !

ମାର ତାଳି ଉଠାଥାଳି – କୌଣସି ପ୍ରକାରେ କାମ ତୁଟାଇବା– to finish the work anyway

.. ସେ ମହା ହୁସିଆର । ମାର ତାଳି ଉଠା ଥାଳି କରିବା ହେଲା ତା'ଙ୍କ କାମ ।

ମାର ମାର ଭଣ୍ଡାରିଆକୁ ମାର – ବଳୁଆକୁ ନ ପାରି ଦୁର୍ବଳ ଉପରେ ରାଗ ଶୁଝାଇବା ।– to shift the blame on the hapless

.. ବାବୁକୁ ପାରିବନି, ଚାକର ଉପରେ ରାଗ ଶୁଝାଇବ ! ମାର ମାର ଭଣ୍ଡାରିଆକୁ ମାରିବା ନ୍ୟାୟ ।

ମାରିନେଲେ ମହାପାତ୍ରେ ଚାହିଁଥା'ରେ ଢଳକା – ବୁଦ୍ଧିମାନ କାର୍ଯ୍ୟ ହାସଲ କଲାବେଳେ ବୋକା ଅପଦସ୍ତ ହେବା– the shrewd gets the work done as the stupid stares vacant

.. କେତେ ଢଗିବ ? କୋଉ ଛଟକରେ ମାରିନେବେ ମହାପାତ୍ରେ ଚାହିଁଥିବ ଢଳକା ହୋଇ ।

ମାମୁଲି କଥା – ସାଧାରଣ କଥା– ordinary things/ common matter

.. ଏ ମାମୁଲି କଥାରେ ସେ କେବେ ମୁଣ୍ଡ ଖେଳାନ୍ତି ନାହିଁ ।

ମାଳିକି ଛେଳି ଅଡୁଆ – ବୁଦ୍ଧିକୁ ଖାପ ନ ଖାଉଥିଲାଭଳି କାମ କରିବା– go against one's will

.. ବ୍ରାହ୍ମଣ ଘର ପିଲା କୋଉଠୁ ଚାଷବାସ କରିବ ? ମାଳିକି ଛେଳି ଅଡୁଆ !

ମାହାଳିଆ ମୁକୁଳା – ମାଗଣା ଖାଇବା – taking free meal

.. ମାହାଳିଆ ମୁକୁଳା ନେଇ ନେଇ ତା'ର ଅଭ୍ୟାସ ହୋଇ ଗଲାଣି ।

ମାଇପାଣି ଝଡ଼େଇବା – ଟଙ୍କାପଇସା ଝଡ଼େଇବା – to be a hanger on

.. ପଛେ ପଛେ ଲାଗିଯାଅ । ଭଲ ମାଇପାଣି ଝଡ଼ିବ ।

ମାଲମସଲା – ଉପକରଣ– items/ ingredients/ materials

.. ଶ୍ରାଦ୍ଧର ମାଲମସଲା ବେଗି ବେଗି ନେଇଆସ ।

ମାଲାମାଲ କରିବା – ବହୁ ଧନରତ୍ନ ଲାଭ କରିବା– acquisition of wealths

.. ଆରେ ତା' ଝିଅକୁ ବାହାହେଲେ ମାଲାମାଲ ହୋଇଯିବ ।

ମିଛୁଆ ରାଧୁଆ ହେବା – ଅତି ମିଛରୁ ଜୀବନ ଯିବା– life endangered due to bluff

.. ମିଛୁଆ ରାଧୁଆ ହେଇ କେତେଦିନ ଏମିତି ଚଳିବ ? ବାସ୍ତବ ଦୁନିଆକୁ ଆସ ।

ମିଠାକଡ଼ା ଶୁଣାଇବା – ମଧୁର ହେଲେ ବି କଠୋର– to blow hot and cold

.. ସେ ଏମିତି ମିଠାକଡ଼ା ଶୁଣେଇଲେ, ସଭାଶେଷକୁ କେହି ନଥିଲେ ।

ମୁଖ ଉଜ୍ଜ୍ୱଳ କରିବା – ଗୌରବ ବୃଦ୍ଧି କରିବା– to glorify

.. ପିଲାଟା ନିଶ୍ଚୟ ପରିବାରର ମୁଖ ଉଜ୍ଜ୍ୱଳ କରିବ ।

ମୁଖ କଳା କରିବା – ବଦନାମ ହେବା– to spoil one's fair name/ be discredited

.. ସେ ଯେମିତି ମୁଖ କଳା କରିଛି, କିଏ ତା'କୁ ଘରକୁ ନେବ ?

ମୁଖ ଖରାପ କରିବା – ଅଶ୍ଳୀଳ କଥା କହିବା– to speak vulgarly/ telling obscene language

.. ଭଦ୍ରଲୋକର ପୁଅ ହେଇ କାହିଁକି ମୁଖ ଖରାପ କରୁଛ ?

ମୁଖ ଖୋଲିବା – କିଛିଟା ନୀରବତା ପରେ ପୁଣି ସମାଲୋଚନା କରିବା – again criticise after a silence

.. ସେ ଯଦି ମୁଖ ଖୋଲନ୍ତି, ସମସ୍ତେ ଧରାପଡ଼ିଯିବେ ।

ମୁଖ ଚଳାଇବା – ପ୍ରଗଳଭ ହେବା, ଖାଇବା– to speak eloquently/ take in

.. ଥରେ ତା' ମୁଖଚଳା ଆରମ୍ଭ ହେଲେ ସହଜେ ବନ୍ଦ ହେବନି ।

ମୁଖ ଛୋଟ କରିବା – ଗାଳିଦେବା– to scold/ to be mean/ to abuse

.. ଏଡ଼େ ବଡ଼ ଘର ପୁଅ ହୋଇ ସାମାନ୍ୟ କଥାରେ କାହିଁକି ମୁଖ ଛୋଟ କରିବ ?

ମୁଖ ବଙ୍କେଇବା – ତିରସ୍କାର କରିବା– to disregard/ reproach

.. ସେ ଯେମିତି କାମ କରିଛି ଯେ କେହି ତା'ହା ପ୍ରତି ମୁଖ ବଙ୍କେଇବ ।

ମୁଖ ତୋଳି ଚାହିଁବା – ପ୍ରସନ୍ନ ହେବା, ଦୟା କରିବା– to be kind/ be compassionate

.. ଦୀର୍ଘଦିନ ପରେ ଭଗବାନ ତା'ପ୍ରତି ମୁଖ ତୋଳି ଚାହିଁଛନ୍ତି ।

ମୁଖରେ ଲଗାମଦେବା – କଥାବାର୍ତ୍ତା ବନ୍ଦ କରିବା– to stop conversation/ chit-chat

.. ସେ କାହିଁକି ମୁଖରେ ଲଗାମ ଦେଇଛନ୍ତି, ଆଗ ପଚାରି ବୁଝ ।

ମୁଖଦେଖା – ବରକନ୍ୟାଙ୍କ ମୁହଁ ଦେଖିବା, ଜନ୍ମିତ ଶିଶୁକୁ ଦେଖିବା, ଆଭାସ ପାଇବା– see the face of/ gain credit

.. କନ୍ୟା ମୁଖ ଦେଖା ପାଉଣା କିଏ ନେଲା ? ଏତେଦିନ ପରେ ସେ ପଇସାର ମୁଖ ଦେଖିଲେ ।

ମୁଖ ଦେଖାଦେଖି – ସଦ୍‌ଭାବ, ଆଳାପ ବିନିମୟ– to renew acquaintancy/ friendship

.. ଚାରିବର୍ଷ ଅପଡ଼ ରହିବା ପରେ ଏବେ ଦୁଇ ପରିବାର ଭିତରେ ମୁଖ ଦେଖାଦେଖି ହଉଛି ।

ମୁଖ ଦେଖେଇବା – ଲଜ୍ଜାବୋଧ କରିବା– to be feel ashamed

.. ଏତେ ସବୁ ଅଘଟଣ ପରେ ସେ କେମିତି କାହାକୁ ମୁଖ ଦେଖେଇବେ ?

ମୁଖ ନ ଦେଖିବା – କ୍ରୋଧ ବା ଘୃଣାରେ କାହା ସହିତ କଥାବାର୍ତ୍ତା ନ କରିବା– hot to turn one's face out of hatred

.. ତା' କୁକର୍ମ ଲାଗି ମୁଁ ତା' ମୁଖ ଦେଖିବାକୁ ଚାହେଁନା ।

ମୁଖ ଫେରାଇବା – ବିମୁଖ ହେବା, ମନାକରିବା– to decline/ to deny

.. ଏଭଳି ଭଲ ପ୍ରସ୍ତାବକୁ ତମେ ମୁଖ ଫେରାଇଲ ?

ମୁଖ ଫୁଲେଇବା – ଅଭିମାନ ବା ରାଗରେ ମୁଖ ଗମ୍ଭୀର କରିବା– to sneer/ get sulk

.. ତିନିଦିନ ହେଲା ସେ ମୁଖ ଫୁଲେଇ ବସିଛି ।

ମୁଖ ବନ୍ଦ କରିବା – କଥା ନ କହିବା, କୌଶଳରେ ଚୁପ୍ କରାଇବା– poor in speech/ to drive into silence

.. ମେଡ଼ିଆର ମୁଖ ବନ୍ଦ କରିବାଟା ଏତେ ସହଜ ନୁହଁ ।

ମୁଖ ସିଲେଇ କରିବା – ମୁଖ ବନ୍ଦ କରିଦେବା– to keep mouth shut/ gag one's

mouth

.. କହିବ ଯଦି କୁହ । ତମ ମୁଖ ସିଲେଇ କରବାକୁ ମୁଁ କିଏ ?

ମୁଖ ହାଣ୍ଡି କରିବା – ଅଭିମାନ କରିବା– to be piqued/ get sulk

.. ଶାଢ଼ୀଟା ପାଇନି ବୋଲି ଝିଅଟା ମୁଖ ହାଣ୍ଡି କରିଛି ।

ମୁଖରେ ଖଇ ଫୁଟିବା – ଅନର୍ଗଳ ଭାବେ ବକିବା– speak fluently/ useless talk

.. ପିଲାଟାକୁ ଦେଖ, ତା'ମୁଖ ଯେମିତି ଖଇ ଫୁଟୁଛି ।

ମୁଖରେ ଚୂନକାଳି ବୋଳିବା – ସମ୍ମାନ ନଷ୍ଟ ହେବା – loose sense of honour

.. ଝିଅଟା ବାପ ମୁଖରେ ଚୂନକାଳି ବୋଳିଦେଲା ।

ମୁଖରେ ଫୁଲଚନ୍ଦନ ପଡ଼ିବା – ଶୁଭ ସଂବାଦ ଶୁଣାଇବା, ମଙ୍ଗଳକାମନା କରିବା– to look forward to happy boardings

.. ତୋ ମୁଖରେ ଫୁଲ ଚନ୍ଦନ ପଡୁ, ସେ ଶୀଘ୍ର ଫେରିଆସୁ ।

ମୁଖେ ମୁଖେ – ଲୋକ ପରଂପରାରେ– in folk culture/ oral tradition

.. କଥାଟା ଏ ଯାଏ ମୁଖେ ମୁଖେ ବଂଚିଛି ।

ମୁଖର କଥା – ସହଜ କାର୍ଯ୍ୟ– easy task

.. ଆଜିକାଲି ଯୁଗରେ ଚାକିରୀଟାଏ ପାଇବା କ'ଣ ମୁଖର କଥା !

ମୁଖର ଜୋଗ୍ରାଫି ବଦଳେଇଦବା – ମାରି ମୁହଁ ଫଟେଇଦବା, ଜୋରରେ ମାରିବା– beat severely

.. ସମସ୍ତେ ମିଳିମିଶି ଡକାୟତ ମୁଖର ଜୋଗ୍ରାଫି ବଦଳେଇ ଦେଇଛନ୍ତି ।

ମୁଖକୁ ଚାହିଁ ବସିବା – ସାହାଯ୍ୟ ଆଶା କରିବା– to undergo a long waiting expecting help or succour

.. ମହାବାତ୍ୟାରେ ଲୋକେ ସରକାରଙ୍କ ମୁଖକୁ ଚାହିଁ ବସିବା ଛଡ଼ା ଆଉ କ'ଣ କରିଥାନ୍ତେ ?

ମୁଖରେ ଲଗାମ – ବାକ୍ ସଂଯମ– gap one's mouth/ be silenced

.. ତା'ମୁଖରେ ତ ଲଗାମ ନାହିଁ, କିଏ ତା'କୁ ବୁଝେଇବ ।

ମୁଛ କାଟିଦେବା – ବାଜି ରଖିବା, ସର୍ତ୍ତଲଗାଇବା– to bet/ lay a wager

.. ତା'କୁ ଯଦି ନ ହରେଇଛି, ମୁଁ ମୁଛ କାଟିଦେବି ।

ମୁଠାରେ ରହିବା – ଆୟତ୍ତରେ ରହିବା– within one's control

.. ସେ ମୋ ମୁଠା ଭିତରେ ଅଛି ।

ମୁଣ୍ଡ ଖେଳାଇବା – ଚିନ୍ତା କରିବା– to think about

.. ତା'ଙ୍କ ବେପାରରେ ତମର ମୁଣ୍ଡ ଖେଳାଇବା ଅନୁଚିତ ।

ମୁଣ୍ଡ ଗୁଂଜିବା – ଆଶ୍ରୟ ନେବା– to take shelter

.. ବିଚରା ପିଲାଟାକୁ ମୁଣ୍ଡ ଗୁଂଜିବାକୁ ସ୍ଥାନ ମିଳିଲାନି ।

ମୁଣ୍ଡ ଉପରେ ଚଢ଼ିବା – ବେଶି ଗେହ୍ଲାହେବା– be very fond of/ unduly fondled

.. ପିଲାଟାକୁ ମୁଣ୍ଡ ଉପରେ ଚଢ଼ଉଥାଅ, ଫଳପାଇବ ।

ମୁଣ୍ଡ କାନ ଆଉଁସିବା– ହଇରାଣ ହେବା – to be helpless

ମୁଣ୍ଡ ଝାଳ ତୁଣ୍ଡରେ ମାରିବା – କଠିନ ପରିଶ୍ରମ କରି ଜୀବିକା ଅର୍ଜନ କରିବା – labour hard for survival

.. ମୁଣ୍ଡର ଝାଳ ତୁଣ୍ଡରେ ମାରୁ ମାରୁ ତା'ର ଦିନଯାଉଛି । ତମସଙ୍ଗେ କଥା ହେବ କେତେବେଳେ ?

ମୁଣ୍ଡକୁ ଉଠିବା – ମୁଣ୍ଡଭିତରେ ପଶିବା, ମୁଣ୍ଡକୁ ଛୁଟିବା– getting in to the head

.. ଯଦି କଥାଟା ତା'ଙ୍କ ମୁଣ୍ଡକୁ ଉଠିଲା, ସେ କାହାକୁ ଛାଡ଼ିବେନି ।

ମୁଣ୍ଡରେ ପଶିବା – ଭଲଭାବେ ବୁଝିପାରିବା– understanding clearly

.. ଆଉ ଭୁଲ ହେବନି । କଥାଟା ପୁଅ ମୁଣ୍ଡରେ ପଶିଛି ।

ମୁଣ୍ଡ ଟୁଙ୍ଗାରିବା – ରାଜିହେବା– to be agreed

.. ମୁଣ୍ଡ ଟୁଙ୍ଗାରିବା ପ୍ରକୃତି ଛାଡ଼ି ସିଧାସଳଖ କୁହ ।

ମୁଣ୍ଡ ଖାଇବା – ରାଣ ନିୟମ ଦେବା– to swear

.. ମୋ ମୁଣ୍ଡ ଖା, ଆଉ ତା'ଙ୍କ ଘର ମାଡ଼ିବୁନି ।

ମୁଣ୍ଡ ଟେକିବା – ଉନ୍ନତି କରିବା– to prosper/ improve

.. ଜନତା ମୁଣ୍ଡ ଟେକିଲେ ଦେଶର ଉନ୍ନତି ହେବ ।

ମୁଣ୍ଡ ଉପରେ ବସାଇବା – ଅଧିକ ସମ୍ମାନ ଦେବା, କର୍ତ୍ତୃତ୍ୱ ଜାହିର କରିବା– to give importance

.. କାହିଁକି ଅଯୋଗ୍ୟ ଲୋକଟାକୁ ମୁଣ୍ଡ ଉପରେ ବସାଉଛ ?

ମୁଣ୍ଡ ପୁରାଇବା – ଭାଗନେବା– to take part

.. ତା'ଙ୍କ ଝାମେଲାରେ ମୁଣ୍ଡ ପୁରାଇବା ଉଚିତ ନୁହେଁ ।

ମୁଣ୍ଡ ଟେକି ଛିଡ଼ାହେବା – ସମ୍ମାନର ସହ ବଂଚିବା– living with honour

.. ପାକିସ୍ଥାନରେ ହିନ୍ଦୁମାନେ ମୁଣ୍ଡଟେକି ଛିଡ଼ା ହେବା ସହଜ ନୁହେଁ ।

ମୁଣ୍ଡକୁ ବିଛା କାମୁଡ଼ିବା – ଚିନ୍ତାରେ ଘାରିହେବା– to be worried

.. କେମିତି ବାହାଘର କରିବ, ଏବେଠୁଁ ତା' ମୁଣ୍ଡକୁ ବିଛା କାମୁଡ଼ିଲାଣି ।

ମୁଣ୍ଡକୁ ଧରିବା – ମୁଣ୍ଡ ବ୍ୟଥା ଆରମ୍ଭହେବା– starting headache/ head-reeling

.. ତା' ମୁଣ୍ଡ ଧରିଛି, ସେ କିଛି କାମ କରିପାରୁନି ।

ମୁଣ୍ଡ ବାନ୍ଧିବା – କେଶବିନ୍ୟାସ କରିବା– the act of one's hair

.. ଝିଅଟାର ମୁଣ୍ଡକୁ ବାନ୍ଧିଦେ, ସେ ମେଳାକୁ ଯିବ ।

ମୁଣ୍ଡକୁ ହାତ ପାଇବା – ସକ୍ଷମ ହେବା– take care of oneself/ to be capable

.. ପିଲାଙ୍କ ମୁଣ୍ଡକୁ ହାତ ପାଇଗଲାଣି । ଆଉ ତା'ଙ୍କର ଅସୁବିଧା ନାହିଁ ।

ମୁଣ୍ଡରେ ହାତ ଦେଇ ବସିବା– କିଛି କରି ନପାରିବା– to be helpless

ସ୍ତ୍ରୀ ମଲାପରେ ବାବୁଙ୍କଣକ ମୁଣ୍ଡରେ ହାତ ଦେଇ ବସିଛନ୍ତି ।

ମୁଣ୍ଡରେ ବଜ୍ରପଡ଼ିବା – ବଡ଼ ବିପଦରେ ପଡ଼ିବା– facing a great calamity

.. ପିତାମାତାଙ୍କ ଦୁର୍ଘଟଣା ଖବରଟା ତା'ମୁଣ୍ଡରେ ବଜ୍ର ପଡ଼ିବା ଭଳି ହେଲା ।

ମୁଣ୍ଡବାଳ ଉପୁଡ଼ିବା – ଅଧିକ କଷ୍ଟ କରିବା– to do hard labour

.. ଚବିଶ ଘଣ୍ଟା ଖଟି ଖଟି ତା'ଙ୍କ ମୁଣ୍ଡବାଳ ଉପୁଡ଼ିଗଲାଣି ।

ମୁଣ୍ଡ ବଥେଇବା – ଚିନ୍ତା କରିବା, ବ୍ୟସ୍ତହେବା– to be worried

.. ତା'ଙ୍କ ଘରକଥା ନେଇ ତମର କାହିଁକି ମୁଣ୍ଡ ବଥଉଛି ?

ମୁଣ୍ଡ ଥଣ୍ଡା କରିବା – ସମ୍ଭାଳିନେବା, ପ୍ରକୃତିସ୍ଥ ହେବା– be normal/ natural/ come to senses

ଆଗ ମୁଣ୍ଡ ଥଣ୍ଡାକର, ତା'ପରେ ଯାହା କରିବ ।

ମୁଣ୍ଡ ନଥିବା – ବୁଦ୍ଧି ନଥିବା– referred to a person incapable of thinking

.. ତା'ର ନିଜର ତ ମୁଣ୍ଡ ନାହିଁ, ସେ ତମକୁ କ'ଣ କହିବ ?

ମୁଣ୍ଡ ପିଟିବା – କାନ୍ଦିବା– crying

.. ଯେତେ ମୁଣ୍ଡ ପିଟିଲେ ମା'କ'ଣ ଆଉ ଫେରି ଆସିବ ?

ମୁଣ୍ଡ ରହିବା – ପ୍ରାଣ ବଞ୍ଚାଇବା– one's survival

.. ମୁଣ୍ଡ ରହିଲେ ସତ କଥା କହିବି ।

ମୁଣ୍ଡ ଉପରେ – ଅତି ନିକଟରେ– very nearer

.. ପରୀକ୍ଷା ମୁଣ୍ଡଉପରେ । ପଢ଼ା ପଢ଼ି କର ।

ମୁତରେ ପୋଳୁହ ବୁହାଇବା – ବିନା କାରଣରେ ଧନ୍ଦିହେବା– grope in dark/ be perplexed

.. କ'ଣ ଦରକାର ଥିଲା ମୁତରେ ପୋଳୁହ ବୁହାଇବା ? ଏବେ ସମ୍ଭାଳ ।

ମୁତରେ ଦୀପ ଜାଳିବା – କମ୍ ଖର୍ଚ୍ଚରେ କାମ ଚଳେଇବା– manage with meagre income

.. ସେ ମୃତରେ ଦୀପ ଜାଳିବା ଲୋକ । ତା'ଙ୍କଠାରୁ ଅଧିକଟା କ'ଣ ଆଶା କରିବ ?

ମୁହଁଦେବା – ପ୍ରଶୟ ଦେବା– to give indulgence

.. ଏତେ ଛୋଟ ଅବସ୍ଥାରୁ ପିଲାଙ୍କୁ ମୁହଁ ଦିଅ ନାହିଁ ।

ମୁହଁ ମୋଡ଼ିବା<br>ମୁହଁ ଛିଞ୍ଚାଡ଼ିବା<br>ମୁହଁ ଛାଟିବା } – ଅବଜ୍ଞା କରିବା, ଅପମାନ କରିବା– to insult/ to neglect

.. ଗୁରୁଜନମାନଙ୍କ ଆଗରେ ମୁହଁ ମୋଡ଼ି କଥାବାର୍ତ୍ତା କରନି ।

ମୁହଁକୁ ଚାହିଁବା – ଆପଣେଇ ନେବା, ସମର୍ଥନ ଦେବା– give support/ take care

.. ମାମୁ ତା'ମୁହଁକୁ ନ ଚାହିଁଲେ ଆଉ କିଏ ଚାହିଁବ ।

ମୁହଁ ଶୁଖାଇବା – ମନଦୁଃଖ କରିବା– be aggrieved/ mentally broken down

.. ଫେଲ ହେବାରୁ ସେ ମୁହଁ ଶୁଖାଇଛି ।

ମୁହଁରେ ନିଆଁଦେବା – ଶବ ସତ୍କାର ବିଧି –rituals of burning a corpse

.. ବାପ ମୁହଁରେ ନିଆଁଦେବା ଅଧିକାର କେବଳ ବଡ଼ପୁଅର ।

ମୁହେଁ ମୁହେଁ ଶୁଣାଇବା – ସିଧା ସିଧା କହିବା– to talk directly/ hit directly

.. ମୁହେଁ ମୁହେଁ ତା'କୁ ଏମିତି ଶୁଣାଇଲେ, ଛାଡ଼ି ପଳାଇଲା ।

ମୁହଁ ସମ୍ଭାଳି କଥା କହିବା – ବୁଦ୍ଧି ବିଚାରି କଥାବାର୍ତ୍ତା କରିବା– talking to the point/ point out with justification

.. ମୁହଁ ସମ୍ଭାଳି କଥା ନ କହିଲେ ମାଡ଼ ଖାଇବା ସାରହେବ ।

ମୁହଁ ଉପରକୁ କରିବା – ଗର୍ବ କରିବା– to be proud of

.. ଚାକିରିଟା ପାଇଁ ସେ ମୁହଁ ଉପରକୁ କରି ଚାଲୁଛି ।

ମୁହଁ କଳା ପଡ଼ିବା – ଅନୁତାପ କରିବା– to repent/ to be aggrieved

.. ଝିଅର କୁକର୍ମ ପାଇଁ ତା'ଙ୍କ ମୁହଁ କଳା ପଡ଼ିଯାଇଛି ।

ମୁହଁ ଭାଂଗିବା – ଟାଣ ଭାଂଗିବା, ଗର୍ବ ନଷ୍ଟ କରିବା– make another eat the humble pie

.. ଜେଲ ଯିବାଠାରୁ ତା'ଙ୍କ ମୁହଁ ଭାଂଗି ଯାଇଛି ।

ମୁହଁ ମାରିବା – ଦେଖା କରିବା, ପଚାରିବା– to visit/ to meet

.. ଯାଉଛୁ ତ, ଭଉଣୀ ଘରେ ମୁହଁ ମାରି ଆସିବୁ ।

ମୁହଁ ବଢ଼ାଇବା – ଆକଟରେ ନରଖିବା– beyond control

.. ପିଲାଟି ଦିନରୁ ସେ ତା'ର ମୁହଁ ବଢ଼େଇ ଦେଇଛନ୍ତି ।

ମୁହଁ ବାନ୍ଧିବା – ଅଧିକ ଖାଇ ନ ପାରିବା, ନ କହି ପାରିବା– to eat to the saturating point

.. ଏ ମିଠା ମୁହଁ ବାନ୍ଧି ପକାଉଛି ।

ମୁହଁରେ ହଗିବା – କଥା ନ ଶୁଣିବା, ଅମାନିଆ ହେବା– the pampered doesn't pay any head

.. ଗେହ୍ଲା କରୁଥାଅ, ମୁହଁରେ ହଗିବ ।

ମୁହଁରେ ଲୁଗାଦେବା – ଲାଜରାହେବା– to be ashamed

.. ଯେମିତି କରିଛନ୍ତି, ମୁହଁରେ ଲୁଗାଦେବାଛଡ଼ା ଅନ୍ୟଗତି ନାହିଁ ।

ମୂଳରୁ ମାରିବା – ପ୍ରଥମରୁ ନଷ୍ଟ କରିଦେବା– to spoil at very beginning

.. ମୂଳରୁ ମାରିଦେଲେ ପଛକୁ କେହି କହିବାକୁ ନଥିବେ ।

ମୂଷା କାଟିବା – ମୂଷା କ୍ଷତି କରିବା– spoiled by mouse

.. ବହିପତ୍ରଯାକ ମୂଷା କାଟି ପକେଇଛି ।

ମୂଷା ପୁରେଇ ଢୋଲ ସିଲେଇ କରିବା – ଶତ୍ରୁକୁ ଘରେ ରଖି ପାଳିବା– to shelter devil

.. ମୂଷା ପୁରେଇ ଢୋଲ ସିଲେଇ କରୁଥା, ପଛରେ କାନ୍ଦିବୁନି ।

ମୂଲ ଲାଗିବା – ଶାରୀରିକ ପରିଶ୍ରମ କରିବା– do physical labour

.. ମୂଲ ଲାଗି ସେ ପେଟ ପୋଷନ୍ତି ।

ମେଘ ଧରିବା – ମେଘ ଘୋଟିବା– to be clouded

.. ପୂର୍ବ ଆକାଶରେ ଖଣ୍ଡେ ମେଘ ଧରିଛି, ବର୍ଷା ହେବ ।

ମେଘ ଭାଂଗିବା – ମେଘ ହଟିଯିବା– to be cloudless

.. ମେଘ ଭାଂଗିଯାଉ, ଘରକୁ ଯିବ ।

ମେଣ୍ଢା ଧୋଉ ଧୋଉ ନିର୍ବାଳ ହେବା – ଅପବ୍ୟୟ ଯୋଗୁ କାଙ୍ଗାଳ ହେବା– be beggar due to prodigality

.. ଯେମିତି ଦୁଇହାତରେ ଖର୍ଚ୍ଚ କରୁଛ, ମେଣ୍ଢା ଧୋଉ ଧୋଉ ନିର୍ବାଳ ହୋଇଯିବ ।

ମୋଟା ବୁଦ୍ଧିଆ – ବୋକା– foolish

.. ସେଇଟା ତ ମୋଟାବୁଦ୍ଧିଆ । ସେ କ'ଣ ତମକୁ ଶିଖାଇବ ?

ମୋଟା ମୋଟି କଥା – ସାରାଂଶ– summary/ on the whole/ total figure

.. ମୋଟା ମୋଟି କଥା ହେଲା, ଆମ ଗ୍ରାମରୁ ଦୁଇଜଣ ଛିଡ଼ିବେ ।

ମୋଟାମୋଟି – ସ୍ଥୂଳଭାବେ– after all

.. ମୋଟାମୋଟି ଭାବେ ଦେଖିଲେ ପ୍ରସ୍ତାବଟା ମନ୍ଦ ନୁହେଁ ।

# ଯ

ଯତ୍ନରୁ ରତ୍ନ ପ୍ରାପ୍ତି – କାର୍ଯ୍ୟ ଅନୁସାରେ ଫଳ, କଷ୍ଟରୁ କୃଷ୍ଣପ୍ରାପ୍ତି– as you sow, so shall you reap

.. ବେଳ ଥାଉଁ ଥାଉଁ ବୁଝିବିଚାରି କାମ କର । କାରଣ ଯତ୍ନରୁ ରତ୍ନ ପ୍ରାପ୍ତ ହୁଏ ।

ଯଦୁ ମଧୁ – ସାଧାରଣ ଲୋକ– common man/ordinary man

.. ଏ ସମସ୍ୟାର ସମାଧାନ ଯଦୁମଧୁ କିପରି କରିପାରିବେ ?

ଯନ୍ତାରେ ପଡ଼ିବା – ହରଡ଼ ଘଣାରେ ପଡ଼ିବା– to pass through grinding situation

.. ଏତେଦିନରେ ପୁଅ ଯନ୍ତାରେ ପଡ଼ିଛି, ଉଦ୍ଧାର ହେବା ମୁସ୍କିଲ ।

ଯଥା ତଥା କରି – ଯେ କୌଣସି ପ୍ରକାରେ– by hook or crook

.. ଯଥା ତଥା କରି ସେ ବାହାଘରଟା ବଢ଼େଇ ଦେଲେ ।

ଯତି ପଡ଼ିବା – ମେଳ ଖାଇବା– to bring together

.. ଶାସକ, ବିରୋଧୀ ଦଳଙ୍କର କେବେ ଯତି ପଡ଼ିଲାଣି, ନା' ପଡ଼ିବ !

ଯମଯନ୍ତ୍ରଣା– ଅତ୍ୟଧିକ କଷ୍ଟ – agonies of death

ଯମ ମୁହଁକୁ ଯିବା – ହାଣ ମୁହଁକୁ ଯିବା– endangered/ liked by death god

.. ଯିଏ ଯମ ମୁହଁକୁ ଯାଇଛି, ସେଠାରୁ ତା'କୁ ଫେରାଇ ଆଣିବା କଷ୍ଟ ।

ଯମ ମୁହଁରୁ ବର୍ତ୍ତିବା – ବିପଦ ଟଳିଯିବା– out of danger

.. ସେଠି ବାହାଘରଟା ଭାଂଗିଗଲାନି ଯେ, ସେ ଯମ ମୁହଁରୁ ବର୍ତ୍ତିଗଲେ ।

ଯକ୍ଷଧନ ଭୂତ ଖାଇବା – କୃପଣର ଧନ ବ୍ୟର୍ଥ ହେବା– the hidden treasure of the greedy being misspent

..ପେଟରୁ ପିଠିରୁ କାଟି ଯାହା ସେ ବଂଚେଇଥିଲେ, ଶେଷରେ କ'ଣ ହେଲା, ଯକ୍ଷଧନ ଭୂତ ଖାଇଲା ।

ଯା' ଇଚ୍ଛା ତା'ହା – ଅନ୍ୟାୟ, ଅସଂଗତ କଥା ବା କାର୍ଯ୍ୟ, ନିକୃଷ୍ଟମାନର– speaking nonsense/ illogical matter

.. ମୁଣ୍ଡକୁ ଭୂତ ଚଢ଼ିଛି ବୋଲି କ'ଣ ଯା' ଇଚ୍ଛା ତା'ହା କହିଯିବା ?

ଯାଚି କଲ୍ୟାଣ ମାଗି ଓଳଗି – ଅନାହୂତ ଭାବେ କାର୍ଯ୍ୟ କରିବା– to attend without invitation

.. ସେ ତା ତା'ଙ୍କ ବାହାଘରକୁ ତମକୁ ଡାକି ନାହାନ୍ତି, ଆଉ ତମେ ବରକନ୍ୟାଙ୍କୁ ଆର୍ଶୀବାଦ କରିବାକୁ ବାହାରିଛ ! ଯାଚି କଲ୍ୟାଣି ମାଗି ଓଳଗି କ'ଣ ପାଇଁ ?

ଯାଛାତା କାରବାର – ଅନୁଚିତ କାର୍ଯ୍ୟ– improper manner/ illogical happenings

.. ସେ ଦିନ ସଭାରେ ଯେମିତି ଯାଛାତା କାରବାର ହେଲା, ଆଉ କିଏ ଯିବ ଯେ !

ଯାତ୍ରା କରିବା – ଯାତ୍ରା / ନାଟକ ଅଭିନୀତ ହେବା– enactment of yatra/play

.. ଆଜି କି ଯାତ୍ରା କଲା ?

ଯାତ୍ରା ପଡ଼ିବା – ଯାତ୍ରା ପାର୍ଟି ଆସିବା– encamping of a yatra troupe

.. ଦୋଳକୁ ଭଲ ଯାତ୍ରା ପଡୁଛି ।

ଯାତ୍ରା ବଢ଼ିବା/ ଯାତ୍ରା ଭାଂଗିବା – ଯାତ୍ରା ସରିବା, ଯାତ୍ରା ଶେଷହେବା– end of show

.. ଯାତ୍ରା ଭାଂଗୁ ଭାଂଗୁ ଭୋର ହୋଇଯାଉଛି ।

ଯାତ୍ରା ଜମିବା – ଅଭିନୟ ଭଲ ହେବା– good performance of yatra

.. କାଲି ରାତିରେ ଯାତ୍ରାଟା ଭଲ ଜମିଗଲା ।

ଯାତ୍ରା ଦେଖା କଦଳି ବିକା – ଏକ ସମୟରେ ଦୁଇଟି କାମ କରିବା– do two works at one time

.. ବାଙ୍କି ଯାଇଥିଲି । ଖାତା ଦେଇ ଆସିଲି, ବନ୍ଧୁ ଦର୍ଶନ ହେଇଗଲା । ଯାତ୍ରା ଦେଖା କଦଳି ବିକା । ଭଲରେ ଭଲରେ ହେଇଗଲା ।

ଯାହାକୁ ଯିଏ – ବିଧିର ବିଧାନ– God's grace/ heaven's choice

.. ଯାହାକୁ ଯିଏ ବରାଦ ଅଛି, ତମେ ଚାହିଁଲେ କ'ଣ ଅଲଗା କରିପାରିବ ?

ଯାହାର ମନ ଯେଡ଼େ – ମନ ଘେନି ଫଳ– harvesting according to one's hope

.. କଥା ହେଲା, ଯାହାର ମନ ଯେଡ଼େ ! ନହଲେ ଏତେ ସୁଖ ତା'ଙ୍କୁ ମିଳିଥାନ୍ତା !

ଯାହା ମନ ଯାହାକୁ ରସିବ – ମନ ମାନିଯିବା– not to poke one's nose into other's choice

.. କାହିଁକି ସେମାନଙ୍କ ଭିତରେ ଝଗଡ଼ା କରିବ ? ଯାହା ମନ ଯାହାକୁ ରସିଲା, ଆମର କ'ଣ କହିବାର ଅଛି !

ଯାହା ହାଣ୍ଡିରେ ଚାଉଳ ପକେଇବା – ଯୁକ୍ତିଯୁକ୍ତତା ବିବେଚନା– adjudge one's reasonability

.. ତମେ ଚେଷ୍ଟାକରି ବାହାଘରଟା ଭାଂଗିପାରିଲ ? କଥାରେ ଅଛି ନା', ଯାହା ହାଣ୍ଡିରେ ଚାଉଳ ପକେଇଛି ।

ଯୁ ନ ପାଇବା – ସାହସ ନ କୁଲେଇବା– incapable/coward

..ଏ ପାହାଡ଼ ଚଢ଼ିବାକୁ ମୋ ଯୁ ନ ପାଉନି ।

ଯେଉଁ କୋଲପକୁ ଯେଉଁ କଞ୍ଚି – ଯାହାପାଇଁ ଯେ ଯୋଗ୍ୟ– suitable match

.. ସେ ଠିକ୍ ଶାସନ କରିପାରିବ । କାରଣ ଯେଉଁ କୋଲପକୁ ଯେଉଁ କଞ୍ଚି, ସେ ତା'ହା ଭଲଭାବେ ଜାଣନ୍ତି ।

ଯେଉଁ ଡାଳ ଧରିଲେ ଭଂଗିଲା – ସବୁଦିଗରୁ ବିଫଳ ହେବା– unsuccessful in every respect

.. ଯେଉଁ ଡାଳ ଧରିଲେ ଭଂଗିଲା । ଆତ୍ମହତ୍ୟା ଛଡ଼ା ତା'ଙ୍କର ଅନ୍ୟ ଉପାୟ ନଥିଲା ।

ଯେଡ଼େ ବାଉଁଶ ସେଡ଼େ ପୋଲ – ଆୟ ଅନୁସାରେ ବ୍ୟୟ– cut your coat according to your cloth

.. ଅଧିକ ଦରମା ପାଇଲେ କ'ଣ ହେବ, ଖର୍ଚ୍ଚ ବି ସେମିତି ହଉଛି, ଯେଡ଼େ ବାଉଁଷ ସେଡ଼େ ପୋଲ ।

ଯେଡ଼େ ପୋଥି ସେଡ଼େ ଡୋର – ରୋଜଗାର ଅନୁସାରେ ଖର୍ଚ୍ଚ– spend as per earning/ living from hand to mouth

.. ଯେଡ଼େ ପୋଥି ସେଡ଼େ ଡୋର, କୋଉଠୁ ଆଉ ବଳୁଛି ଯେ ତମକୁ ଦେବ !

ଯେଣେ ଇଚ୍ଛା ତେଣେ ଯିବା – ଉଦ୍ଦେଶ୍ୟହୀନ ଭାବେ ବୁଲିବା– to wander aimlessly

.. ଯେଣେ ଇଚ୍ଛା ତେଣେ ଯାଅ, କିନ୍ତୁ ସଂଧ୍ୟାବେଳକୁ ଘରକୁ ଫେରିବ ।

ଯେତିକି ଚୂନା ସେତିକି ପିଠା – ଆୟ ଦେଖି ବ୍ୟୟ କରିବା, ଆବଶ୍ୟକତା ଅନୁସାରେ କାର୍ଯ୍ୟ କରିବା– cut the coat according to cloth

.. କାହା କଥାରେ ସିଡ଼ି ଚଢନା, ବରଂ ଯେତିକି ଚୂନା ସେତିକି ପିଠା ।

ଯେ ଦେଶ ଯାଇ ସେ ଫଳ ଖାଇ – ସବୁ ପରିସ୍ଥିତିରେ ସମ୍ଭାଳି ନେବା– adjust in all circumstances

.. ତା'ଙ୍କର ସେଠି ଚଳିବାରେ ଅସୁବିଧା ହେବନି । କାରଣ ଯେ ଦେଶ ଯାଇ ସେ ଫଳ ଖାଇବାରେ ସେ ଓସ୍ତାଦ୍ ।

ଯେ ଯାହା ହାତରେ ଚଉଦ ପା – ଅଣାୟତ୍ତ ଅବସ୍ଥା– beyond control

ସେମାନେ କ'ଣ ଶୁଣିଲା ଅବସ୍ଥାରେ ଅଛନ୍ତି, ଯେ ଯାହା ହାତରେ ଚଉଦ ପା । କହିବ କାହାକୁ ଶୁଣିବ କିଏ !

ଯେସାକୁ ତେସା – ପରିସ୍ଥିତି ସହିତ ଖାପ ଖୁଆଇ ଚଳିବା, ଆଚାର ଅନୁସାରେ କାର୍ଯ୍ୟ– tit for tat

.. ତା'ର କିଛି ଅସୁବିଧା ହେବନି, ଯେସାକୁ ତେସା । ସେ ଠିକ୍ ଚଳିଯିବ ।

ଯୋଗୀ ଘରେ ଢିଙ୍କି – ଅସ୍ଥାନରେ ଜିନିଷ ଖୋଜିବା– search a thing in improper place

.. ଯୋଗୀ ଘରେ ଢିଙ୍କି ଖୋଜିଲେ କୋଉଠୁ ମିଳିବ ? ଯୋଉ ଜିନିଷ ଯୋଉଠି ମଳିବ ନା !

ଯୋଡ଼ାକୁ ଘୋଡ଼ା ସରି ନୁହେଁ – ସମୂହ ଶକ୍ତିର ବିଜୟ– to find strength in unity

.. ଦି'ଘରର ସଂପରି ଏକ ହୋଇଛି । ତ'ସାଙ୍ଗରେ କାହିଁକି ଲାଗିବ ? ଯୋଡ଼ାକୁ ଘୋଡ଼ା ସରି ହେଲାଣି ନା' ହେବ ?

ଯୋର ଯାର ମୂଲକ ତାହାର – ବାହୁବଳେ ବଳୀୟାନ, ଅର୍ଥବଳ– might is right/ monetary strength

.. ଆଜିକାଲି ଯୋର ଯାର ମୂଲକ ତାହାର । ଶାସକ ବିରୋଧିଦଳ କାହାକୁ କହିବ ? ଦୁହେଁ ଗୋଟିଏ ଗୋଷ୍ଠୀର ।

ଯୌବନେ ମର୍କଟୀ ରମ୍ଭା – ଯୌବନ ବର୍ଣ୍ଣ ବିଚାର କରେନି– youth turning the ugly into the beautiful

.. କାଳୀ ବୋଲି କ'ଣ କହୁଛ ? ଯୌବନେ ମର୍କଟୀ ରମ୍ଭା । ସେ ତ ନିଜେ ଦେଖିଚାହିଁ ବାହା ହୋଇଥିଲେ ।

## ର

ରକ୍ତ ଚାଉଳ ଚୋବାଇବା – ଅତ୍ୟଧିକ ରାଗିଯିବା– enraged with anger

.. ତମ ନାଁ ପଡ଼ିଲେ ସେ ରକ୍ତଚାଉଳ ଚୋବାଉଛି, କାହିଁକି ସେଠିକି ଯିବ ?

ରକ୍ତ ଗଙ୍ଗା ବୁହାଇବା – ପ୍ରଚୁର ରକ୍ତପାତ ଘଟାଇବା– shed blood

.. ଯାହା କଥାରେ ଛିଡ଼ିଯାଇଥାନ୍ତା, ସେଥିପାଇଁ ରକ୍ତ ଗଙ୍ଗା ବୁହାଇବା କ'ଣ ଦରକାର ଥିଲା ?

ରକ୍ତ ଗରମ ହେବା – ଅଧିକ ଉତ୍ତେଜିତ ହେବା– be excited too much

.. ଏମିତି ମିଛ କଥା ଶୁଣିଲେ ଯେ କୌଣସି ଲୋକର ରକ୍ତ ଗରମ ହେବ ।

ରକ୍ତ ଚଢ଼ି ଯିବା – ଅତ୍ୟଧିକ ରାଗିଯିବା – blind with anger

..ଆଉ କିଛି କୁହନି, ତା ମୁଣ୍ଡକୁ ରକ୍ତ ଚଢ଼ିଗଲାଣି ।

ରକ୍ତ ପାଣି କରିବା – ଅଧିକ ଖଟିବା ବା ପରିଶ୍ରମ କରିବା– labour hard physically

.. ରକ୍ତକୁ ପାଣି କରି ସେ ନିଜକୁ ନିଃଶେଷ କରିଦେଇଛି କାହାପାଇଁ ?

ରକ୍ତ ଶୁଖିଯିବା – ପ୍ରଚଣ୍ଡ ଭୟ ପାଇବା– to be frightened to death

.. ସାମନାରେ ଗୋଟାଏ ବାଘକୁ ଦେଖି ତା'ଙ୍କ ରକ୍ତ ଶୁଖିଗଲା ।

ରକ୍ତ ମାଂସର ଶରୀର – ଦୟାମାୟା କ୍ଷୁଧା ତୃଷାଯୁକ୍ତ ଶରୀର– to be of flesh and blood

.. ରକ୍ତମାଂସର ଶରୀର ନେଇ ସେ କେତେ ବା ଆଉ ସହିଥାନ୍ତା ?

ରକ୍ତାକ୍ଷରେ ଲେଖାହେବା – ଅତ୍ୟାଚାର ବିରୁଦ୍ଧରେ ରକ୍ତକ୍ଷୟୀ ସଂଗ୍ରାମର କାହାଣୀ ?– to remind the history of freedom movement

.. ସ୍ୱାଧୀନତାର ଶହୀଦମାନଙ୍କ କାହାଣୀ ଏ ଦେଶ ବୁକୁରେ ରକ୍ତାକ୍ଷରେ ଲେଖାହୋଇଛି ।

ରକ୍ତର ଟାଣ – ରକ୍ତ ସଂପର୍କୀୟ– blood relation

.. ରାକ୍ତର ଟାଣ ଥିବାରୁ ସେ ତା'କୁ ଲଢ଼େଇରେ ବଂଚେଇଲା

ରଗଡ଼ା ରଗଡ଼ି କରିବା – କଥା କଟାକଟି, ଦରକଷା କଷି– argument/ bargaining

.. କଥାଟାକୁ ସେ ଯେମିତି ରଗଡ଼ା ରଗଡ଼ି କଲେ, ମୁଣ୍ଡ ଟୁଙ୍ଗାରିବା ଛଡ଼ା ମୋର ଅନ୍ୟ ଉପାୟ ନଥିଲା ।

ରଗଡ଼ି ଦେବା – ଜବତ କରିବା– to smash someone/ to hit

.. ଏଥରକ ଏମିତି ତା'କୁ ରଗଡ଼ି ଦିଅ, ଯେମିତି କଥା କହିବାକୁ ଆଉ ସାହସ କରିବନି ।

ରଙ୍ଗ କାଢ଼ିବା – ଢଙ୍ଗ ଦେଖାଇହେବା– to make tensions

.. ଯେ ଯେମତି ରଙ୍ଗ କାଢୁଛି, ତା'କୁ ଆଦୌ ସାଙ୍ଗରେ ନେବା ଉଚିତ ନୁହଁ ।

ରଙ୍ଗଲିବାଜ – ନବଳିଆ– jester/ comedian

.. ତା'ର ରଙ୍ଗଲିବାଜ ଚେହେରା ଦେଖିଲେ ଯେ କୌଣସି ଲୋକ ନ ହସି ରହିପାରିବ ନାହିଁ ।

ରଙ୍କା ଗୋଙ୍କା – ଗୋଟିଏ ପ୍ରକୃତିର– obstinate/ stubborn

.. ରଙ୍କା ଗୋଙ୍କା ଯାହା ବୁଝିଥିବେ ସେଇଆ ।

ରଣଝଣ – ଅଧିକ ଟଙ୍କାପଇସାର ସୂଚନା– pocket full of money

.. ତାଙ୍କ ପକେଟ ରଣଝଣ ହଉଛି । ନିଶ୍ଚୟ କିଛି ମିଳିଯିବ, ମାଗିଦେଖ ।

ରଥ ଚଳେଇବା – ସଂସାର ଚଳାଇବା– maintain family

.. କୌଣସି ପ୍ରକାରେ ଦୁଃଖକଷ୍ଟେ ସେ ତା' ରଥ ଚଳେଇଛି ।

ରଫା କରିବା– ଆପୋଷ ମୀମାଂସା – compromise/ amicable settlement

ରବେଇ ଖବେଇ ହେବା – ଈର୍ଷା କରିବା– to be jealous/ envious

.. ପଡ଼ିଶାଘର ବୋହୂ ବହୁତଗୁଡ଼ାଏ ସୁନାଅଳଂକାର ଆଣିଥିବାରୁ ଆମ ଭାଉଜଙ୍କ ମନ ଖାଲି ରବେଇ ଖବେଇ ହଉଛି ।

ରସ ଭରିବା – ଜୀବନ୍ତ କରିବା, ଜୀବନ ଭରିବା– make alive/ to add spice

.. କାହାଣୀଟାରେ କିଛିଟା ରସ ଭରିଦିଅ, ଭଲ ଲାଗିବ ।

ରସହୀନ – ଶୁଷ୍କ, ନୀରସ– tasteless/ dry/ juiceless

.. ରସହୀନ କଥା କହି କାହିଁକି ତା' ମନରେ ଆଘାତ ଦେଉଛୁ ?

ରସାତଳକୁ ଯିବା – ପତନ ଘଟିବା– going astray/ attain failure

.. ତା'ଙ୍କ ମାନ ସମ୍ମାନ ସବୁ ରସାତଳକୁ ଗଲାଣି ।

ରାଉ ରାଉ ହେବା – ଚିଡ଼ି ଚିଡ଼ି ହେବା, ବିରକ୍ତ ହେବା– be displeased/ annoyed

.. ସେ ସେମିତି ସକାଳୁ ରାଉ ରାଉ ହେଉଛନ୍ତି ।

ରାଗରେ ଲାଲ ପଡ଼ିବା – ଭୀଷଣ ରାଗିଯିବା– be enraged/ burn with rage

.. କଥାଟା ଶୁଣି ସେ ରାଗରେ ଲାଲ ପଡ଼ିଗଲେ ।

ରାଗ ପରମ ଚଣ୍ଡାଳ – ହିତାହିତ ଜ୍ଞାନ ନ ରହିବା–blind with rage

.. ରାଗ ହେଉଛି ପରମ ଚଣ୍ଡାଳ, ସେଠି ସେ କ'ଣ ନାହିଁ କ'ଣ କରିବସିବ ।

ରାଜା ହରିଶ୍ଚନ୍ଦ୍ର – ସତ୍ୟବାଦୀ (ବ୍ୟଙ୍ଗ)– to make mock serious references to greatness

.. ଆଃ, ରାଜା ହରିଶ୍ଚନ୍ଦ୍ର ତ ! ସବୁ ସମାଧାନ କରିଦେବ !

ରାଜା ଘର କଥା – ବଡ଼ ଲୋକି ମନୋଭାବ– high handedness/ rich manner

.. ଆରେ ଭାଇ ତା'ଙ୍କର ରାଜାଘର କଥା, ଆଉଛି ନା ଯାଉଛି ।

ରାତିକୁ ଦିନ କରିବା – ଠକିବା, ବାହାସ୍ଫୁଟ ମାରିବା, ସତକୁ ମିଛ ମିଛକୁ ସତ କରିବା– to deceive

.. ସେ ହେଉଛି ରାତିକୁ ଦିନ କରିବା ଲୋକ । ତା' ସାଙ୍ଗରେ କ'ଣ ବେପାର କରିବ ?

ରାଣ୍ଡକୁ ଆମିଷ ଚିନ୍ତା– ଅଯଥା ମୁଣ୍ଡ ଖେଳାଇବା – poke one's nose into other's affairs

ରାଣ୍ଡିପୁଅ ଅନନ୍ତା – ଚାରି ଦଉଡ଼ିକଟା– worthless person/ stubborn

.. ସେ ତ ରାଣ୍ଡିପୁଅ ଅନନ୍ତା, ତା'କୁ ବୁଝେଇ କିଛି ଲାଭ ନାହିଁ ।

ରାବଣ ବଂଶ – ବଡ଼ ପରିବାର– large family

.. ସେ ରାବଣ ବଂଶକୁ ଯେତେ ଆସିବ ସେତେ ଅଘଟ ।

ରାମରାଜ୍ୟ – ଆଦର୍ଶ ସ୍ଥାନ ବା ଶାସନ, ଶାନ୍ତି ଶୃଙ୍ଖଳାଯୁକ୍ତ ରାଜ୍ୟ – ideal rule

.. କେବେ ରାମରାଜ୍ୟ ଆସିବ, ଆମ ଦୁଃଖ ହଟିବ !

ରାମରାବଣ ଯୁଦ୍ଧ – ପାପ ପୁଣ୍ୟର ଲଢ଼େଇ– fighting between virtue and vice

.. ଏ ଲଢ଼େଇ ବିରୋଧୀ ଆଉ ଶାସକ ଦଳର ନୁହେଁ, ଏହା ହଉଛି ରାମରାବଣ ଯୁଦ୍ଧ ।

ରାମଭକ୍ତ ହନୁମାନ – ଅତ୍ୟନ୍ତ ଅନୁରକ୍ତ ବ୍ୟକ୍ତି– very loyal

.. ସେ ରାମଭକ୍ତ ହନୁମାନ, ତା'କୁ ଆମପଟକୁ ଆଣିବା ସହଜ କଥା ନୁହଁ ।

ରାମ ଧୁଲାଇ – ପ୍ରଚଣ୍ଡ ମାଡ଼ପିଟ– to knock the wind out by soundly beating a person

.. ଡକାୟତଟାକୁ ଧରି ଗାଁଲୋକେ ବେଶ୍ ରାମଧୁଲେଇ କରିଛନ୍ତି ।

ରାମାନନ୍ଦୀ ଚିତା କାଟିବା– ଠକିବା – to cheat

ରାମା ଶ୍ୟାମା – ସାଧାରଣ –common man/public property

.. ଏଇଟ ତ ରାମାଶ୍ୟାମା ଘର ନୁହେଁ, ତମେ ଯାହା ମନଇଚ୍ଛା କରିଯିବ !

ରାହାଧରିବା – ପନ୍ଥାଧରିବା– follow a means

.. ଏ ଯାଏ ସେ କୌଣସି ରାହା ଧରି ପାରିନାହାନ୍ତି ।

ରାଶି ନକ୍ଷତ୍ର – ଚାଲିଚଳନ ସ୍ୱଭାବ– nature/behaviour/ code and conduct

.. ତା' ରାଶିନକ୍ଷତ୍ର ସହିତ ମୁଁ ଭଲଭାବେ ପରିଚିତ ।

ରାସ୍ତା ଦେଖେଇବା – ବିଦା କରିଦେବା– permit to go/ dismiss/ drive away

.. ସେ ତା'ଙ୍କୁ ରାସ୍ତା ଦେଖେଇ ଦେଇଛନ୍ତି । ଆଉ ଫେରିବେନି ।

ରାସ୍ତାରେ ବସେଇବା – ସର୍ବସ୍ୱାନ୍ତ ହେବା, ବିପନ୍ନ ହେବା– put someone in distress/ be scared

.. ମୁଁ ଯଦି ତା'କୁ ରାସ୍ତାରେ ନ ବସେଇଛି, ସେ ମତେ ଚିହ୍ନିବ ।

ରାସ୍ତା ଖର୍ଚ୍ଚ – ବାହାଘର ଶୋଭାଯାତ୍ରା ଖର୍ଚ୍ଚ– procession expenses of bridegroom

.. ବରର ରାସ୍ତାଖର୍ଚ୍ଚ ବାବଦକୁ ସେମାନେ କେତେ ଦଉଛନ୍ତି ?

ରାହୁର ଦଶା – ସଙ୍କଟଜନକ ଅବସ୍ଥା– critical stage/ bad luck

.. ତା'ଙ୍କୁ ଏଇନେ ରାହୁର ଦଶା ପଡ଼ିଛି । ଯାହା ଆସୁଛି ସବୁ ଚାଲିଯାଉଛି ।

ରୁକୁଣା ରଥ ଅଣଲେଉଟା – ଭୀଷ୍ମ ପ୍ରତୀଜ୍ଞା, ଅପରିବର୍ତ୍ତନୀୟ– unchangeable/ strong determination

.. ଯେ ଯାଇଛି ସେ କଦାପି ଫେରିବନି, ରୁକୁଣା ରଥ ଅଣଲେଉଟା ।

ରୁଟି ମାରିବା – ଆୟର ପଥ ବନ୍ଦ କରିବା– cut one's bread

.. ଗରିବ ଲୋକଟାର ରୁଟିମାରି କି ଯଶ ପାଇବ ?

ରୂଦ୍ର ମୂର୍ତ୍ତି ଧରିବା – ଅତିଶୟ ରାଗିଯିବା– blind with rage

.. ସେ ଯେମିତି ରୂଦ୍ରମୂର୍ତ୍ତି ଧରିଛନ୍ତି, ତା'ଙ୍କ ସାଙ୍ଗରେ କିଏ କଥା ହେବ ।

ରୂପା କବାଟକୁ ସୁନା ଶିକୁଳି – ପ୍ରାଚୁର୍ଯ୍ୟ, ସୁଖ ସମୃଦ୍ଧି– happiness and comfort/ milk and honey

.. ତା'ଙ୍କର ତ ରୂପା କବାଟକୁ ସୁନା ଶିକୁଳି । ତମେ କ'ଣ ତା'ଙ୍କୁ ରାସ୍ତାରେ ବସେଇବ ?

ରେ ରା କରି କଥାବାର୍ତ୍ତା କରିବା – ଗାଳି ଗୁଲଜ କରିବା– to abuse/ talk nonsense

.. ଭଦ୍ରଲୋକଙ୍କୁ ଏମିତି ରେ ରା କରି କଣ କଥାବାର୍ତ୍ତା କରୁଛ ?

ରୋଗ ଧରିବା – ମୁଖ୍ୟ କାରଣ ଖୋଜିବା – find out the real clue

.. ଏ ଗଣ୍ଡଗୋଳରେ ଅସଲ ରୋଗଧରିବା ହେଲା ଆମର ମୂଳ ଉଦ୍ଦେଶ୍ୟ ।

ରୋଗମାଡ଼ିବା – ରୋଗ ବ୍ୟାପିବା– spread out of discase

.. ଗାଁରେ ରୋଗ ଯେମିତି ମାଡ଼ିଲାଣି, କାହାକୁ ଛାଡ଼ିବନି ।

ରୋଗୀ ଦେଖିବା – ରୋଗୀକୁ ପରୀକ୍ଷା କରିବା– examining patient

.. ସେ ଯାହା କିଛି କରିଛନ୍ତି, ସବୁ ଏଇ ରୋଗୀ ଦେଖିବାରୁ ।

ରୋମ ଟାଙ୍କୁରି ଉଠିବା – ଶିହରଣ ଖେଳିଯିବା– trembling/ shivering

.. ଗୋଟାଏ ପରେ ଗୋଟାଏ ଯେମିତି ମାରିପକେଇଲେ, ସେ କଥା ଭାବିଲା ବେଳକୁ ମୋ ରୋମ ଟାଙ୍କୁରି ଉଠୁଛି ।

## ଶ

ଶକ୍ତ ଧକ୍କା – ଦାରୁଣ ଧକ୍କା– violent onset/ sudden mental agitation

.. ପିତାମାତାଙ୍କ ଅକାଳମୃତ୍ୟୁ ଥିଲା ତା'ଙ୍କ ପାଇଁ ଶକ୍ତ ଧକ୍କା ।

ଶକ୍ତ ହାତ – ବିଚକ୍ଷଣ ଲୋକ, ଉଚିତ ଲୋକ– ardent man/ proper man

.. ଆଉ କେହି ଉଡ଼େଇ ପାରିବେନି, ଏ ଥର ଟଙ୍କାପଇସା ଶକ୍ତ ହାତରେ ପଡ଼ିଛି ?

ଶକ୍ତି ଫେରିବା – ପୁଣି ଶକ୍ତିଶାଳୀ ହେବା, ପୁଣି ସତେଜ ହୋଇଉଠିବା– regain power/ going strong/ getting refreshed

.. ତିନିମାସ ଔଷଧ ଖାଇଲା ପରେ ଶକ୍ତି ଫେରିଆସିଲା ।

ଶକ୍ତିପୂଜା – ଦେବୀପୂଜା– worship of Goddess

.. ଏ ବର୍ଷ ଶକ୍ତିପୂଜା ବେଶ୍ ଆଡ଼ମ୍ବରରେ ହେଉଛି ।

ଶଗଡ଼ଗୁଳାରେ ବାଟଚାଲିବା – ପରମ୍ପରାର ଅନୁସରଣ– follow the tradition

.. କେତେଦିନ ଶଗଡ଼ଗୁଳାରେ ବାଟ ଚାଲିବ ? କିଛି ନୂଆ କର ।

ଶଗଡ଼ଯାଇ କିଆବୁଦାରେ – ଶୋଚନୀୟ ପରିଣତି– horrible ending/ awful situation

.. ଶଗଡ଼ଯାଇ କିଆବୁଦାରେ ହେଲାଣି, ଇଏ ପୁଣି ତା'ଙ୍କୁ ଧାର ମାଗୁଛି ।

ଶତ ମୁଖେ – ନାନା ଭାବେ– in many ways

.. ଶତ ମୁଖେ ନିନ୍ଦା ଶୁଣିବାର ଯୋଗ ତା'ଙ୍କର ଥିଲା ।

ଶତମୁଖ ହେବା – ପ୍ରଗଲ୍‌ଭ ହେବା– be talkative/ talk big

.. ସେ ଯେମିତି ଶତମୁଖ ହେଇ ଗପୁଛି ଇଣ୍ଟରଭିଉରେ କିଛି କରିପାରିବନି ।

ଶତ୍ରୁ ମୁଖେ ହରି – ଅସମ୍ଭବ କଥା– awkward situation/ unbelievable facts

.. ଶତ୍ରୁ ମୁଖେ ହରି ଶବ୍ଦ ମାନେ, ଘଟଣା ଭଲଭାବେ ପରୀକ୍ଷା କରି ଯାହା କରିବା କଥା କର ।

ଶନି ଦୃଷ୍ଟି/ ଶନିଦଶା – ଖରାପ ସମୟ, ଦୁର୍ଦ୍ଦଶା– bad time/ ill-luck/ adversity

.. ତା'ଙ୍କର ଏଇନେ ଶନିଦଶା ପଡ଼ିଛି । ଟଙ୍କା ପଇସା କିଛି ରହୁନି ।

ଶନି ଚଳିବା – ଅନିଷ୍ଟ ବା କ୍ଷତି ଆରମ୍ଭ ହେବା– suffer a loss

.. ଶନି ଚଳ୍ଛି, ସେଥିରୁ ସେ ସହଜେ ରକ୍ଷା ପାଇବନି ।

ଶଫରୀ ଫର ଫର ହେବା – ଦେଖେଇହବା– give one's self airs

.. କିଛି କୁହନି । ଶଫରୀ ଫର ଫର ହଉଚି, ହଉ । ବଳେ ତା'ଗୁଣ ଜଣାପଡ଼ିଯିବ ?

ଶବରୀ ପ୍ରତୀକ୍ଷା – ଦୀର୍ଘକାଳର ଏକନିଷ୍ଠ ପ୍ରତୀକ୍ଷା– waiting for a long time

.. ଦଶବର୍ଷ ପରେ ପୁଅ ଫେରିବାରୁ ତା'ଙ୍କ ଶବରୀ ପ୍ରତୀକ୍ଷାର ଅନ୍ତହେଲା ।

ଶର ମାରିବା – ଆଘାତ କରିବା, ଶିକାର କରିବା, ନିର୍ଭର କରିବା– to hurt/ to hunt

.. କେତେଦିନ ଅନ୍ୟକୁ ଶରମାରି ବଂଚିବ ?

ଶସ୍ତାରୁ ହାନସ୍ତା/ ଅବସ୍ଥା – ମୂଲ୍ୟ କଳନା କରି ନପାରି କ୍ଷତିଗ୍ରସ୍ତ ହେବା– to negotiate a trouble after choosing the cheap

.. ବୁଡ଼ିଗଲ ବୋଲି କାହିଁକି କହୁଛ ? ଶସ୍ତାରୁ ହାନସ୍ତା ବୋଲି କ'ଣ ଜାଣି ନଥିଲ ?

ଶଶୁର ଘରେ ଜ୍ୱାଇଁ – ଅବଜ୍ଞାର ପାତ୍ର– neglected/ insulted

.. ଶଶୁର ଘରେ ଜ୍ୱାଇଁ ଏତେ ଦିନ ରହିଲେ ଆଳୁସାରୁ ଖାଇବନି ତ ଆଉ କ'ଣ ଖାଇବ ?

ଶଲାସୁତରା – ଗୋପନ ବୁଝାମଣା– secret understanding

.. ତା'ଙ୍କ ଘରେ ପଶି କି ଶଲାସୁତରା କରୁଥିଲ ?

ଶାଗ ନ ସିଝିବା – ଅପାରଗ ହେବା– be incompetent

.. ତା'ଦେହି ଶାଗ ସିଝିବନି, କାହିଁକି ତା'କୁ କହିବ ?

ଶାଢ଼ୀକୁ ଲୋଭ ପେଡ଼ିକି ଲୋଭ – ଅତ୍ୟଧିକ କୃପଣ ସ୍ୱଭାବ– very close-fisted/ too much stingy nature

.. ସେ କି ସ୍କୁଲ କରିବ ? ତା'ର ତ ଶାଢ଼ୀକୁ ଲୋଭ ପେଡ଼ିକି ଲୋଭ ।

ଶାଳଗ୍ରାମର ଶୋଇବା ବସିବା ସମାନ – ନିର୍ବିକାର ଲୋକର ମନର ଅବସ୍ଥା– to stay unmoved in impediment

.. ଶାଳଗ୍ରାମର ଶୋଇବା ବସିବା ସମାନ, ତା'ଙ୍କୁ ଯେତେ ବୁଝେଇଲେ ସେ କ'ଣ ଆଉ ସଂସାର ଭିତରକୁ ଫେରିବେ ?

ଶି ଅକ୍ଷର ବିବର୍ଜିତ – ମୂର୍ଖ, ନିରକ୍ଷର– foolish/ illiterate/ ignorant

.. ସିଏ ତ ଶି ଅକ୍ଷର ବିବର୍ଜିତ, ସେ ପୁଣି ତମକୁ କି ବୁଦ୍ଧି ଦବ ?

ଶିଆଳ ଯୁକ୍ତି – ଅସମ୍ଭବ କଥା– absurd reason/ take argument

.. ଏ ଶିଆଳ ଯୁକ୍ତି ଛାଡ଼ି କିଛି କାମ ଧନ୍ଦା କର ।

ଶିକୁଳି ଛିଣ୍ଡାଇବା – ମାୟାରୁ ମୁକ୍ତ ହେବା– be free from earthly affairs

.. ସବୁ ଶିକୁଳି ଛିଣ୍ଡାଇ ସେ ସନ୍ୟାସ ଗ୍ରହଣ କଲେ ।

ଶିକୁଳି ଲଗାଇବା – ଦରଜା ବନ୍ଦ କରିବା, ବାଧାଦେବା– close the door/ dissuade

.. ଏମିତି ଶିକୁଳି ଲଗେଇଦିଅ, ସେ ଯେମିତି ଭିତରକୁ ଆସି ନ ପାରନ୍ତି !

ଶିକା ଛିଣ୍ଡିବା – ହଠାତ୍ ଭାଗ୍ୟ ଉଦୟ ହେବା– accidental gain/ God's grace

.. ତା'ର ଚାକିରୀ ପାଇବାଟା ବିରାଡ଼ି କପାଳକୁ ଶିକା ଛିଣ୍ଡିଲା ଭଳିଆ ହେଲା ।

ଶିଙ୍ଗରେ ମାଟି ତାଡ଼ିବା – ପରିଶ୍ରମ କରିବା– doing physical labour

.. ନିଜ ଶିଙ୍ଗରେ ସେ ମାଟି ତାଡ଼ିଛି, ପୁରସ୍କାର ପାଇବାଟା ତା'ର ହକ୍ ।

ଶିବ ନର୍ମାଲ୍ୟ – ଭୟ ଓ ଭକ୍ତି – strong belief

ଗୋସେଇଁଙ୍କ ସଂପତ୍ତିରେ ସେ ହାତ ଦେବନି । ସେଇଟା ତା'ଙ୍କ ପାଇଁ ଶିବ ନିର୍ମାଲ୍ୟ ।

ଶିବହୀନ ଯଜ୍ଞ – ପ୍ରଧାନ ବ୍ୟକ୍ତିକୁ ବାଦ୍‌ଦେଇ କାର୍ଯ୍ୟ କରିବା– to get the work done without the lynclipin

.. ଠିକଣା ବେଳକୁ ମନ୍ତ୍ରୀ ଅନୁପସ୍ଥିତ । ଏ ତ ଶିବହୀନ ଯଜ୍ଞ ।

ଶିବେଇ ସାନ୍ତରା ଢାଉଖିଆ – ଅର୍ଥ ନ ବୁଝି ଆଗେଇବା – to follow blindly

.. ସେ ତ ଶିବେଇ ସାନ୍ତରା ଭଳି ଢାଉଖାଉଛି, ସେ କି କାମ କରିବ ।

ଶିର୍ ଶିର୍ ହେବା – ମୃଦୁ କଂପନ (ଦେହର) – shivering

.. ଶୀତ ସକାଳରେ ଦେହଟା ଶିର୍ ଶିର୍ ହୋଇଯାଉଛି ।

ଶିରାରେ ଶିରାରେ – ଭିତରେ ଭିତରେ, ଗୁପ୍ତରେ– secretely/ internally

.. ସେ ଶିରାରେ ଶିରାରେ ବାଟ ଚଲିବା ଲୋକ, ତା'ଙ୍କୁ ଠକିବା ସହଜ ନୁହେଁ ।

ଶିରରେ ହାତଦେବା – ବୁଡିଯିବା, କ୍ଷତିଗ୍ରସ୍ତ ହେବା– cause a loss/ dumbfounded

.. ଜାହାଜ ବୁଡ଼ିଯିବା କଥା ଶୁଣି ସେ ଶିରରେ ହାତ ଦେଇ ବସିଛନ୍ତି ।

ଶିଶୁପାଳ ହେବା – ବ୍ୟର୍ଥହେବା– be frustrated/ baffled

.. ଏତେ କଷ୍ଟକରି କ'ଣ ପାଇଲ ? ଶିଶୁପାଳ ହେଇ ଫେରିଲ ।

ଶିକ୍ଷା ପାଇବା – ଦଣ୍ଡ ଭୋଗିବା – getting a lession/ being punished

.. ତା'ଙ୍କ ସହିତ ମିଳାମିଶାରୁ ସେ ଭଲକରି ଶିକ୍ଷା ପାଇଛନ୍ତି ।

ଶୁଆବସା – ଆଳସ୍ୟ– laziness/ idleness

.. ସାରା ଦିନଟା ତା'ର ଶୁଆବସା କରିବାରେ କଟିଗଲା ।

ଶୁଖିଲା ମୁହଁ – ବିଷର୍ଣ୍ଣ ମୁଖ– deserted look/ dejected face

.. ସକାଳୁ ଶୁଖିଲା ମୁହଁଟା ଦେଖିଲେ କାମ କରିବାକୁ ଇଚ୍ଛା ହୁଏନି ।

ଶୁଖୁଆ ମାଳ ବେକରେ ପକେଇ ବାବାଜୀ ହବା – ଭଣ୍ଡ ଧାର୍ମିକ– religious hypocrite

.. ସେ ତ ଶୁଖୁଆ ମାଳ ବେକରେ ପକେଇ ବାବାଜୀ ହବା ଲୋକ । ସେ ପୁଣି ତମକୁ କି ଉପଦେଶ ଦେବ ?

ଶୁଣାକଥା – ଗୁଜବ, ଉଡ଼ାକଥା– rumour/ fake story

.. ତମେ ଜୋର ଦେଇ କହିପାରିବନି ଯେ ଏଇଟା ଶୁଣାକଥା ।

ଶୁଣ୍ଢ ବାହାର କରିବା – ଲୋଭ କରିବା– long for/ be tempted

.. ତା'ଙ୍କ ଗାଡ଼ି ଦେଖି ତମେ କାହିଁକି ଶୁଣ୍ଢ ବାହାର କରୁଛ ?

ଶୁଣ୍ଢି ସାକ୍ଷୀ ମାତାଲ – ମନ୍ଦ ଲୋକ ମନ୍ଦ ଲୋକକୁ ସମର୍ଥନ ଦେବା– a devil supporting the other

.. ସେମାନେ ତ ଶୁଣ୍ଢି ସାକ୍ଷୀ ମାତାଲ । ଆଉ ଅଧିକଟା କ'ଣ ଆଶା କରୁଛ ?

ଶୁମ୍ଭ ନିଶୁମ୍ଭ ଯୁଦ୍ଧ – ଭୟଙ୍କର ଯୁଦ୍ଧ– terrible fighting

.. ସେଠି ତ ଶୁମ୍ଭ ନିଶୁମ୍ଭ ଯୁଦ୍ଧ ଚାଲିଛି । କାହିଁକି ସେ ପଟେ ଯାଉଛୁ ?

ଶୂନ୍ୟରେ ଘର କରିବା – ଅସମ୍ଭବ ଆଶା– futile dream/ absurd idea

.. ଶୂନ୍ୟରେ ଘର କରୁଥିଲେ, ଫଳ ପାଇଲେ ।

ଶେଷ କରିବା – ମାରି ପକାଇବା, ଧ୍ୱଂସ କରିବା– to finish/ to ruin

.. ଲୋକଟାକୁ ଶେଷ କରି କ'ଣ ପାଇଲ ?

ଶେଷ ହେବା – ଦରିଦ୍ର ହୋଇଯିବା– become poor/ be ruined

.. ଜୁଆ ଖେଳି ଖେଳି ସେ ଶେଷ ହୋଇଗଲେ ।

ଶ୍ମଶାନ ବୈରାଗ୍ୟ – ସାମୟିକ ବୈରାଗ୍ୟ– ascetic for the moment/ pioks cheat

.. ଏ ଶ୍ମଶାନ ବୈରାଗ୍ୟ ହଉଛି ଲୋକ ଦେଖାଣିଆ । କିଛିଦିନ ଗଲେ ଅସଲ ଚେହେରାଟା ସାମନାକୁ ଆସିଯିବ ।

ଶ୍ରାଦ୍ଧ କରିବା – ବେପରୁଆ ଖର୍ଚ୍ଚ କରିବା– spending money laviously

.. ତମେ ଯେମିତି ଟଙ୍କା ଶ୍ରାଦ୍ଧ କରୁଛ, ଶେଷରେ କାଙ୍ଗାଳ ହେଇଯିବ ।

ଶ୍ରୀ ଫେରିବା – ସୌଭାଗ୍ୟ ଉଦୟ ହେବା– regain prosperity/ dawning of good fortune

.. ଏତେଦିନ ପରେ ତା'ଙ୍କ କପାଳର ଶ୍ରୀ ଫେରିଲା ।

## ଷ

ଷଣ୍ଢର ଗୋବର – ଅପଦାର୍ଥଲୋକ– useless fellow/ good for nothing

.. ସେ ଲୋକଟା ଷଣ୍ଢର ଗୋବର, ସେ କ'ଣ କରିବ ?

ଷଣ୍ଢକୁ ଭାଗବତ – ଅଯୋଗ୍ୟ ଲୋକର ପ୍ରଶଂସା– praise to an unworthy person

.. କାହିଁକି ଷଣ୍ଢକୁ ଭାଗବତ ପଢ଼ାଉଛ ? ସେ କ'ଣଟା ବୁଝିବ ?

ଷଣ୍ଢ ମାର୍କା – ଜବରଦସ୍ତ ଚେହେରା– the most asserting robust personality

.. ମହିଳା ଜଣକ ଷଣ୍ଢମାର୍କା ଛୁଆଟା ଜନମ କରିଛି !

ଷଣ୍ଢ ଦୁହାଁଳ – ନିର୍ଲଜ ଘଟଣା– impudent matter/ shameless thing

.. ତମର ବୋଧେ କିଛି କାମ ନାହିଁ, ନଇଲେ ଷଣ୍ଢ ଦୁହାଁଳ ପଡ଼ିଥାନ୍ତା !

ଷଣ୍ଢ ବୋଝ ଷଣ୍ଢ ବୋହିବା – ଅନ୍ୟର ଦାୟିତ୍ୱ ଦେଖି ଡରିଯିବା– to shift responsibility

.. ଷଣ୍ଢ ବୋଝ ଷଣ୍ଢ ବୋହୁଛି । ତମ ମୁଣ୍ଡ କାହିଁକି ବଥଉଛି ?

ଷାଠିଏ ମହଣ ଘିଅ ପୋଡ଼ା ହେବ ନା' ରାଧା ନାଚିବ – ଅସାର ପରିକଳ୍ପନା– useless thought

.. କାହିଁକି ସେ କଥାରେ ମଥା ଗଳାଉଛ ? ଷାଠିଏ ମହଣ ଘିଅ ପୋଡ଼ା ହେବ ନା' ରାଧା ନାଚିବ !

ଷୋଳ ଅଣା – ଶତକଡ଼ା ଶହେଭାଗ, ପୂରାପୂରି– hundred percent/ whole

.. ସେ ଯାହା କହୁଛି ଷୋଳ ଅଣା ଠିକ୍ ।

ଷୋଳ କଳା – ସବୁ ଜାଣିଥିବା ଲୋକ– omniscient/ all-knowing

.. ସେ ଷୋଳ କଳାରେ ପରିପୂର୍ଣ୍ଣ, ନିଶ୍ଚୟ ତମକୁ ସାହାଯ୍ୟ କରିବ ।

ଷୋଳ ଶିରା ଦୁହିଁ ହୋଇଯିବା – କଠିନ ପରିଶ୍ରମ କରିବା– labour hard

.. ଖରାତରାରେ କାମକଲେ ଷୋଳଶିରା ଦୁହି ହେବନି ତ ଆଉ କ'ଣ ହେବ ?

## ସ

ସଜବାଜ –ପ୍ରସ୍ତୁତ – get ready/ be prepared

.. ଘରକୁ ଯିବାକୁ ସେ ସଜବାଜ ହେଲେ ।

ସଜମାଛରେ ପୋକ ପକାଇବା – ନିନ୍ଦା କରିବା– to censure/matter of reproach

.. ଅରେ ଭାଇ ସେ ସଜମାଛରେ ପୋକ ପକାଇବା ଲୋକ, ତା'ଙ୍କୁ କ'ଣ ବିଶ୍ୱାସ କରିବ ?

ସଜାଗ ଘୁମ – ପତଳା ନିଦ– light sleep

.. କଥାବାର୍ତ୍ତା କରନି, ତା' ସଜାଗ ଘୁମ ଭାଂଗିଯିବ ।

ସଟା ବଟା କରି – କୌଣସି ପ୍ରକାରେ– any how/ in any way
.. ସଟା ବଟା କରି ସେ ସଂସାର ଚଳଉଛନ୍ତି ।
ସଡ଼କ ପଡ଼ିବା – ଲମ୍ବିବା, ବ୍ୟାପିବା– spread over/ lengthen
.. ୨୦ କିଲୋମିଟର ଯାଏ ଜଗନ୍ନାଥ ସଡ଼କ ପଡ଼ିଛି ।
ସନ୍ଧ୍ୟା କରିବା – ଛଳନା କରିବା– to pretend/ pretext/ deceive
.. କାହିଁକି ସନ୍ଧ୍ୟା କରୁଛ ? ଖୋଲି କରି କୁହ ।
ସଂଚିଥିଲେ କପା ମଂଚିବି କଉଡ଼ି – ଆବାଶ୍ୟକ ସ୍ଥଳେ କାମରେ ଆସିବା– a use in necessity
.. ସେଇଟା କିଛି ଖରାପ ଅଭ୍ୟାସ ନୁହେଁ, ସଂଚିଥିଲେ କପା ମଂଚିବି କଉଡ଼ି ।
ସପ୍ତମରେ ଚଢ଼ିବା – ଅତିଶୟ ରାଗିଯିବା, ଉତ୍ତେଜିତ ହେବା– to be excited/ ernaged with anger
.. ଏତେ ସବୁ ଅନ୍ୟାୟ ଦେଖିଲେ ଯେ କୌଣସି ଲୋକର ରାଗ ସପ୍ତମରେ ଚଢ଼ିଯିବ ।
ସମୟ କାଟିବା – କାଳ ବିତାଇବା– killing the time/ passing time
.. ଅବସର ପରେ କୌଣସି ପ୍ରକାରେ ତା'ଙ୍କ ସମୟ କଟି ଯାଉଛି ।
ସମୟ ଦେଖିବା – ସୁଯୋଗ ଦେଖି– to wingout in the opportune moment
.. ସମୟ ଦେଖି ସେ ଉଡ଼ନ ଛୁ ମାରିଲେ ।
ସମୟ ହେବା – ଶେଷ ମୁହୂର୍ତ୍ତ ପାଖେଇ ଆସିବା, ଠିକ୍ ସମୟ– nearer to heaven/ right time
.. ତା'ଙ୍କ ସମୟ ହେଇଗଲାଣି, ନିଶ୍ଚୟ ଖସିଯିବେ ।
ସମୁଦ୍ରକୁ ଶଙ୍ଖେ ପାଣି – ନଗଣ୍ୟ– insignificant
.. ଯେତିକି ଖାଦ୍ୟ ଦିଆଯାଉଛି ତା'ହା ସମୁଦ୍ରକୁ ଶଙ୍ଖେ ପାଣି ।
ସମୁଦ୍ରକୁ ପାଣି ବରଷା – ଅନାବଶ୍ୟକ ଦାନ– to carry coal to new castle
..ଯେଉଁଠି ଦବା କଥା ଦିଅ, ଆଉ ସମୁଦ୍ରକୁ ପାଣି ବରଷା କଲେ କ'ଣ ହେବ ?
ସରିହେବା – ସମକକ୍ଷ ହେବା– referred to one's lower status
.. ସିଏ କୋଉଠୁ ତା'ଙ୍କ ସରିହେଇ ପାରିବ ?
ସର୍ଦ୍ଦି ଧରିବା – ଥଣ୍ଡା ଆକ୍ରମଣ କରିବା– catching cold
.. ତା'ଙ୍କୁ ଏମିତି ସର୍ଦ୍ଦି ଧରିଛି ଯେ ନାକ କାନ ଫିଟୁନି ।
ସବାଖିଆଙ୍କ ଉଆ ଉଷୁନା – କିଛି ବାରଣ ନ ମାନିବା– no holds barred
.. ସବାଖିଆକୁ ପୁଣି ଉଆ ଉଷୁନା ପଚାରୁଛ ? ସେମାନେ ସବୁ ହଜମ କଲାବାଲା ।
ସଭା ବସିବା – ସଭା ଆରମ୍ଭ ହେବା– to conference
..ସଭା ବସୁ ବସୁ ସାତଟା ହେଇଗଲା ।

ସଭା ଭାଂଗିବା – ସଭା ଶେଷହେବା– to terminate the conference

..କାହିଁକି ଯାଉଛ ? ସଭା ଭାଂଗିବା ଉପରେ ।

ସଂସାର ଚଳେଇବା – ଘର ଚଳେଇବା, ଘରର ସବୁକାମ କରିବା– manage the family

..ସଂସାର ଚଳେଇବା ପାଇଁ କ'ଣ ମୁଁ ଏକା ଠିକା ନେଇଛି ?

ସଂସାର କରିବା – ଗୃହସ୍ଥ ଧର୍ମ ପାଳିବା– getting married

..ଦଶବର୍ଷ ବୁଲିଲା ପରେ ଏବେ ସେ ସଂସାର କରିଛନ୍ତି ।

ସାକ୍ଷୀଗୋପାଳ – ସବୁ ଦେଖି ଯେ ନିଷ୍କ୍ରିୟ ରହେ– to stand a mute onlooker

.. ଆଖି ଆଗରେ ହତ୍ୟାକାଣ୍ଡ ଘଟିଗଲା । ସାକ୍ଷୀଗୋପାଳ ଭଳିଆ ସେ ସବୁ ଦେଖିଲେ, ପଦୁଟିଏ ବି କହିଲେନି ।

ସାଜ ହଉ ହଉ ଦୋଳ ଯାତ୍ରା ଶେଷ – ପ୍ରସ୍ତୁତି ପାଇଁ ବହୁତ ସମୟ ନେବା, ଅତ୍ୟଧିକ ଡେରି– take much time to get ready

.. ସାଜ ହଉ ହଉ ଦୋଳ ଯାତ୍ରା ଶେଷ, ଯିବ କେତେବେଳେ ?

ସାଜସରଂଜାମ – ସଜାଇବାର ଉପକରଣ, ପୋଷାକ ପତ୍ର, ଉପକରଣ– apparel/ items/ apparatus

.. ଏତେ ଇଲେକ୍ଟ୍ରିକ୍ ସାଜ ସରଂଜାମ ଘରେ ଜମାକଲେ ଶୋଇବ କେଉଁଠି ?

ସାତ କାଣ୍ଡ ରାମାୟଣ – ବହୁତ ବଡ଼ ବ୍ୟାପାର– unfathomable/ too big

.. ଛୋଟ ଘଟଣାଟାକୁ ନେଇ ସାତ କାଣ୍ଡ ରାମାୟଣ କରେଇବା କ'ଣ ଦରକାର ଥିଲା ?

ସାତ କାହାଣ – ପ୍ରଚୁର ପରିମାଣ, ବଡ଼ କରି– elaborately/ plentily

.. ରାମ ତା' ଦୁଃଖ ବିଷୟକୁ ସାତ କାହାଣ କରି ଶୁଣେଇବାକୁ ଲାଗିଲା ।

ସାତ ଖୁଣ ମାଫ – ଅନୁଚିତ ପ୍ରଶୟ, ଅନ୍ୟାୟ କରି ମଧ୍ୟ ଛାଡ଼ ପାଇବା– to extend over indulgence

.. ସବ ଦୋଷ ତ ମୋର, ତମକୁ ତ ସାତଖୁଣ ମାଫ୍ !

ସାତ ଘାଟରେ ପାଣି ପିଇବା – ହଇରାଣ ହେବା, ଅପଦସ୍ତ ହେବା, ଘୁରି ଘୁରି ଫେରିବା– to be insulted/ slighted

.. ଝିଅ ବାହା ଦେବାକୁ ଯାଇ ସେ ସାତ ଘାଟରେ ପାଣି ପିଇଛନ୍ତି ।

ସାତ ପୁରୁଷର ଭିଟା ମାଟି – ପିତୃ ପୁରଷର ଭିଟା ମାଟି– ancestral land

.. ସାତପୁରୁଷର ଭିଟାମାଟିକୁ କେଇଟା ଟଙ୍କାରେ ବିକିଦେଲ ?

ସାତ ପର – ଅସମ୍ଭବ ଦୂରତା– insignificant difference

.. ଦି' ପରିବାର ତ ସାତପର । କେମିତି ମିଶିବେ ?

ସାତପର କରିବା – ପୁରାପୁରି ସଂପର୍କ ତୁଟାଇବା– cut off relation

.. ଘରୁ ଗୋଡ଼ କାଢ଼ିବାକୁ ପିଲାଟାକୁ ସେ ସାତପର କରିଦେଲେ ।

ସାତ ସତର ଘର – ବହୁତ ଲୋକଙ୍କ ଭିଡ଼, ନାନା ଆୟୋଜନ– a medely of families

.. ମୋର ତ ସାତସତରରେ ଘର, ମୁଁ କାହାକୁ କରିବି ପର ?

ସାଧ ମେଣ୍ଟିବା – ଇଛା ପୂର୍ଣ୍ଣ ହେବା– one's desire be fulfilled

.. ପୁଅଟିଏ ହେବାପରେ ତା'ଙ୍କର ଦଶ ବର୍ଷର ସାଧ ମେଣ୍ଟିଲା ।

ସାପ ମରିବନି କି ବାଡ଼ି ଭାଙ୍ଗିବନି – ବିନା କ୍ଷତିରେ କାର୍ଯ୍ୟ ସଂପନ୍ନ ହେବା, ଦୁଇପଟକୁ ସୁହାଇଲା ଭଳିଆ କଥା– to suit both the sides

.. ସାପ ମରିବନି କି ବାଡ଼ି ଭାଂଗିବନି, ଏ ନୀତି ଛାଡ଼ । ଜଣକୁ ସମର୍ଥନ କର ।

ସାରୁ ଭିତରେ ମାରୁ – ଭଲ ଭିତରେ ଭେଲ– the canker in the flower

..ଏତେ ବିଳମ୍ବରେ ଜଣାପଡ଼ିଲା, ସେ ସାରୁ ଭିତରେ ମାରୁ ।

ସାରୁ ଖୋଳୁ ଖୋଳୁ ମହାଦେବ ବାହାରିବା – ଅଜ୍ଞାତ ଗୁରୁତର ତଥ୍ୟ ଜଣାପଡ଼ିବା– to discover the root

.. କାହିଁକି ସେଥିରେ ମାତିଛ ? ସାରୁ ଖୋଳୁ ଖୋଳୁ ମହାଦେବ ବାହାରିବ, ସମ୍ଭାଳି ପାରିବ ?

ସିଧା ଆଙ୍ଗୁଠିରେ ଘିଅ ନ ଉଠିବା – ବିନା ଆୟାସରେ କାର୍ଯ୍ୟସିଦ୍ଧି ନ ହେବା– no success without direct involvement

.. ସିଧା ଆଙ୍ଗୁଠିରେ ଘିଅ ଉଠିଲାଣି ନା' ଉଠିବ ! ତା'କୁ ଉତ୍ତମ ମଧ୍ୟମ ଦରକାର ।

ସୁଅ ମୁହଁର ପତର – ନିଃସହାୟ ଅବସ୍ଥା– helpless condition

.. ମହାବାତ୍ୟାବେଳେ ଲୋକେ ସୁଅ ମୁହଁରେ ପତର ଭଳି ଛଟ ପଟ ହେଇ ମଲେ ।

ସୁଧ ଅସୁଲ କରିବା – ପ୍ରତିଶୋଧ ନେବା– take revenge

.. ପୁରୁଣା ଅପମାନର କଡ଼ାଗଣ୍ଡା ସୁଧ ସେ ଅସୁଲ କଲେ ।

ସୁନା ଚାନ୍ଦ – ଅତି ଆଦରର ଧନ– darling/ most favourite

.. ଚାକିରୀ ପାଇଲେନି ଯେ ସୁନାର ଚାନ୍ଦ ହାତରେ ପାଇଛନ୍ତି ।

ସୁନା ସଂସାର – ସୁଖ ସମୃଦ୍ଧିଭରା ସଂସାର– happy and prosperous life

.. ତା'ଙ୍କ ସୁନା ସଂସାରରେ କାହିଁକି ଝଡ଼ ସୃଷ୍ଟି କରୁଛ ?

ସୁନା ହରିଣ – ଦୁର୍ଲ୍ଲଭ ବସ୍ତୁ– unwanted thing/ rare thing

.. ସୁନାର ହରିଣ ପଛରେ ଦୌଡ଼ିଲେ ଶୋଷ ମେଣ୍ଟିବନି ।

ସୁର ମିଳାଇବା – ଗୋଟିଏ ପ୍ରକାର କଥା କହିବା– follow others blindly

.. ଅନ୍ୟ ସାଙ୍ଗରେ ସୁର ମିଳାଇବା ପ୍ରକୃତି ଛାଡ଼ି ନିଜେ କିଛି କୁହ ।

ସୃଷ୍ଟି ଛଡ଼ା – ପୁରାପୁରି ଅଲଗା, ଅଦ୍‌ଭୂତ– absurd/ unusual/ odd

.. ଏମତି ସୃଷ୍ଟିଛଡ଼ା ଲୋକକୁ ନେଇ କିଏ ସଂସାର କରିବ ?

ସ୍ୱପ୍ନ ରାଜ୍ୟ – ପରମ ଆକାଙ୍‌କ୍ଷିତ ଦେଶ– cherished land/ world of imagination

.. ସେ ସ୍ୱପ୍ନ ରାଜ୍ୟରେ ଘୂରିବୁଲୁଥିଲେ ।

ସ୍ୱର୍ଗ ହାତରେ ପାଇବା – ହଠାତ୍ ଦୁର୍ଲ୍ଲଭ ଜିନିଷ ପାଇବାର ଆନନ୍ଦ– joy over a rare matter

.. ଆଜିକାଲି ଯୁଗରେ ଚାକିରୀଟିଏ ପାଇବା ଅର୍ଥ ସ୍ୱର୍ଗ ହାତରେ ପାଇବା ।

ସ୍ୱର୍ଗକୁ ହାତ ବଢ଼ାଇବା – ଦୁର୍ଲ୍ଲଭ ବସ୍ତୁ ପ୍ରତି ହାତ ବଢ଼ାଇବା– aspire for an absurd thing

.. ତୋର ପ୍ରଧାନ ମନ୍ତ୍ରୀ ହେବା ଆଶାଟା ସ୍ୱର୍ଗକୁ ହାତ ବଢ଼ାଇବା ସଙ୍ଗେ ସମାନ ।

ସ୍ୱର୍ଗକୁ ବତୀ ଦେବା – ବଂଶ ରକ୍ଷା କରିବା– to save the family tree

.. ସ୍ୱର୍ଗକୁ ବତୀ ଦେବା ପାଇଁ ତା'ଙ୍କର ଆଉ କିଏ ଅଛି ?

ସ୍ୱର୍ଗରୁ ତୋଳି ଆଣିବା – ମନରୁ ଗଢ଼ି କହିବା– ficititious words

.. ସେ ଯେମିତି ସ୍ୱର୍ଗରୁ ତୋଳି ଆଣିଲା ଭଳିଆ କଥାବାର୍ତ୍ତା କରୁଛି ।

ସ୍ୱାହା ସ୍ୱାହା କରିବା – ନଷ୍ଟ କରିବା– waste of wealth/ to spend away

.. ବାପର କଷ୍ଟ ଅର୍ଜିତ ଧନକୁ ପିଲାଏ ସ୍ୱାହା ସ୍ୱାହା କରି ଦେଉଥିଲେ ।

## ହ

ହଇଜା ଧରିବା/ ହଇଜା ଲାଗିବା – ହଇଜାରେ ଆକ୍ରାନ୍ତ ହେବା– attacked of Cholera

.. କି ହଇଜା ଧରିଲା, ଗାଁଟା ପୁରାପୁରି ସଫା ।

ହଇଜା ରହିବା – ହଇଜା ବନ୍ଦହେବା– eradication of Cholera

.. ହଇଜା ରହିଗଲାଣି, ସମସ୍ତେ ଗାଁକୁ ଫେରିଚାଲ ।

ହ'କୁ ନ' କରିବା – ସତ୍ୟକୁ ମିଥ୍ୟା ବୋଲି କହିବା– to turn a truth into lie

.. ତା'କୁ କ'ଣ ବିଶ୍ୱାସ କରୁଛ ? ସେ ହ'କୁ ନ' କହିଲା ଲୋକ ।

ହଗିବନି କି ବାଟ ଛାଡ଼ିବନି – ଆବୁରି ବସି କିଛି ନ କରିବା, ନିଷ୍ପତ୍ତି ନେଇ ନ ପାରିବା– taking no decision/not to give the way

.. ତା'ର ପ୍ରକୃତି ହଉଛି ନିଜେ ହଟିବନି କି କାହାରିକୁ ବାଟ ଛାଡ଼ିବନି ।

ହଜମ କରିବା – ଆତ୍ମସାତ୍ କରିବା– to misappropriate

.. ବାବୁଜୀଙ୍କ ଧନ ହଜମ କରିବାଟା ସହଜ ନୁହେଁ ।

ହଜିଲା ବଳଦ ଖୋଜିଲା ଠେଇଁ – କାର୍ଯ୍ୟବେଳେ ଉପସ୍ଥିତ ହେବା– present in need

.. କେତେ ମୁଁ ଧନ୍ଦି ହେଲିଣି, ଦେଖିଲା ବେଳକୁ ହଜିଲା ବଳଦ ଖୋଜିଲା ଠେଇଁ ।

ହଡ଼ାର ବେଦନା କାଉ କି ବୁଝିବ – ଜଣେ ଅନ୍ୟଜଣକର କଷ୍ଟ ବୁଝି ନ ପାରିବା– one can't understand other's pain

.. ରଜା କେବଳ ନେଇ ପାରନ୍ତି, କୋଉଠୁ ଆସୁଛି ହଡ଼ାର ବେଦନା କାଉ କେମିତି ବୁଝିବ ?

ହରଡ଼ ଘଣାରେ ପଡ଼ିବା – ବଡ଼ ବିପଦରେ ପଡ଼ିବା– put into a great trouble

.. ନିଜ କୁକାମ ପାଇଁ ସେ ହରଡ଼ଘଣାରେ ପଡ଼ିଛି ।

ହରିବୋଲ ପକେଇବା – ସମାପ୍ତି ଘୋଷଣା କରିବା– make a finishing touch

.. ଏଥର ହରିବୋଲ ପକେଇ ସମସ୍ତେ ଉଠ ।

ହରିବୋଲିଆ – ଗୋଳମାଳିଆ ଲୋକ– disturbing nature/ tumultous affair

.. ଆରେ ସେ ଲୋକଟା ତ ହରିବୋଲିଆ । ତା'କୁ କାହିଁକି ଘରେ ପୂରାଉଛୁ ?

ହରିହର ଆତ୍ମା – ଅଚ୍ଛେଦ୍ୟ ସଂପର୍କ– the unbreakable relationship

.. ସେ ଦୁହିଙ୍କର ହରିହର ଆତ୍ମା । ସେମାନଙ୍କୁ ଅଲଗାକରିବା ଅସମ୍ଭବ ।

ହସରେ ଉଡ଼େଇବା – ବେଖାତିର କରିବା– to disobey/ disregard

.. ନେତାଙ୍କ କଥାକୁ ଲୋକେ ହସରେ ଉଡ଼େଇ ଦେଲେ ।

ହଲିଲା ପାଣିକୁ ଗୋଡ଼ ନ ବଢ଼ାଇବା – ଗଣ୍ଡଗୋଳରେ ନ ପଶିବା – taking no pain/ dislike disturbance

.. ସେ କେବେ ହଲିଲା ପାଣିକୁ ଗୋଡ଼ ବଢ଼ାଇବେନି । ତା'ଙ୍କୁ କାହିଁକି କରିବାକୁ କହୁଛ ?

ହାଉଆ କରିବା – ବାହା ସ୍ଫୋଟ ମାରିବା– giving air/ boasting

.. କାହିଁକି ଏତେ ହାଉଆ କରୁଛ ? ଭାବିଛ ନିର୍ବାଚନ ଜିତିଯିବ ?

ହାଉଆ ଖାଇବା – ଉପାସରେ ରହିବା– to fast/ abstain from food

.. ଟଙ୍କା ପଇସା ତ ସରିଲା, ଏଣିକି ଘରେ ବସି ହାଉଆ ଖାଅ ।

ହାଉଆ ହେବା – ଅଦୃଶ୍ୟ ହେବା– be vanished

.. ସମସ୍ତଙ୍କ ଆଗରେ ଲୋକଟା କ'ଣ ହାଉଆ ହେଇଗଲା ?

ହାଟ କରିବା – ପ୍ରଘଟ କରିବା– publicising/ propagating

.. ଘର କଥା ହାଟ କରିବା ଠିକ୍ ନୁହେଁ ।

ହାଟରେ ବ୍ରହ୍ମଜ୍ଞାନ – ଅପାତ୍ରରେ ଦାନ/ଆସ୍ଥାନରେ କାର୍ଯ୍ୟ ଆରମ୍ଭ– to be ridiculous in expecting the higher things of life in ordinary places

.. କାହିଁକି ହାଟ ମଧ୍ୟରେ ବ୍ରହ୍ମଜ୍ଞାନ ଶୁଣାଉଛ ? ସେମାନେ କିଛି ବୁଝିବେନି ।

ହାଟ ବସେଇବା – ହାଟରେ କିଣାବିକା ଆରମ୍ଭ କରିବା, ହାଟ ଚାଲୁ ହେବା, ହୋ ହାଲ୍ଲା କରିବା– make public/ marketing be started

.. ଏତେ ଲୋକଙ୍କ ଭିତରେ ହାଟବସେଇ ଭାବିଚ ଜିତାପଟ ନେବ ?

ହାଟରେ ହାଣ୍ଡି ଭାଂଗିବା – ଗୋପନ କଥା ପ୍ରକାଶ କରିବା– reveal the secrets

.. ହାଟରେ ବାଟରେ ହାଣ୍ଡି ଭାଂଗି ଭାବିଛ ଜିତିଯିବ ?

ହାଡ଼ ଗୁଣ୍ଡ କରିବା – ପ୍ରଚଣ୍ଡ ମାଡ଼ ଦେବା– punish severely/ beat mercilessly

.. ବେଶି ବଦମାସି କଲେ ହାଡ଼ ଗୁଣ୍ଡ କରିଦେବି ।

ହାଡ଼ ଗୋଡ଼ ଭାଂଗିଦେବା – ଭୀଷଣ ମାଡ଼ ଦେବା– beat mercilessly

..ତା' କର୍ମ ପାଇଁ ସେମାନେ ହାଡ଼ ଗୋଡ଼ ଭାଂଗିଦେଲେ ।

ହାଡ଼ ଜଳେଇବା – ଉତ୍ତ୍ୟକ୍ତ କରିବା, ଯନ୍ତ୍ରଣା ଦାୟକ କଥାବାର୍ତ୍ତା କରିବା– to talk with a view to provoking or exciting anger

.. କାହିଁକି ହାଡ଼ ଜଳେଇଲା ଭଳିଆ କଥାବାର୍ତ୍ତା କରୁଛ ?

ହାଡ଼ ମାଂସ ଜଳେଇବା – ଉତ୍ତ୍ୟକ୍ତ କରିବା– make one angry/ excited

.. ପିଲାଟା ମାପମା'ଙ୍କ ହାଡ଼ ମାଂସ ଜଳେଇଲା ଭଳିଆ କଥାବାର୍ତ୍ତା କରୁଛି ।

ହାଡ଼ ଭଂଗା – ଅତ୍ୟନ୍ତ କଷ୍ଟଦାୟକ– hard labour/ painful work

.. ଏତେ ହାଡ଼ଭଂଗା ପରିଶ୍ରମ କରୁଛ, କାହାପାଇଁ ?

ହାଡ଼ ମାଟି କରିବା – ଶାରୀରିକ ପରିଶ୍ରମ କରିବା– do physical labour

.. ହାଡ଼ ମାଟି କରି ସେ ଏ ଘରଟାକୁ କରିଛନ୍ତି ।

ହାଡ଼ ମାଂସ ଅଲଗା କରିବା – ପ୍ରଚଣ୍ଡ ମାରଧର, ଶେଷ ପ୍ରହାର– beat severely/ find stroke

.. ଯେମିତି ତା'କୁ ଠକିଛ, ସେ ତମ ହାଡ଼ ମାଂସ ଅଲଗା ନକରି ଛାଡ଼ିବନି ।

ହାଡ଼ ଗଣିହେବା – ଅତି ଦୁର୍ବଳ ହୋଇ ପଡ଼ିବା– become too weak/ be enfeebled

.. ତା'ଙ୍କର ତ ହାଡ଼ ଗଣି ହେଇ ଯାଉଛି, ସେ ପୁଣି ଟକ୍କର ଦେବ ?

ହାଡ଼ି ଘରେ ପଶିବା – ନୀଚ ଲୋକର ଆଶ୍ରୟ ନେବା– take shelter of a lower caste

.. ଝିଅଟା ହାଡ଼ିଘରେ ପଶିଛି । ତା'କୁ କିଏ ଗ୍ରହଣ କରିବ ?

ହାଡ଼ି ଖାଏ କଉଡ଼ି ଢୋଲ ଖାଏ ମାଡ଼ – ଜଣଙ୍କର କଷ୍ଟରୁ ଆଉଜଣେ ଫାଇଦା ଉଠାଇବା– to reap out of others predicament

.. ଯେ କଷ୍ଟ କରିଛି ତା' ପ୍ରାପ୍ୟ ସେ ପାଉ । ନାଇଁ ହାଡ଼ି ଖାଏ କଉଡ଼ି ଢୋଲ ଖାଏ ମାଡ଼ !

ହାଡ଼େ ହାଡ଼େ ବଦମାସ – ପକ୍କା ବଦମାସ୍– very stupid

.. ଯାହାକୁ ତମେ ନିଜର ବୋଲି ଭାବୁଛ, ସେ ହାଡ଼େ ହାଡ଼େ ବଦମାସ ।

ହାଣ ମୁହଁକୁ ଯିବା – ବିପଦରେ ପଡ଼ିବା – facing calamity

.. ପୁରା ପରିବାରଟା ହାଣମୁହଁରେ ଗଲେ ।

ହାଣ କୁରାଢ଼ୀ ବେକକୁ – ବିପଦ ବରଣ କରିବା– inviting danger

.. ସେ ନିଜେ ହାଣ କୁରାଢ଼ୀ ବେକକୁ ଆଣିଛି । କହିବ କାହାକୁ ?

ହାଣ୍ଡି ଉଠେଇବା – ଅଲଗା ହେବା – to be separated

.. ଯେଉଁଭଳି ପରିସ୍ଥିତିରେ ତା'କୁ ହାଣ୍ଡି ଉଠେଇବାକୁ କୁହାଗଲା, ଆଦୌ ଠିକ୍ ହେଲାନି ।

ହାଣ୍ଡି ମୁହଁ କରିବା – ବିଷର୍ଣ୍ଣ ହେବା, ମୁହଁରେ ଦୁଃଖର ଛାପ– to be saddened/ dejected/ disheartened

.. କ'ଣ ପଦେ କହିବାରୁ ହାଣ୍ଡିମୁହଁ କରି ବସିଛି ।

ହାଣ୍ଡି ମାଙ୍କଡ଼ ଚିତ୍ ମାରିବା – ଅଭାବୀ ଅବସ୍ଥା– poorest condition/ in want

.. ତା'ଙ୍କ ହାଣ୍ଡି ମାଙ୍କଡ଼ ଚିତ୍ ମାରୁଛି, ସେକି ଦାନ ଦେବେ ?

ହାଣ୍ଡିରେ ଚାଉଳ ପକେଇବା – ଯାହା ପାଇଁ ଯିଏ – befitting match/ suitable match

.. ସମ୍ବନ୍ଧ ଉଠିବନି, ଯିଏ ଯାହା ହାଣ୍ଡିରେ ଚାଉଳ ପକେଇଛି ନା !

ହାଣ୍ଡି ଭାଂଗିବା – ବେଉସା ଛଡ଼େଇବା, ଦାନାରେ ଧୂଳିଦେବା– make one destitute/ put obstacles in one's means of living

.. ଗରିବ ଲୋକଟାର ହାଣ୍ଡି ଭାଂଗି କି ଲାଭ ପାଇଲ ?

ହାତ ଉଠେଇବା – ଶାସ୍ତିଦେବା, ମାଡ଼ ଦେବା– to punish/ beat/ strike

.. ସେମିତି କହିବାରୁ ସେ ହାତ ଉଠେଇଲେ ।

ହାତଉଠା ପ୍ରକୃତି – ଠକାମି– mercurial temper/ roguery

.. ହାତ ଉଠା ପ୍ରକୃତି ଛାଡ଼ି ଭଲ ମଣିଷ ହୁଅ ।

ହାତ କରିବା – ସ୍ୱପକ୍ଷକୁ ଆଣିବା, ବଶୀଭୂତ କରିବା– to capture/ to control/ gain over

.. ଶେଷରେ ସେ ଲୋକଟାକୁ ପୁରାପୁରି ହାତ କରିଦେଲେ ।

ହାତକଟା – ହାଫ ହାତ– half handed

.. ହାତକଟା ଗଂଞ୍ଜି ପନ୍ଧିଛି ସେ ।

ହାକୁ ଦି ହାତ କରିବା – ବିବାହ ଦେବା– give in marriage

.. ତା'କୁ ହାତକୁ ଦି'ହାତ କରିଦେଲେ ମୋ କାମ ସରିବ ।

ହାତକୁ ନେବା – ଦାୟିତ୍ୱ ନେବା– to shoulder responsibility

.. ଏତେବଡ଼ କାମଟା ହାତକୁ ନେବା ଠିକ୍ ହେଲାନି ।

ହାତ ଛଡ଼ା କରିବା – ହରେଇବା– to lose of/ remove

.. ଏଥର ସୁଯୋଗଟା ସିନା ହାତଛଡ଼ା କଲି, ହେଲେ ବାରବାର ନୁହେଁ ।

ହାତ ଖରଚ – ଛୋଟ ମୋଟ ଖରଚ– pocket expenses

.. ତା' ହାତ ଖରଚ ପାଇଁ କିଛି ଟଙ୍କା ଦେବା ଦରକାର ।

ହାତ ଧରିବା– ବିବାହ କରିବା – to marry

ହାତଖାଲି ହେବା – ପାଖରୁ ଅର୍ଥ ସରିଯିବା– inability to make ends meet

.. ମାସ ନ ପୁରୁଣୁ ହାତ ଖାଲି ହୋଇଗଲାଣି ।

ହାତ ଖୋଲା କରିବା – ମୁକ୍ତ ହସ୍ତ ହେବା, ଉଦାର ହେବା– to be liberal/ be munificent

.. ଏ ସବୁ ବାବଦରେ ସେ ଭାରି ହାତ ଖୋଲା କଲା ଲୋକ ।

ହାତ ଗୋଡ଼ ଧରିବା – ଅନୁନୟ ହେବା– to beg apology

.. ହାତ ଗୋଡ଼ଧରି କୌଣସି ପ୍ରକାରେ କଥାଟା ତୁଟେଇଦିଅ ।

ହାତ ଚଳାଇବା – ଖାଇବା, କାର୍ଯ୍ୟ କରିବା– start eating/ set one's hands to

.. ହାତ ଚଳାଇବା ଆରମ୍ଭ କର, ନଇଲେ ଥଣ୍ଡା ହୋଇଯିବ ।

ହାତ ଛିଞ୍ଚାଡ଼ିବା – ହେୟଜ୍ଞାନ କରିବା– neglecting/ disregarding

.. କଥା କଥାକେ ହାତ ଛିଞ୍ଚାଡ଼ିବା ହଉଛି ତା'ଙ୍କର ଗୋଟାଏ ବଦଭ୍ୟାସ ।

ହାତ ଯୋଡ଼ିବା – ଭୁଲ୍ ମାଗିବା– completely surrendered

.. ଥରେ ସେମାନଙ୍କୁ ହାତ ଯୋଡ଼ିଦେଲେ କ'ଣଟା କ୍ଷତି ହେଇଯିବ ?

ହାତଟାଣ କରିବା – ସମର୍ଥନ କରିବା, ଜିତାଇବା– to support/ win over

.. ତା'ଙ୍କ ହାତ ଟାଣକଲେ ସିନା ପଛରେ ଯାହାକିଛି ମାଗିବ ।

ହାତ ଟେକିବା – ଆଶୀର୍ବାଦ କରିବା, କଲ୍ୟାଣ କରିବା, ସମର୍ଥନ ଦେବା– to bless/ to wish well

.. ମହିଳାଙ୍କୁ ସେ ହାତ ଟେକି ଆଶୀର୍ବାଦ ଶୁଣାଇଲେ ।

ହାତ ମାରିବା – ଉପର ଠାଉରିଆ, ଠକିବା– to work superficially

.. ଯଦି କରିବ ଭଲ ଭାବେ କର । ଏମିତି ହାତ ମାରନି ।

ହାତ ବାନ୍ଧିବସିବା – କିଛି ନ କରି ବସିବା, ନିରୁପାୟ ହେବା– doing nothing/ be helpless

.. ବନ୍ୟା ହେଲା ବୋଲି କ'ଣ ବର୍ଷସାରା ହାତ ବାନ୍ଧି ବସିବ ?

ହାତ କାମୁଡ଼ା ଶିଖାଇବା – ବିପଦ ଆହ୍ୱାନ କରିବା– invite danger

.. ବିରାଡ଼ିକୁ ହାତ କାମୁଡ଼ା ଶିଖାଇଛ, ଏବେ ଫଳ ଭୋଗ ।

ହାତ ଦେବା – ଆରମ୍ଭ କରିବା, ସାହାଯ୍ୟ କରିବା– set one's hand to/ to assist

.. ସେ ବଡ଼ କାମରେ ହାତ ଦେଇଛନ୍ତି ।

ହାତ ପାତିବା – ଭିକ ମାଗିବା– to beg/ supplicate

.. କେତେଦିନ ଅନ୍ୟ ଆଗରେ ହାତ ପାତି ଚାଲିବ ?

ହାତ ପୋଛିଦେବା – ନିଜକୁ ଦାୟୀ ନ କରିବା– to pass the back and absolve oneself of responsibility

.. ନିଜେ ସବୁ କରି ଏବେ ପୁଣି ହାତ ପୋଛି ବସିଛ ?

ହାତ ନଖ ଦର୍ପଣ – ପରିଷ୍କାର ପରିଚ୍ଛନ୍ନତା/ ଭବିଷ୍ୟତ ଜ୍ଞାନ –not to require good counsel from others

.. ଅରେ ତା'କୁ କ'ଣ ପରିଚ୍ଛନ୍ନତା ବିଷୟରେ ଶିଖାଉଛ ? ତା' ହାତ ନଖ ଦର୍ପଣ ।

ହାତା ହାତି ହେବା – ମରାମରି ହେବା– to come to blows

.. ସେମିତି କୁହନା । ଦି'ଜଣଯାକ ହାତା ହାତି ହୋଇଯିବେ ।

ହାତ ଶଙ୍ଖା ଦର୍ପଣ – ସୁଖମୟ ଦାମ୍ପତ୍ୟ ଜୀବନ– happy conjugal life

.. ତା'ହାତର ଶଙ୍ଖା ଦର୍ପଣରୁ ତା'ର ଜୀବନ ବିଷୟରେ ଜାଣିପାରୁନ ?

ହାତରେ ନ ମାନରି ଭାତରେ ମାରିବା – ଦାନାପାଣି ମାରିବା– deprive a person of his means of livelihood

.. ଇଂରେଜମାନଙ୍କୁ ହାତରେ ନ ମାରି ଭାତରେ ମାରିଲେ ବଳେ ବାଟକୁ ଆସିଯିବେ ।

ହାତବାରିସୀ ସାଜିବା – ବୋଲକରା ସାଜିବା– being obedient/ carry out order and advice

.. କେତେଦିନ ରାଜାଙ୍କ ହାତବାରିସୀ ସାଜି ଅତ୍ୟାଚାର ଚଳାଉଥିବ ?

ହାତେ ମାପି ଚାଖଣ୍ଡେ ଚାଲିବା – ସତର୍କ ହେବା– look before you leap/ to be watchful

.. ଆଜି କାଲି ଯୁଗରେ ହାତେ ମାପି ଚାଖଣ୍ଡେ ଚାଲିବା ଭଲ ।

ହାତ ଅଳସ ନିଶ ବଂକା – ଅଧିକ ଅଳସୁଆମି ପାଇଁ କ୍ଷତି– loss due to laziness

.. ହାତ ଅଳସ ନିଶ ବଂକା ହେଲେ କେତେଦିନ ଟେକିବ ?

ହାତରୁ ଖାଇ ଘୋଡ଼ା ଆଗରେ ଡ଼େଇଁବା – ଲାଭ ନ ଥାଇ ବେପାର– carry business without profit

.. ହାତରୁ ଖାଇ ଘୋଡ଼ା ଆଗରେ ଡ଼େଇଁବା ନୀତି ଛାଡ଼ି କିଛି କାମ କର ।

ହାତରୁ ଖସିଯିବା – ଆୟତ୍ତ ବାହାରକୁ ଚାଲିଯିବା– being wayward/ to be out of control

.. ହାତରୁ ଖସିଯିବା ପଥର ଆଉ କେବେ ଫେରେନା ।

ହାତ ଗୋଡ଼ ରହିବା – କାର୍ଯ୍ୟ କରିବାକୁ ଅକ୍ଷମ ହେବା– unable to work

.. ବୁଢ଼ା ଲୋକଟିର ହାତ ଗୋଡ଼ ରହିଗଲାଣି ।

ହାତ ବଢ଼େଇବା – ଲୋଭ କରିବା, ପାଇବାର ଚେଷ୍ଟା କରିବା– long for/ hope for

.. ସେ ଦିଗକୁ ହାତ ବଢ଼େଇ କିଛି ଲାଭ ନାହିଁ ।

ହାତ ସଫେଇ – କୌଶଳରେ ଚୋରି– cunning/ skill/ magical tricks

.. ହାତ ସଫେଇ କରୁଥାଅ, ଦିନେ ନା ଦିନେ ଧରା ପଡ଼ିବ ।

ହାତରେ ଆକାଶ ପାଇବା – ଆକସ୍ମିକ ଐଶ୍ୱର୍ଯ୍ୟ ଲାଭ– gaining heaven/ wealth

.. ମଞ୍ଚ ଉପରେ ଟଙ୍କାଟିଏ ପୁରସ୍କାର ପାଇଲେ ବି ଲାଗୁଥିଲା ଯେମିତି ହାତରେ ଆକାଶ ପାଇଲା ଭଳିଆ ।

ହାତରେ ସ୍ୱର୍ଗ ପାଇବା – ଭାଗ୍ୟ ଖୋଲିବା – being fortunate

..ପୁଅଟିଏ ହେଲାନି ଯେ ସେ ହାତରେ ସ୍ୱର୍ଗ ପାଇଲେ

ହାତର ପାଞ୍ଚ – ଶେଷ ସମ୍ବଳ– last resource

.. ହାତର ପାଞ୍ଚ ସେତିକ ଦେଇ ଦେଲା ପରେ କେମିତି ଚଳିବ ?

ହାତର ଲକ୍ଷ୍ମୀକୁ ପାଦରେ ଠେଲିବା – ସୁଯୋଗ ଧନ ହରାଇବା– loose dignity/ wealth

.. ହାତର ଲକ୍ଷ୍ମୀକୁ ପାଦରେ ଠେଲିଦେଲ, ଏବେ ଫଳ ଭୋଗ ।

ହାତୀ ସୁନା କଳସ ଢ଼ାଳିବା – ହଠାତ୍ ଭାଗ୍ୟ ଉଦୟ ହେବା– fortune favours/ accidental gain

.. ହାତୀ ସୁନା କଳସ ଢାଳିବାରୁ ସେ ଚାକିରୀଟା ପାଇଲେ ।

ହାତୀ ପୋଷିବା – ଅତ୍ୟଧିକ ଖର୍ଚ୍ଚ ହେବା– spend a lot

.. ହାତୀ ପୋଷିଛ, ଦରିଦ୍ର ହେବନି ?

ହାତୀକୁ ଦୁବଘାସ/ ହାତୀକୁ ହୋମିଓପାଥି – ଅଧିକ ଖାଉଥିବା ବ୍ୟକ୍ତିପାଇଁ ସାମାନ୍ୟ ଖାଦ୍ୟ– a morser to a giant/ insufficient

.. ବାତ୍ୟାଞ୍ଚଳ ପାଇଁ ଯାହା ଆସିଛି, ସେତିକ ହାତୀକୁ ଦୁବଘାସ ଭଳିଆ ।

ହାରକିନ ଦେଖାଇବା – ମିଛ କଥା କହିବା– telling lie/ to deceive

.. ମୋତେ ହାରକିନ ଦେଖେଇ ସେ ଦୁଇଶହ ଟଙ୍କା ନେଇଗଲା ।

ହା- ହାକାର ପଡ଼ିବା – ମରୁଡ଼ି ପଡ଼ିବା– facing distress/ be droughtstricken

.. ବର୍ଷା ଅଭାବରୁ ଚାରିଆଡ଼େ ହା - ହା - କାର ପଡ଼ିଗଲାଣି ।

ହା - ହା - କାର କରିବା – ହତାଶ ହେବା– to be disappointed/ despaired

.. ବାବାଜୀଙ୍କ ମୃତ୍ୟୁରେ ସମସ୍ତେ ହା - ହା - କାର କଲେ ।

ହାୟ ହାୟ କରିବା – ଅନୁଶୋଚନା କରିବା– be regretted

.. ଯେଉଁଠି କହିବା କଥା ନ କହି ଏଠି ହାୟ ହାୟ କଲେ କ'ଣ ହେବ ?

ହୀରାର ଟୁକୁଡ଼ା – ଅତ୍ୟନ୍ତ ଗୁଣୀ– excellent/ wise

.. ମୋ ହୀରାର ଟୁକୁଡ଼ା ପାଇଁ ଭଲ ପାତ୍ରୀଟିଏ ଦରକାର ।

ହୁଆସ ଉଡ଼ିବା – ସଜ୍ଞାହୀନ ହେବା– being depressed/ be fainted

.. ଚାକିରୀ ଚାଲିଯିବା କଥା ଶୁଣି ତା'ଙ୍କ ହୁଆସ ଉଡ଼ିଗଲା ।

ହୁଁ ମାରିବା – ସମର୍ଥନ ଦେବା– to support/ give assurance

.. ଅନ୍ୟ କଥାରେ କେତେଦିନ ହୁଁ ମାରି ଚାଲିଥିବ ?

ହୁଙ୍କାପିଟା – ହୁଣ୍ଡା– foolish/ ignorant

.. ସେ ତ ଗୋଟିଏ ହୁଙ୍କାପିଟା । କ'ଣ ନାହିଁ କ'ଣ କରିବସିବ !

ହୁକୁରୁ ହୁକୁରୁ ହେବା – ଫର ଫର ହେବା– bragging/ show off

.. ହାତରେ କିଛି ଟଙ୍କା ପଡ଼ିଛି, ପୁଅ ହୁକୁରୁ ହୁକୁରୁ ହଉଛି ।

ହୁକୁମ ତାମିଲ କରିବା – ଆଦେଶ ପାଳନ କରିବା– carry out order

.. ରାଜାଙ୍କ ହୁକୁମ ତାମିଲ ନ କଲେ କଠିନ ଦଣ୍ଡ ମିଳିବ ।

ହେଙ୍ଗୁ ଧରାଇବା – ଠକିଦେବା– deceiving/ cheating

.. ପ୍ରଜାମାନେ ଖଜଣା ଦେବାକୁ କହି ଜମିଦାରଙ୍କୁ ହେଙ୍ଗୁ ଧରାଇ ଦେଇଛନ୍ତି ।

ହେରାଫେରି କରିବା – ଟାଉଟରି କରିବା– to one's appropriate/ cheating

.. ନବୀନ ରାଜ୍ୟରେ ହେରାଫେରି କରିବା ଭାରି କଷ୍ଟ ।

ହେର ଫେର୍ କରିବା – ଅଦଳବଦଳ କରିବା, ପରିବର୍ତ୍ତନ କରିବା– to talk straight and not indulge in double talks

.. ରାମଦାସ ପକ୍କା ମଣିଷ । କଥାବାର୍ତ୍ତାରେ ସେ ହେରଫେର କରନ୍ତି ନାହିଁ ।

ହେଳା କରିବା – ବିଳମ୍ବ କରିବା– making delay/ neglecting

.. କର୍ତ୍ତବ୍ୟରେ ହେଳାକଲେ କେହି କ୍ଷମା ଦେବେନି ।

## କ୍ଷ

କ୍ଷମା ଦେବା – ଛାଡ଼ିଦେବା – let one go/ to repent

.. ଅନେକ ଝଗଡ଼ା ହୋଇଗଲା, ଏଥର କ୍ଷମା ଦିଅ ।

କ୍ଷାନ୍ତ ହେବା – ନିରସ୍ତ ହେବା, ଚୁପ୍ ହେବା– to be desisted/prohibited

.. ଯେତିକି ଚୋରି କଲ କଲ, ଏଣିକି କ୍ଷାନ୍ତ ହୁଅ ।

କ୍ଷୀର ନୀର ସଂପର୍କ – ଘନିଷ୍ଠ ସଂପର୍କ– close relationship

.. ସୋମାନଙ୍କ କ୍ଷୀର ନୀର ସଂପର୍କକୁ ତମେ ଭୁଲ୍ ବୁଝୁଛ ।

କ୍ଷୀରରେ ଖାର ମିଶାଇବା – ଭଲରେ ମନ୍ଦ ମିଶାଇବା– to spoil the broth

.. ତା'ଙ୍କ ପ୍ରକୃତି ହଉଛି କ୍ଷୀରରେ ଖାର ମିଶାଇବା ।

କ୍ଷୁରରେ ବାଟ ଚାଲିବା – ବିପଦ ସହିତ ଗତି କରିବା– proceed with troubles

.. ସାରା ଜୀବନଟା ତା'ଙ୍କର କ୍ଷୁରରେ ବାଟ ଚାଲୁ ଚାଲୁ କଟିଗଲା ।

କ୍ଷେତ କରିବା – ଜମିଚାଷ କରିବା– cultivating land

.. ଏ ବର୍ଷ କ୍ଷେତ କରିବାରେ କେତେ ଖର୍ଚ୍ଚ ହେଲା ?

କ୍ଷେତ ମଜଦୁର – ଦିନ ମଜୁରିଆ– daily wager

.. ଚାକିରୀ ମିଳିଲାନି । କ୍ଷେତ ମଜଦୁର ହେଇ ଦିନ କାଟୁଛି ।

କ୍ଷୌର କରିବା – ଶେଷ କରିବା – to smash one/ finish one

## ଳ

ଲଅ ଲଅ ହେବା – ଆନ୍ଦୋଳିତ ହେବା, ନରମ– move to and fro

.. ଏବେ ବି ତ ସେ ଲଅ ଲଅ ଅବସ୍ଥାରେ ଅଛି, ସିଧାହେଇ ଠିଆହେଲେ ଯାହାହେବ ।

ଲଗା ନା ପଘା – ଦାୟିତ୍ୱହୀନ– irresponsible

.. ତା'ର ଲଗା ଅଛି ନା ପଘା ଅଛି । କହି ଦେଇଛି, ଆସିପାରେ, ନ ଆସି ବି ପାରେ !

ଲଘୁ ଗୁରୁ ଜ୍ଞାନ – ଛୋଟ ବଡ଼ ବିଚାର କରିବାର ଶକ୍ତି– to scan the difference between high and the low

.. ଏତେ ବଡ଼ଟାଏ ହେଲାଣି, ତଥାପି ତା'ର ଲଘୁ ଗୁରୁ ଜ୍ଞାନ ହେଲା ନାହିଁ ।

ଲଙ୍କା କାଣ୍ଡ – ତୁମୁଳ କାଣ୍ଡ, ମରାମରି, ଝଗଡ଼ା ଝାଟି– tumultuous affair/ altercation

.. ଫିସ୍ ବଢ଼ିବାକୁ ନେଇ କଲେଜ ପିଲାଏ ଲଙ୍କା କାଣ୍ଡ ସୃଷ୍ଟି କରିଦେଲେ ।

ଲଙ୍କା ପୋଡ଼ା ବାନ୍ଦର – କ୍ଷତିକାରୀ ବ୍ୟକ୍ତି– harmful man

.. ସେଇଟା ଲଙ୍କା ପୋଡ଼ା ବାନ୍ଦର । ତା'କୁ ଏ କଥା କହିବ ?

ଲଙ୍କାରେ ହରିଣଢ – ଅସମ୍ଭବ କଥା– absurd matter

.. ଆଶ୍ଚର୍ଯ୍ୟ କଥା, ବାଘ ପୁଣି ଘାସ ଖାଉଛି ! ଲଙ୍କାରେ ଏ ହରିଣଢ କେମିତି ସମ୍ଭବ ହେଲା ?

ଲଜ୍ଜାରେ ବୁଡ଼ିଯିବା – ସମ୍ମାନ ହାନି ହେବା, ମୁଣ୍ଡ ଟେକି ଚାଲି ନ ପାରିବା– to be ashamed/ to be dishonoured

.. ସେ ଯେଉଁ କାମଟି କରିଛନ୍ତି, ଲଜ୍ଜାରେ ବୁଡ଼ିବା ଛଡ଼ା ଅନ୍ୟ ଉପାୟ ଅଛି ?

ଲଟର ପଟର – ଗୋପନ କାର୍ଯ୍ୟ, ପ୍ରେମ, ଲୁଟପାଟ– secret affair/ love

.. ସେ ଲଟର ପଟର ଧନ୍ଦାରେ ମୋତେ ପୁରାଅନି ।

ଲଣ୍ଡାକରିବା – ଚନ୍ଦେଇବା, ସର୍ବସ୍ୱାନ୍ତ କରିବା– to ruin/ to deceive

.. ସେ ତା'କୁ ପୁରାପୁରି ଲଣ୍ଡା କରିଦେଇଛନ୍ତି । ଆଉ ଟଙ୍କା ଅଛି ଯେ ବନ୍ଧକ ଛଡ଼େଇବ !

ଲଣ୍ଡ ଭଣ୍ଡ ହେବା – ବ୍ୟତିବ୍ୟସ୍ତ ହେବା– to be perplexed/ confounded

.. ଏମିତି ଲଣ୍ଡ ଭଣ୍ଡ ହେଲେ ମା'କ'ଣ ଆଉ ଫେରିଆସିବ ?

ଲଥକରି ବସିବା – ଥକାମାରି ବସିବା– become silent/ be dumbfounded

.. ଘଟଣାଟା ଶୁଣି ସେ ଲଥିକରି ବସିପଡ଼ିଲେ ।

ଲମ୍ବା ପଣତରେ ରହିବା – ଆତୁଆଳରେ ରହିବା, ଛତ୍ରଛାୟା ତଳେ ଆଶ୍ରୟନେବା– to shelter under an umbrella

.. ସେ ତ ଲମ୍ବା ପଣତ ତଳେ ରହିଛି । ତା'ର କିଏ କ'ଣ କରିବ ?

ଲମ୍ବା କରିବା – ମାରି କରି ଶୁଆଇଦେବା– beat and lengthen flat

.. ଟଙ୍କା ଦବନି, ତା'କୁ ଲମ୍ବା କରିଦେବି !

ଲମ୍ବା ହେବା – ବିଶ୍ରାମ ନେବା– to take rest

.. ଖାଇ ସାରିଛ ତ, ଟିକିଏ ଲମ୍ବା ହେଇପଡ଼ ।

ଲକ୍ଷ୍ମୀଛଡ଼ା – ହତଭାଗା– unfortunate/ unlucky

.. ସେ ଲୋକଟା ଲକ୍ଷ୍ମୀଛଡ଼ା । ଯାହା ଦୁଆରକୁ ଯିବ, ତାକୁ ବୁଡ଼ାଇବ ।

ଲକ୍ଷ୍ମୀଦୃଷ୍ଟି – ସୁଖ ସମୃଦ୍ଧି, ଦେବୀ କୃପା– happiness and prosperity/ grace of Goddess

.. ସେ ଜୀବନରେ କେବେ ବି ଲକ୍ଷ୍ମୀଙ୍କ ଦୃଷ୍ଟିରୁ ବଂଚିତ ହୋଇନି ।

ଲକ୍ଷ୍ମୀଭଣ୍ଡାର – ଅଫୁରନ୍ତ ଐଶ୍ୱର୍ଯ୍ୟ– unfathomable riches

.. ଏଠି କ'ଣ ଲକ୍ଷ୍ମୀଭଣ୍ଡାର ଅଛି ଯେତେବେଳେ ଯାହା ମାଗିବ, ମିଳୁଥିବ ?

ଲକ୍ଷେ ଶିବ ପୂଜି ପୁଅ ପାଇବା – ବହୁ କଷ୍ଟରେ ଇପ୍‌ସିତ ବସ୍ତୁ ଲାଭ କରିବା– to heat the target with long perseverence

..ଲକ୍ଷେ ଶିବ ପୂଜି ସେ ପୁଅ ପାଇଛି, ସହଜେ ତମକୁ ଦେବ ?

ଲକ୍ଷେ ଅର୍ଜିଲେ ପକ୍ଷକୁ – ଯେତେ ଆସିଲେ ବି ନିଅଣ୍ଟିଆ– the more the scantier

.. ଅମଙ୍ଗଳିଆ ଘରଟା, ଲକ୍ଷେ ଅର୍ଜିଲେ ପକ୍ଷକୁ । କାହାକୁ କହିବ ?

ଲଲାଟଲିଖନ – ଭାଗ୍ୟରେଖା– write large on the fate

.. ଝଡ଼ଝଂଜା ହେଉଛି ତାଂକର ଲଲାଟ ଲିଖନ । କିଏ ଆନ କରିବ ?

ଲାଇନ ଦେବା – ପାଳିରେ ରହିବା– stand in a queue/ waiting for the term

.. ମୁଁ ଲାଇନ ଦେଇଛି । ତା'ଙ୍କୁ ମୋ କଥାଟା ଆଗରୁ କହିଦେଇଥିବ ।

ଲାଇନ୍ ମାରିବା – ପ୍ରେମ କରିବା– calf love

..ଛକ ଉପରେ ଲାଇନ ମାରିବା ଛାଡ଼ି ପଢ଼ାପଢ଼ି କର ।

ଲାଇନ୍ ଧରିବା – ଠିକ୍ ରାସ୍ତାରେ ଯିବା, ସ୍ୱାବଲମ୍ବୀ ହେବା– to be self sufficient/ following right path

.. ଏତେ ଦିନ ପରେ ସେ ଲାଇନ୍ ଧରିଛନ୍ତି ।

ଲାଇନ୍ ଲୋକ – ଏକାପେଷାର ମଣିଷ– fruit of same tree/ birds of same feather

.. ସେ ଆମ ଲାଇନ୍ ଲୋକ । ମୁଁ ତା'ଙ୍କୁ କହିଦେବି ।

ଲାଗି ଖାଇବା – ପରିଶ୍ରମ କରି ଜୀବିକା ଅର୍ଜନ କରିବା– labour hard for survival

.. ମାଗି ଖାଇବାଠାରୁ ଲାଗି ଖାଇବା ଯଥେଷ୍ଟ ଭଲ ।

ଲାଗି ପଡ଼ିବା – କାର୍ଯ୍ୟ ଆରମ୍ଭ କରିବା– attached to work

.. ଦୀର୍ଘଦିନର ବିଶ୍ରାମ ପରେ ଏବେ ସେ କାର୍ଯ୍ୟରେ ଲାଗି ପଡ଼ିଛନ୍ତି ।

ଲାଗିଯିବା – କାର୍ଯ୍ୟରେ ନିଯୁକ୍ତ ହେବା, କାର୍ଯ୍ୟ ଆରମ୍ଭ କରିବା, ବାଧିବା– be engaged/ be painful

.. କାଲି ସକାଳଠାରୁ ଲାଗିଯାଅ । ମୋ କଥାଟା ଏମିତି ଲାଗିଗଲା ?

ଲାଗି ରହିବା – ଚେଷ୍ଟା ଜାରି ରଖିବା– try again and again

.. ତା'ଙ୍କ ପଛେ ପଛେ ସେ ଜୋକ ଭଳି ଲାଗି ରହିଛନ୍ତି ।

ଲାଜ ଭାଂଗିବା – ଲାଜ ଦୂର କରିବା– to break the ice

.. ନୂଆ କରି ଆସିଛି । ଲାଜ ଭାଂଗିଗଲେ ବୋହୂଟା ଛାଏଁ କଥା କହିବ ।

ଲାଟ ସାହେବ – ପ୍ରତିପତ୍ତିଶାଳୀ ଲୋକ– reputed/ famous man

.. କୋଉ ଲାଟ ସାହେବ ଯେ, ସେ ଡ଼ାକିବ, ଆମେ ଚାଲିଯିବା ?

ଲାଠି ଧରିବା – ମାଡ଼ ମାରିବା, ଲାଠି ଉଚାଇବା– use of stick/ to beat

.. ଲାଠି ଧରିଲେ ସେ ଠିକ୍ ବାଟକୁ ଆସିପାରିବ ।

ଲାଠି ଭାଂଗିବା – ଗର୍ବ ଚୂର୍ଣ୍ଣ କରିବା– make another eat the humble pie

.. ମୁଁ ଯଦି ତୋ ଲାଠି ନ ଭାଂଗିଛି, ମତେ ଚିହ୍ନିବୁ !

ଲାଳ ଗଡ଼ାଇବା – ଲୋଭ କରିବା– hanker after/ long for

.. ଲାଜ ଗଡ଼େଇଲେ କ'ଣ ଜିନିଷଟା ମିଳିଯିବ ?

ଲାଲ୍ ପଡ଼ିବା – ଅତିଶୟ ରାଗିଯିବା– enraged with anger

.. ସେ ଯେମିତି ଲାଲ୍ ପଡ଼ିଛନ୍ତି, କିଏ ଏଇନେ କଥାଟା ପକେଇବ ?

ଲାଲ୍ ଚକ୍ଷୁ ଦେଖାଇବା – ରାଗିକରି କହିବା, ଡରାଇବା, ଧମକାଇବା– to be raged/ to threaten/ to menace

.. ତମ ଲାଲ୍‌ଚକ୍ଷୁ ଦେଖାକୁ ସେ ଡରିଯିବେ ?

ଲାଲବତୀ ଜଳିବା – ବ୍ୟବସାୟରେ କ୍ଷତିଗ୍ରସ୍ତ ହେବା, ବନ୍ଦ ହୋଇଯିବା– sustain loss/ almost closed

.. ତା'ଙ୍କ ବେପାରରେ ତ ଲାଲବତୀ ଜଳିଲାଣି । ସେ ପୁଣି ତମକୁ କି ସାହାଯ୍ୟ କରିବେ ?

ଲାଂଗୁଡ଼ ଧରି ଚାଲିବା – ଅନୁସରଣ କରିବା– following someone

.. ନିଜ ଗୋଡ଼ରେ ଠିଆ ହୁଅ । କେତେଦିନ ଅନ୍ୟର ଲାଂଗୁଡ଼ ଧରି ଚାଲିବ ?

ଲାଂଗୁଡ଼ ଯାକି ପଳେଇବା – ଫେରାର ହୋଇଯିବା, ମୁହଁ ନ ଦେଖାଇବା, ପରାଜିତ ହେବା– to retrace out of cowardice/ absconding

.. ଯେମିତି ତା' କଥା ପଡ଼ିଛି, ବାବୁ ଲାଂଗୁଡ଼ ଯାକି ପଳେଇଲା ।

ଲାଂଜ ମୋଟା ହେବା – ଗର୍ବରେ ଫୁଲିବା, ଅହଂକାରୀ ହେବା– to be proud/ arrogant

.. ରାଜନୀତି କରି ତା' ଲାଂଜ ମୋଟା ହେଇଗଲାଣି ।

ଲିପି ଦେବା – ନଷ୍ଟ କରିଦେବା– wipe out/ clear off

.. ତା'ଙ୍କ ସ୍ମୃତିକୁ ଲିପିଦେବାକୁ ସେ ବହୁବାର ଚେଷ୍ଟାକରି ବିଫଳ ହୋଇଛି ।

ଲିପାପୋଛା – ପରିଚ୍ଛନ୍ନ– neat and clean

.. ଲିପାପୋଛା ଘରେ କାହାକୁ ରହିବାକୁ ଭଲ ନ ଲାଗିବ !

ଲୁଗା ଭାଂଗିବା – ଲୁଗାପଟା ସଜାଡ଼ିବା– to press the cloth

.. ଲୁଗାଭାଂଗି ରଖ, ଯେମିତି ମୋଡ଼ି ନ ହୁଏ ।

ଲୁଣ ଖାଇବା – ଦାନା ଖାଇବା– taking bread and butter

.. ତା'ର ଲୁଣ ଖାଇଛୁ ମାନେ ତା'କୁ ବିପଦରେ ସାହାଯ୍ୟ କରିବା ଉଚିତ ।

ଲୁଣ ମାରିବା – ଲୁଣ ଅମଳ କରିବା– manufacturing salt

.. ସେମାନେ ଲୁଣମାରି ପେଟ ପୋଷୁଛନ୍ତି ।

ଲୁହା ଉଇ ଖାଇବା – ବେଳ ଖରାପ ପଡ଼ିବା– to fall on bad times/ commencement of bad luck

.. ଲୁହା ଭଇ ଖାଇବା ବେଳ ପଡ଼ିଛି । କିଛିଟା ସମ୍ଭାଳି ଯାଅ ।

ଲୁହାଜାଣି ପାଣି ଦେବା – ଅବସ୍ଥା ଦେଖି ବ୍ୟବସ୍ଥା କରିବା, ଠିକଣା ଜବାବ ଦେବା– give suitable reply/ cut your coat according to your shirt

.. ଆଜିକାଲି ବେଳରେ ଲୁହାଜାଣି ପାଣି ନ ଦେଲେ, ଚଳି ପାରିବନି ।

ଲୁହା ଆଣ୍ଡକୁ କମାର ଆଣ୍ଡ – ନିଜ ନିଜ ଜିଦ୍‌ରେ ଉଭୟ ପକ୍ଷ ଅଟଳ– a situation for both sides are equally adamant

.. ଲୁହା ଆଣ୍ଡକୁ କମାର ଆଣ୍ଡ, କିଏ ସେମାନଙ୍କୁ ବୁଝାଇବ ?

ଲେଖୁ ଲେଖୁ କରଣ – ଅଭ୍ୟାସ ବଳେ ଦକ୍ଷତା ଲାଭ– practice makes one perfect

.. ଚେଷ୍ଟା କର, ନିଷ୍ଚୟ ହୋଇଯିବ । ଲେଖୁ ଲେଖୁ ତ ପୁଣି କରଣ ହୋଇଛନ୍ତି ।

ଲେଖା ଯୋଖା – ସଂପର୍କୀୟ– cousin

.. ସେ ମୋର ଲେଖାଯୋଖା ଭାଇ ।

ଲୋକ ଦେଖାଣିଆ – ଆନ୍ତରିକତା ବିହୀନ– loss of sincerity

.. ଏ ଲୋକ ଦେଖାଣିଆ ଢଙ୍ଗ ଛାଡ଼ି କିଛି କରିବାକୁ ଚେଷ୍ଟା କର ।

ଲୋକହସା ହେବା – ଥଟ୍ଟାତାମସାର ପାତ୍ର ହେବା– disgraced in public/ ridiculed matter

.. କେତେଦିନ ଏମିତି ଲୋକହସା ହଉଥିବେ ?

ଲୋକକଥା – ଗୁଜବ, ଉଡ଼ାଖବର– rumour

.. ଲୋକକଥାକୁ ବିଶ୍ୱାସ କରି ତମେ ଏମିତି କରି ବସିଲ ?

ଲୋଟା କମ୍ବଳ – ସାମାନ୍ୟ ଜିନିଷ– to rise to a position of affluence from bare means of sustainence

.. ପର୍ତ୍ତୁଗୀଜମାନେ ଏ ଦେଶକୁ ଲୋଟା କମ୍ବଳ ଧରି ଆସିଥିଲେ, ଗଲାବେଳକୁ ବହୁତ କିଛି ନେଇକରି ଯାଇଥିଲେ ।

